# ଅଲିଖା ଇତିହାସ

ଡକ୍ଟର ବିକ୍ରମ ଦାସ



ପ୍ରକାଶକ :
ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର
ବିନୋଦବିହାରୀ, କଟକ-୨
ଶାଖା : ମେନ୍‌ରୋଡ଼, ବ୍ରହ୍ମପୁର

ମୁଦ୍ରକ :
ଶ୍ରୀଅରବିନ୍ଦ ପ୍ରିଣ୍ଟିଂ ପ୍ରେସ୍
ଗୋଲାବଗିଚ୍, କଟକ-୯

ପ୍ରଥମ ସଂସ୍କରଣ :
ଡିସେମ୍ବର, ୧୯୮୨
୧୧୦୦ ବହି

ମୂଲ୍ୟ : ଟ ୧୮-୦୦
ସାଦା ବନ୍ଧେଇ ଟ ୧୫-୫୦

# ଉତ୍ସର୍ଗ

୧୯୩୦ ସତ୍ୟାଗ୍ରହ ସମୟରେ ଜାତୀୟ କବି ବୀରକିଶୋରଙ୍କ
ବାନର ସେନା ଗାନ କରିବା ପାଇଁ ଲିଖିତ

"ନୀଳକଣ୍ଠ କଚି କୁମର
ଅଶୋକ ସାହସୀ ସୁନ୍ଦର
କମାଇଲା ସେହି ବ୍ରିଟିଶ ପତାକା
ଇଟ୍ଟାଲିକୁ ପଛେ ଗୁଡ଼ାଇ
ଜାଗିଲାରେ ଦେଶ ଜାଗିଲା ।"

ମୋର ସେହି ଅଗ୍ରଜ ଅଶୋକ ଦାସଙ୍କ କରକମଳରେ
ଏହି ପୁସ୍ତିକାଟି ଅର୍ପଣ କଲି ।

ବିନୀତ
ବିକ୍ରମ

# ବିପ୍ଳବୀ କବି ଶ୍ରୀ ମନମୋହନ ମିଶ୍ରଙ୍କ କଲମରୁ

# ମୁଖବନ୍ଧ

ଡାକ୍ତର ବିକ୍ରମ ଦାସଙ୍କ ଲିଖିତ 'ଅଲିଖିତ-ଇତିହାସ' ମୁଖବନ୍ଧ ଲୋଡ଼େନାହିଁ । ଏଥିପୂର୍ବରୁ ତାଙ୍କର ଏକାଧିକ ଲେଖା ପ୍ରକାଶିତ ହୋଇସାରିଛି ଓ ମୁଁ ଯେତେଦୂର ଜାଣେ, ପାଠକ ଓ ସମୀକ୍ଷକମାନଙ୍କର ସଶ୍ରଦ୍ଧ ଅଭିନନ୍ଦନ ଲାଭକରିଛି । ଦ୍ୱିତୀୟରେ ଏହି ଉପନ୍ୟାସର ପୃଷ୍ଠା ଏପରି ଉଜ୍ଜ୍ୱଳ ଭାବରେ ବିଗତ ଭାରତୀୟ ସ୍ୱାଧୀନତା ସଂଗ୍ରାମର କାହାଣୀକୁ ଉପସ୍ଥାପିତ କରିଛି ଯେ, ତାହାକୁ ଆଉରି ଫୋକସ୍‌ରେ ରଖିବାପାଇଁ ଏକ ମୁଖବନ୍ଧର ଆବଶ୍ୟକତା ନାହିଁ ।

ବିକ୍ରମ ଦାସଙ୍କର ବାଲ୍ୟକାଳ, କୈଶୋର ଓ ପ୍ରଥମ ଯୌବନ ପ୍ରତ୍ୟକ୍ଷ ରାଜନୈତିକ ସଂଗ୍ରାମ ଭିତରେ ହିଁ ଗଢ଼ିଉଠିଥିଲା । ବାରମ୍ବାର ସେହି ସଂଗ୍ରାମର ନିଆଁର ଝାସ ତାଙ୍କ ଦେହରେ ଲାଗିଛି । ସେହି କାରଣରୁ 'ଅଲିଖିତ ଇତିହାସ' ଭଳି ଏକ କାହାଣୀ ଲିପିବଦ୍ଧ କରିବାପାଇଁ ତାଙ୍କର ଆଗ୍ରହ, ବ୍ୟାକୁଳତା ଏହି ବହିଟିର ପୃଷ୍ଠା ଅନୁରଞ୍ଜିତ କରିଛି ।

ଶ୍ରଦ୍ଧେୟ ବିକ୍ରମ ଜଣେ ଡାକ୍ତର । ଚିକିତ୍ସକମାନଙ୍କ ଭିତରେ ସୃଜନଶୀଳ ସାହିତ୍ୟ ସୃଷ୍ଟି ବିସ୍ମୟକର ହେଲେ ମଧ୍ୟ ବିରଳ ନୁହେଁ । ଚିକିତ୍ସକର ଅନୁସନ୍ଧାନ, ନିଦାନ ସଂଗ୍ରହ, ନିଷ୍ଠା ଓ ଅନ୍ତରଙ୍ଗ ନିରୀକ୍ଷା ବା ଡାଏଗୋନିସିସ୍ ଏହି ବହିଟିକୁ ଏକ ସଚେତନତା ଓ ମାର୍ଜିତତାରେ ଅଭିଷିକ୍ତ କରିଛି । ତେବେ ଗୋଟିଏ ବିଶେଷତ୍ୱ : ତାଙ୍କର ଲିଖିତ, ପ୍ରକାଶିତ 'ସାତ ତିରିଶ୍ ସତର୍' ଗଳ୍ପସମାହାର ଓ ତାଙ୍କର 'ମଣିମାଉଡ଼ି' ସାମାଜିକ ଓ ଐତିହାସିକ ଆଲେଖ୍ୟରେ ଯେଭଳି ଗ୍ରାମୀଣ ଜୀବନଯାତ୍ରାର ଶାଣିତ ଓ ଦରଦୀ ଚିତ୍ରଣ ରହିଛି, ଏହି 'ଅଲିଖିତ ଇତିହାସ'ରେ ମଧ୍ୟ ତାହାର ସ୍ନିଗ୍ଧ ମଧୁର ଛାୟା ପଡ଼ିଛି ।

ଡାକ୍ତର ବିକ୍ରମ ହୁଏତ ଓଡ଼ିଶାର ବହୁ ସାମ୍ପ୍ରତିକ କାଳର ଶିକ୍ଷିତ ବୁଦ୍ଧିଜୀବୀମାନଙ୍କ ଭଳି ମଫସଲରେ ଜନ୍ମିଛନ୍ତି । ଅନ୍ୟାନ୍ୟ ସହସ୍ର ସହସ୍ର ବୁଦ୍ଧିଜୀବୀ ଓ ବୈଷୟିକ ବୃତ୍ତିଧାରୀଙ୍କ ଭଳି ସେ ଗାଁଗହଳ ଛାଡ଼ି ସହରରେ ଆପଣାର କର୍ମକ୍ଷେତ୍ର ନିର୍ମାଣ କରିଛନ୍ତି । ତେବେ ତାଙ୍କର ବିଶେଷତ୍ୱ ଏହିଠାରେ ଯେ, ଗ୍ରାମ୍ୟ ଜୀବନର ପ୍ରତ୍ୟେକ ଅଣୁ ପରମାଣୁ ସହିତ ସେ ତାଙ୍କର ହାସ୍ୟରସିକ ଓ ଅନୁଭବ ପିପାସୀ ମନକୁ ସଂଯୁକ୍ତ ରଖିଛନ୍ତି । ତାଙ୍କର ଚରିତ୍ର, କାହାଣୀ, ଉଦାହରଣ, ଉପମା ଦୃଷ୍ଟିକୋଣରେ ଯେଉଁ ପ୍ରସନ୍ନ ନିର୍ବିଷ ଉପହାସ ରହିଛି ଓ ସମାଜର କଳଙ୍କମାନଙ୍କ ପ୍ରତି ଯେଉଁ କଟାକ୍ଷ ରହିଛି, ତାହାସବୁ ଗ୍ରାମୀଣ ଓଡ଼ିଶାର ମାଟି ଓ ପାଣି ପବନ ଭିତରୁ ହିଁ ଅଙ୍କୁରିତ ଓ ଲାଳିତପାଳିତ ।

ଫକୀରମୋହନ, ନନ୍ଦକିଶୋରଙ୍କ ଯୁଗ ପରେ ଓଡ଼ିଆ ଲେଖାରେ ଗ୍ରାମୀଣ ଜୀବନର ବାତାବରଣ ଏପରି ଦମ୍ଭିଲ ଭାବରେ ଓଡ଼ିଆ ଉପନ୍ୟାସକୁ ଆଚ୍ଛାଦିତ କରିଥିବାର ବହି ପଢ଼ିଥିବାର ମୋର ସ୍ମରଣ ହେଉନାହିଁ । ଉଦାହରଣସ୍ୱରୂପ ମାଟିବଂଶ ଅବଧାନଙ୍କର ଯେ

କାଳର ଶିକ୍ଷକ ବୃତ୍ତି ବିଷୟରେ ତାଙ୍କର ସୂଚନା ପାଠକ ମନରେ ଫକୀରମୋହନ, ନୀଳକଣ୍ଠ, ଗୋଦାବରୀଶଙ୍କର ଆତ୍ମଜୀବନୀକୁ ମନେପକାଇଦିଏ, ଯଦିଓ ସେଇ ବର୍ଣ୍ଣନାର ଅନୁଭୂତି ତାହାଙ୍କର ଏକାନ୍ତ ନିଜସ୍ୱ ।

ଗାଁଗହଳି ଭିତରେ ଭାରତର ମୁକ୍ତି ଆନ୍ଦୋଳନ, ଉତ୍କଳଭୂମିର ଏକୀକରଣର ବାତାବରଣ ଭିତରେ ଗାଁଗହଳର ନିର୍ଯ୍ୟାତିତ ଜଙ୍ଗଲୀ ମଣିଷ, ଜମିଦାର ସାଆନ୍ତ, ଅର୍ଦ୍ଧଶିକ୍ଷିତ ଉଚ୍ଚାଭିଳାଷୀ, ଅଧା ନେତା-ଅଧା ଟାଉଟର ଇତ୍ୟାଦିଙ୍କର ପ୍ରବେଶ, ମନେହୁଏ ଯେପରି ସମସ୍ତ ବାତାବରଣ ଭିତରେ ଗାଁର ଧୂଳିମାଟି, ଶ୍ୟାମଳିମା, ରୁକ୍ଷତା, ଦୈନ୍ୟ, କରୁଣ, ଜୀବନରକ୍ଷା, ଚତୁର ଶୃଗାଳବୁଦ୍ଧି ଦ୍ୱାରା ପଶ୍ଚାତ୍‌ପଦ କୁସଂସ୍କାର-ଜର୍ଜ୍ଜରିତ ସରଳ ଗ୍ରାମବାସୀଙ୍କୁ ପ୍ରଲୋଭନ ଇତ୍ୟାଦି ଇତ୍ୟାଦି ଏବେ ଆଉ ମୁଦ୍ରିତ ପୃଷ୍ଠାରେ ମିଳିବ ନାହିଁ । ତାହାକୁ ସାବଲୀଳ, ଋଜୁ ଭାଷାରେ ଅନୁଭବର ଅନୁରଞ୍ଜନ ଦେଇ ଲେଖିବାର ଅଭିଜ୍ଞତା ଓ ସ୍ପୃହା କମେ ବିରଳ ହୋଇଯିବ । ଏହି ଦିଗରେ ବିକ୍ରମ ଦାସଙ୍କର ଏହି ରଚନା ଓଡ଼ିଆ ସାହିତ୍ୟର ଏକ ଉଜ୍ଜ୍ୱଳ ଦୀପସ୍ତମ୍ଭ ଭଳି କାର୍ଯ୍ୟ କରିବ ।

ଭାରତର ଜାତୀୟ ଆନ୍ଦୋଳନର ମହାନାୟକମାନେ ଗାଁଗହଳର ଲୋକ ନଥିଲେ । ସେମାନେ ଥିଲେ ଭାରତରେ ବ୍ରିଟିଶ ଶାସନର ଆଧୁନିକତାର ଅବଦାନ, ସହରର ସନ୍ତାନ । ସେମାନେ ଥିଲେ ସ୍ୱଚ୍ଛଳ ଉଚ୍ଚ-ମଧ୍ୟବିତ୍ତ ବିଭବଶାଳୀ ପରିବାରର ଦାୟାଦ । ଭାରତୀୟ ବିଭିନ୍ନ ଭାଷା-ସାହିତ୍ୟରେ ସ୍ୱାଧୀନତା ଆନ୍ଦୋଳନର ଐତିହାସିକ ପୃଷ୍ଠଭୂମି ଉପରେ ରଚିତ ସାମାଜିକ ଉପନ୍ୟାସ-କାହାଣୀର ନାୟକ କିମ୍ବା ପ୍ରତି-ନାୟକମାନେ ତେଣୁ ଏହି ଉଚ୍ଚଶ୍ରେଣୀର ପ୍ରତିଭୂ । 'ଅଲିଖ ଇତିହାସ' କିନ୍ତୁ ଏଥିରେ ଏକ ଚେତନାଶୀଳ ବ୍ୟତିକ୍ରମ । ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନରେ କ୍ଷତବିକ୍ଷତ ହୋଇଛନ୍ତି, ସର୍ବସ୍ୱ ହାରିଛନ୍ତି ଓ ଆତ୍ମବଳିଦାନ କରିଛନ୍ତି, କିନ୍ତୁ ତାହାର ଫଳ ଭୋଗ କରିନାହାନ୍ତି, ସେହି ସାଧାରଣ ହଜାର ହଜାର ଜନତାର ପ୍ରତିନିଧି ମାଟିର ମଣିଷ ଏଇଠାରେ ଆପଣାର ଅବିସ୍ମରଣୀୟ ସ୍ୱାକ୍ଷର ଲେଖିଛନ୍ତି । ସେମାନଙ୍କର ଅତି ସାଧାରଣତା ହିଁ ଏଠାରେ ସେମାନଙ୍କୁ ଅସାମାନ୍ୟ କରିତୋଳିଛି ।

ପିଲାଦିନର ବହୁତ କଥା ଏହି ବହି ପଢ଼ିଲେ ମନେପଡ଼ୁଛି—ଯେଉଁଠି ଆଗ୍ରହୀଜନ ପରେ ଆଲୋଚନା କଲେ ବା ଭୁକ୍ତଭୋଗୀ ମେଳରେ ସ୍ମରଣ କଲେ ବହୁ ହସବୃଷ୍ଟି ହୁଏ, ମନ ହାଲୁକା ହୋଇଯାଏ । ଡାକ୍ତର ବିକ୍ରମ ଠିକ୍ ମନସ୍ତତ୍ତ୍ୱବାଦୀ ଡାକ୍ତର ଭାବରେ ସେମାନଙ୍କ ପାଇଁ ବିଶ୍ରମ୍ଭ ସ୍ମୃତିର ଖୋରାକ ଯୋଗାଇଛନ୍ତି ।

'ଅଲିଖ ଇତିହାସ'ର କର୍ମସ୍ଥାନ (ଜୁନିଅର) ନାୟକ ପାଟଣା କ୍ୟାମ୍ପ ଜେଲ୍‌ରେ ଆପଣାର ଲକ୍ଷ୍ମଣପ୍ରତିମ ସାନଭାଇ ଓ କଣୋରସୁଲଭ ସରଳ ସ୍ୱପ୍ନକୁ ହରାଇ ଯେତେବେଳେ ନୂତନ ସାଥୀ ଓ ନୂତନ ତତ୍ତ୍ୱ ଦର୍ଶନ ପାଇଁ କଟକ ସହରରେ ସନ୍ଧାନୀ ହେଲା, ସେତିକି ବେଳର ଜୀବନ ସଂଗ୍ରାମ, ବୁଭୁକ୍ଷା, ଆଶା, ନିରାଶା ଭିତରେ କଠୋର ଆତ୍ମବିଶ୍ୱାସ ଓ ଉଜ୍ଜ୍ୱଳ ପୂର୍ବଦୃଷ୍ଟି, ସେତେବେଳର ମେସ୍ ଜୀବନ, ଟିଉସନ, ରାଜନୀତିର ପହିଲି ପାଠ ଇତ୍ୟାଦିର

ବର୍ଣ୍ଣନା ପଢ଼ିଲାବେଳେ ମୋର ମନେହୋଇଥିଲା ଯେ ସେପରି ଜୀବନ, ଯାହା ମୋର ଓ ମୋର ଅଗ୍ରଜ ଓ ସମସାମୟିକଙ୍କର, ସାମୂହିକ ଓ ବ୍ୟକ୍ତିଗତ ଜୀବନର ଅନ୍ତରାଳରେ ଭାଗ୍ୟଦଶା ଥିଲା, ତାହା ଆମେ ସମସ୍ତେ ଏପରି ଭାବରେ ଲିଖିତ ବହିରେ ଆଉ ଥରେ ସେହି ବିଗତ ଅପହୃତ କୈଶୋର ଓ ଯୌବନକୁ ଦେଖିପାରନ୍ତୁ କି ? ଆଜି ସେହି ଅଗ୍ରଜ ଓ ସମସାମୟିକ ସହଯାତ୍ରୀ ସହକର୍ମୀ ଭିତରୁ ଅନେକ ସ୍ୱର୍ଗତ, ଅନେକ ସେ ପଥର ଯାତ୍ରୀ ।

ବିଶାଳ ସଂଖ୍ୟାବହୁଳ, ବହୁ ବିଭିନ୍ନତା ଓ ଏକତାର ଗନ୍ତାଘର ଭାରତ ପରି ଦେଶର ପ୍ରାୟ ଷାଠିଏ ବର୍ଷର ସ୍ୱାଧୀନତା ଆନ୍ଦୋଳନର ଆଲେଖ୍ୟ, ଅନନ୍ତ ଆକାଶର ପ୍ରତିବିମ୍ବ ଗୋଟିଏ ଶିଶିର ବିନ୍ଦୁ ଉପରେ ପ୍ରତିଫଳିତ ହେଲେ ତାହାର ଛବି ଯେପରି ହୁଏନ୍ତା, ସେପରି ଏକ ଛବି ଏହି 'ଅଲିଖିତ ଇତିହାସ' । ସ୍ୱାଧୀନତା ଆନ୍ଦୋଳନରେ ଅଧିକାଂଶ ଭାରତୀୟ ଥିଲେ ସାତସ୍ତୁନ୍ଦ । କେତେକ ଥିଲେ ତଟସ୍ଥ । ରେଶ୍ମୁ କାତର କେତେକ ଆନ୍ଦୋଳନ ଭିତରେ ଆଦର୍ଶ ଓ ସ୍ୱାର୍ଥ ତ୍ୟାଗର ଜ୍ୱଳନ୍ତ ନିଷ୍ଠାରେ ଜୀବନର ସମସ୍ତ ଜଳାଞ୍ଜଳି ଦେଇ ଯେତେବେଳେ ସ୍ୱାର୍ଥପରତା ଓ ସଙ୍କୀର୍ଣ୍ଣତାର କଳଙ୍କିତ ପଥ ଦେଖିବାକୁ ପାଇଥିଲେ, ସେତେବେଳେ ସେମାନେ ଦେଶମାତୃକାର ସେବାପାଇଁ ଭିନ୍ନ ପଥର ଅନୁସନ୍ଧାନୀ ହେଲେ । କେତେକ ଥିଲେ ନିରାଳମ୍ବ ସାଧକ । ଚନ୍ଦ୍ରଭାଗାର ଆବିଳ ଜଳ ସତ୍ତ୍ୱେ ସେଥିରେ ସ୍ନାନକରି ସ୍ନାନାର୍ଥୀ ଯେପରି ଆପଣାକୁ ଶୁଚିମନ୍ତ ମନେକରିବାକୁ ଶିଖେ, ସେହିପରି ଭାବରେ ସେମାନେ ଆପଣାର ଜୀବନର ଧ୍ରୁବତାରା ଭାବରେ ଯେଉଁ ଦୃଷ୍ଟିକୋଣକୁ ଧରିରଖିଥିଲେ, ତାହାକୁ ଆଉଥରେ ପରୀକ୍ଷା କରିବାକୁ ନିଜଦ୍ରୋହିତା ବୋଲି ଜ୍ଞାନ କରୁଥିଲେ । ଆଉ ଯେଉଁମାନେ ତାରୁଣ୍ୟର ଉଦ୍ଦାମତାରେ ଆନ୍ଦୋଳନର ଅତନ୍ଦ୍ର ପନ୍ଥାରେ ସଫଳତା ବିଷୟରେ ସନ୍ଦିଗ୍ଧ ହୋଇ ନୂତନ ପଥ ଓ ଦର୍ଶନର ଦିପାଯୀ ଥିଲେ, ସେମାନେ ଥିଲେ ଆଉ ଏକ ଗୋଷ୍ଠୀର ।

ଏହି ସମସ୍ତଙ୍କ ଛଡ଼ା ଥିଲେ ନୀଚ ଟାଉଟର ଶ୍ରେଣୀ, ସ୍ୱାର୍ଥାନ୍ୱେଷୀ ମୁଷ୍ଟିମେୟ ଲୋକ ଯେଉଁମାନେ ଆପଣାକୁ ବିଜାତି ପାଖରେ ବିକି କରିଦେଇଥିଲେ; ତାହାର ଗୋଲାମି ଓ ଖୋସାମଦ କରିବା ହେଲା ସେମାନଙ୍କର ବ୍ୟବସାୟ ।

ଅହିଂସାବାଦୀ ସାଧକ ଭିଖାରୀବାବୁ, ଶିକ୍ଷକ, ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ; କାରାବରଣ ପରେ ଆନ୍ଦୋଳନର ଭଟ୍ଟା ଥିବା ସତ୍ତ୍ୱେ ଏକନିଷ୍ଠ ଭାବରେ ଜନସାଧାରଣଙ୍କ ଗହଣରେ ଆପଣାର ସାଧନାର ଗୌରବ ବିକୀରଣ କରିଚାଲିଛନ୍ତି । କାରାବାସରେ ନିଜ ପତ୍ନୀଙ୍କୁ ହରାଇଛନ୍ତି । କନିଷ୍ଠ ପୁତ୍ର ସେଇ କାରାଗାରରେ ରୋଗ ଯନ୍ତ୍ରଣାରେ ଇହଲୋକରୁ ବିଦାୟ ନେଇଛି । ସଂସାର ସହିତ ଏକମାତ୍ର ସମ୍ବନ୍ଧସୂତ୍ର ପୁଅ ନବକୁମାର, ଦୁରୁହ, ଦୁର୍ଗମ, ନୂତନମାର୍ଗ ଅନ୍ୱେଷଣରେ ଚାଲିଛି ।

ଏହିଠାରେ ପିତା ପୁତ୍ର ଭିତରେ ଯେଉଁ ମର୍ମସ୍ପର୍ଶୀ ଆଦର୍ଶ ସଂଘର୍ଷର ଅବତାରଣା କରାଯାଇଛି, ତାହା ହେଉଛି ପ୍ରତ୍ୟେକ ଗଣଆନ୍ଦୋଳନର ଦୁଇପୁରୁଷର ସମ୍ପର୍କ ଭିତରେ

ଏକ ଅଲଙ୍ଘନୀୟ ସମସ୍ୟା । ଭାରତୀୟ ସାହିତ୍ୟରେ ବଙ୍ଗଳା, ମାରାଠି, ଗୁଜରାଟି ଇତ୍ୟାଦି ବିଭିନ୍ନ ଭାଷାରେ ଏହି ଜୀବନ-ଦ୍ୱନ୍ଦ୍ୱର ଉଦାହରଣ ବହୁଘଟଣାରେ ଏକ ଅବିସ୍ମରଣୀୟ ସ୍ଥାନ ଅଧିକାର କରିଛି । ଲେଖକ ଏହି ପୁସ୍ତକରେ ସେହି ଦୁଇ ପିଢ଼ିର, ଦୁଇ ଚିନ୍ତାଧାରାର ସମ୍ପର୍କକୁ କରୁଣାମୟ ସହାନୁଭୂତି ଓ ସଂଯମ ସହିତ ଚିତ୍ରଣ କରିଛନ୍ତି ।

ଏହି ଇତିହାସ ମଞ୍ଚର ଯବନିକାରେ ସରଳା ଗ୍ରାମ୍ୟ ବାଳିକା, ପୁତ୍ରବଧୂ ଯେଉଁଭଳି ଜୀବନ ସଂଗ୍ରାମର ଦୁର୍ଭୋଗ ଓ କଷାଘାତକୁ ନୀରବ ସାହସ ଓ ସହିଷ୍ଣୁତା ସହିତ ସମ୍ମୁଖୀନ ହୋଇଛି, ଶ୍ୱଶୁରଙ୍କ ଦେହାବସାନରେ ତାଙ୍କର ସ୍ଥାନ ପୂରଣ କରିଛି ଓ ଶେଷରେ ଜାତି ନହବତରେ ମୁକ୍ତି ଦୁନ୍ଦୁଭି ବାଜିବାବେଳେ ଆପଣାର ବହୁ ଆକାଙ୍କ୍ଷିତ ସ୍ୱାମୀଙ୍କର ଶେଷ ନିଃଶ୍ୱାସ ଆପଣାର ବକ୍ଷରେ ସମ୍ଭାଳିନେଇଛି, ତାହା ଏହି ଚରିତ୍ରଟିର ମାନବୋଚିତ ମହିମା ପ୍ରକଟିତ କରୁଛି ।

ମୋଟ ଉପରେ ଏହି ବହି 'ଅଲିଖିତ ଇତିହାସ' ଇତିହାସର ବୈଜ୍ଞାନିକ ରଚନା ଓ ସତ୍ୟ ସନ୍ଧାନ ଉପରେ ଆଧାରିତ ହୋଇଛି । ଏହାର ଲେଖକ, ରାଜା, ରାଣୀ, ସାମନ୍ତ, ନବାବ ଓ ଉଚ୍ଚମଧ୍ୟବିତ୍ତଙ୍କର ଶୋଭାଯାତ୍ରାକୁ ଇତିହାସ ବୋଲି ଗ୍ରହଣ ନକରି, ସାଧାରଣ ଜନତାର ନିରନ୍ନ, ଦୈନ୍ୟତାଡ଼ିତ ପ୍ରତିନିଧିଙ୍କୁ ଇତିହାସର ବିଧାତା ଭାବରେ ଗ୍ରହଣ କରିଛନ୍ତି । ତାଙ୍କର ଉପନ୍ୟାସ (ଜହରଲାଲ ନେହେରୁଙ୍କଠାରୁ ଏ. ଟଏନ୍‌ବୀଙ୍କ ଯାଏଁ) ବର୍ତ୍ତମାନ ସ୍ୱୀକୃତ ଓ ଗୃହୀତ ପଦ୍ଧତିଦ୍ୱାରା, ସତ୍ୟାଶ୍ରିତ ଓ ବୈଜ୍ଞାନିକସମ୍ମତ ହୋଇପାରିଛି ।

ଶେଷରେ ଏହା କ'ଣ ଜୀବନର ଏକ ଅଦ୍ଭୁତ ଯୋଗସୂତ୍ର ଯେ ଏହି ପୁସ୍ତକର ମୁଖବନ୍ଧ ଲେଖିବାର ଭାର ମୋ ଉପରେ ପଡ଼ିଲା ? କାରଣ ଲେଖକ ଯେଉଁ ରଙ୍ଗଭୂମିରେ ତାଙ୍କର ନାୟକଙ୍କୁ ଅବତୀର୍ଣ୍ଣ କରାଇଛନ୍ତି, ସେହି ସମସ୍ତ ରଙ୍ଗଭୂମି ସହିତ ମୋର ପରିଚୟ ଏକାନ୍ତ ନିବିଡ଼ । ବିଶେଷତଃ ଆସାମର ଚାହା ବଗିଚାର ଶ୍ରମିକ ମୁଲକ । ଭାରତରୁ ବ୍ରିଟିଶ ରାଜର ଅବସାନର ଠିକ୍ ପ୍ରାକ୍‌କାଳରେ ୧୯୪୬ ମସିହାରେ, ବଙ୍ଗଳା ଦେଶ ଓ ଆସାମର ସୁରମ୍ୟ ଉପତ୍ୟକା, ନାଜିରା, ତିନସୁକିଆର ଚାହା ବଗିଚାରେ ଯେଉଁ ହଜାର ହଜାର ଓଡ଼ିଶାର ଓଡ଼ିଆ ଆଦିବାସୀ ଓ ଛତିଶଗଡ଼ କୁଲିମାନେ କାମକରି ବଂଶପରମ୍ପରାକ୍ରମେ ସେଇ ମାଟିକି ଆଦରି ନେଇଛନ୍ତି, ତାଙ୍କର ସଙ୍ଗଠନ ଗଢ଼ିବା ପାଇଁ ମୋତେ ସୁଯୋଗ ମିଳିଥିଲା । ସେତେବେଳେ ସେ ଥିଲା ଭିତର ଓ ବାହାର ଅନ୍ଧାରରେ ତମସାବୃତ ମୁଲକ, ବିଲାତିରାଜ ଭିତରେ ଆଉ ଏକ ଗୋରା ସାହେବ ରାଜ । ସେଇଠାରେ ଚାହା ବାଗାନର ଜେନେରାଲ ମ୍ୟାନେଜରର ଦରମା ଓ ଅନ୍ୟାନ୍ୟ ଭତ୍ତା ଆସାମର ଲାଟର ମୋଟ ପାରିଶ୍ରମିକର ଦୁଇ ଗୁଣ । ରେଳ ଷ୍ଟେସନ ଛାଡ଼ି ଚାହା ବଗିଚାର ଟ୍ରଲି ରାସ୍ତାରେ ନିପୁରାର ପାହାଡ଼ଯାଏ ଲମ୍ବିଥିବା ଚାହା ବଗିଚା ଭିତରେ ରାସ୍ତାଘାଟ, ପାଣି ପବନ, ନିଶ୍ୱାସ ପ୍ରଶ୍ୱାସ ସବୁ ସାହେବ କମ୍ପାନୀର ଓ ତାହାର କର୍ତ୍ତା 'ମେମ ସାହେବ'ର । ସେହି ଦୁନିଆକୁ ସେତେବେଳେ ପ୍ରତ୍ୟକ୍ଷ ନକରି ମଧ୍ୟ ଶ୍ରଦ୍ଧେୟ ବିକ୍ରମ କପୂର ଯେ ତାହାର ଏପରି ବାସ୍ତବ ଜ୍ୱଳନ୍ତ ଚିତ୍ର ଦେଇପାରିଲେ

ତାହା ମୋତେ ବିସ୍ମିତ କରିଛି । ଚିହ୍ନା ବାଗାନର ସେହି ଗୋରା ସାହେବାନ୍-କମ୍ପାନୀ-ରାଜ ବିଷୟରେ ପୂର୍ଣ୍ଣାଙ୍ଗ ତଥ୍ୟର ଇତିହାସ ଏପର୍ଯ୍ୟନ୍ତ ଲେଖାହୋଇନାହିଁ ।

ମୁଲ୍କ ରାଜ ଆନନ୍ଦଙ୍କର 'ଦୁଇଟି ପତ୍ର ଓ ଗୋଟିଏ କଢ଼ି' (Two Leaves and a Bud) ତାହାର ଗୋଟିଏ ଛବି ହିଁ ଉଦ୍‌ଘାଟନ କରିଛି । ଲେଖକ ବିକ୍ରମ ଦାସ ମଧ୍ୟ ସେହି ସଂସାରର ବୀଭତ୍ସ ନାରକୀୟ ଚିତ୍ର, ସେଠାରେ କୁମ୍ଭୀପାକର ଶୋଷଣ, ଯେତିକ ତାଙ୍କର ଉପନ୍ୟାସ ଗଣ୍ଡିରେ ସମ୍ଭାଇବା ସମ୍ଭବ, ସେତିକ ଦେଇଛନ୍ତି । କିନ୍ତୁ ଯାହା ଆସିପାରିଛି ତାହା ତାଙ୍କର ଏକ ଶ୍ରେଷ୍ଠ ସାହିତ୍ୟିକ ଅବଦାନ ।

ମହାକବି କାଳିଦାସ କେବେ ଆକାଶରୁ ପୃଥିବୀକୁ ଦେଖିନଥିଲେ । ତଥାପି ପୁଷ୍ପକ ବିମାନରେ ରାମଚନ୍ଦ୍ର, ଆକାଶରେ ଉଡ଼ିଗଲାବେଳେ ସୀତାଙ୍କୁ ସେତୁବନ୍ଧ ରାମେଶ୍ୱର ଦେଖାଇଲା-ବେଳେ ଯାହା କହିଛନ୍ତି—ଦୂରରେ ଏହି ଯେଉଁ ସୁନ୍ଦର ତମାଳ ତାଳ ବନରାଜିରେ ନୀଳ ଦିଶୁଥିବା ବେଳାଭୂମି ଓ ଲବଣାମ୍ବୁ ରାଶି ଦେଖାଯାଉଛି ସେଇଠି, ସେଇଠି ସେତୁବନ୍ଧ ଗଢ଼ାହୋଇଥିଲା···ଇତ୍ୟାଦି···

ବିମାନରେ ଯେ କେହି ଆକାଶ-ପଥିକ ଆଜି ବି ସେଇବାଟରେ ଦିନବେଳେ ଯିବାର ସୌଭାଗ୍ୟ ଲାଭ କରିଥିଲେ—ଯାହା ମୁଁ ପାଇଥିଲି—କାଳିଦାସଙ୍କର ସେହି ବର୍ଣ୍ଣନା କେତେ ସତ୍ୟାଶ୍ରୟୀ, କେତେ ପ୍ରତ୍ୟକ୍ଷୀଭୂତ-ପ୍ରାୟ ଅନୁଭୂତ ତାହା ଜଣାପଡ଼ିବ ।

କିନ୍ତୁ କାଳିଦାସଙ୍କର ପୁଷ୍ପକ ଯାନ ଆରୋହଣ ଥିଲା କବିର କଳ୍ପନା ନେତ୍ରର ଅବଲୋକନ । ତେଣୁ କାଳିଦାସ କବି, ସାହିତ୍ୟିକ । ସେହି କାରଣରୁ ଡାକ୍ତର ବିକ୍ରମ ଦାସଙ୍କ କଳ୍ପନାପ୍ରସୂତ ବର୍ଣ୍ଣନାରାଜି ସାହିତ୍ୟ ରାଜ୍ୟରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରିଛି ।

ଏହି ମୁଖବନ୍ଧ ଏହି ବହି ବିଷୟରେ ଶେଷକଥା ନୁହେଁ । କାରଣ ଏହି ବହି ବହୁ ପ୍ରସାଦଗୁଣ, ସ୍ମାରକ ଗାଥା, ଗ୍ରାମୀଣ ଜୀବନର ଅନୁଲେଖ ଇତ୍ୟାଦି କାରଣରୁ ଭାରତର ସ୍ୱାଧୀନତା ଆନ୍ଦୋଳନର 'ଅଲିଖିତ ଇତିହାସ' ସହିତ ଜଡ଼ିତ ରହିବ । ତେଣୁ ଏହି ଅଲିଖିତ ଇତିହାସ ସନ୍ଧାନରେ ବହୁ ଆଲୋଚନା ଭବିଷ୍ୟତରେ ହେବ । ଏହି ବହି ଓ ଏହି ମୁଖବନ୍ଧ ଏହି ଐତିହାସିକ କର୍ତ୍ତବ୍ୟରେ ଏକ ଶ୍ରେଷ୍ଠ ପଦକ୍ଷେପ । ଅସ୍ୟାରମ୍ଭାସ୍ତୁ ଶୁଭାସ୍ତୁ ଭବତୁ ।

ରାଣୀହାଟ                                   ମନମୋହନ ମିଶ୍ର

୧୪-୧୦-୮୧

# ଏକ

ନୂଆଗଡ଼ ଗଡ଼ଜାତ ଓ ମୋଗଲବନ୍ଦୀ ଖୋର୍ଦ୍ଧା—ସେ ଦୁହିଙ୍କ ସୀମାର ଦୁଇପଟେ ଡେଙ୍ଗା ଡେଙ୍ଗା ପଥର କେନ୍ଦୋହା ଉପରକୁ ମୁଣ୍ଡ ଟେକି ଠିଆହୋଇଛନ୍ତି । ତାଙ୍କର ଦୁଇପଟେ ବଡ଼ ସାନ ଧାଡ଼ିଏ ଦୋ'ଧାଡ଼ି ଲମ୍ବା ଲମ୍ବା ପଥର ମୁଣ୍ଡିଆ ଅଯୁତଙ୍କ ଅଗଣନ୍ତ ବାହାଡ଼ା ଦାନ୍ତପରି ଠେଲିଠେଲି ହୋଇ ସୀମାଆଡ଼କୁ ଆଗେଇ ଆସୁଥିଲା ପରି ଜଣାପଡ଼ନ୍ତି । ମୁଣ୍ଡିଆ ତଳେ ଖୋର୍ଦ୍ଧାଆଡ଼କୁ ଲମ୍ବିଛି ଠାଙ୍ଗରା ଭୂଇଁ । ସେଇ ଅମାନିଆ ପଥୁରିଆ ଭୂଇଁକୁ ମୁଣ୍ଡିଆଳ ତୁଣ୍ଡରେ ମାଟି ପଥର ଚୂର୍ଣ୍ଣି, କୂଅ ପୋଖରୀ ଖୋଳି ଦୁଇଗୋଡ଼ିଆ ଜୀବ ମଣିଷ ଧୂଡ଼ାକ ଚାଷଭୂଇଁରେ ପରିଣତ କରିଛନ୍ତି ।

ଜମି ପାଖେ ପାଖେ ମଣିଷଙ୍କୁ କୋଳାକରି ଶ୍ରେଷ୍ଠ ବଡ଼ ଗାଁଗୁଡ଼ିଏ ଗଢ଼ି ଉଠିଛି । କୁଡ଼ିଆଘର ବଦଳିଛି, ମଣିଷ ବଦଳିଛି; କିନ୍ତୁ ବନ୍ଧୁଦନଙ୍କୁ ବଡ଼ପୁଟ ସାନପୁଟ ପାଇକସାହିପରି ଗାଁର ନାମ ଚୁଡ଼ାନ୍ତ ସେହିପରି ରହିଛି । ବଡ଼ପୁଟ ଗାଁଟିରେ ଜମିଦାରଙ୍କର ପଥରବସା ଚୂନଲଗା କୋଠାଘର । ସେ କୋଠାଟିର ଚାରିପଟେ ମାଟି କାଠ, ପଥର କାନ୍ଥ ପ୍ରଭୃତିର ଚାଳ ଓ ଟାଳିଆଘର ଖପ୍ରାଲ ଛାତ ଥାଳି ଚାରିପଟେ ଥୁଆ ହୋଇଥିବା ଡାଲି ତରକାରିର କଂସାବାଟି ପରି ଘେରିରହିଛନ୍ତି । ସେ ସବୁରେ ଜମିଦାରଙ୍କ କର୍ମଚାରୀ, କୁଟୁମ୍ବ, ପାଇକଲୋକେ ଓ ଚାକରବାକରମାନେ ରହନ୍ତି । ସେ ସ୍ଥାନକୁ ସେଠା ଲୋକେ କହନ୍ତି ଜମିଦାରଙ୍କ ଉଆସ ।

ସେଠାରୁ ଅଳ୍ପଦୂରରେ ଦାଣ୍ଡି ଦାଣ୍ଡି ହୋଇ ଛିଡ଼ା ହୋଇଥିବା ଚାଳଘର-ମାନଙ୍କରେ ସେ ଗ୍ରାମର ଅନ୍ୟାନ୍ୟ ଥିଲାବାଲା ଓ ନଥିଲାବାଲା ବାସିନ୍ଦାମାନେ ବାସ କରନ୍ତି । ସେ ଲୋକଙ୍କ ଜାତି ଓ ବ୍ୟବସାୟ ଅନୁସାରେ ସେ ଦାଣ୍ଡି ବା ସାହିଗୁଡ଼ିକର ନାମକରଣ ହୋଇଥାଏ । ଗାଁଠାରୁ ଟିକିଏ ଦୂରରେ ଗୋଟିଏ ପଡ଼ିଆ ଉପରେ ଗାଁର ଶ୍ମଶାନ । ସେଠି ଜାତି ଓ ବ୍ୟବସାୟର ପ୍ରଭେଦ ନାହିଁ । ଗାଁର ସମସ୍ତେ ଇହଲୀଳା ସାରିବା ପରେ ସେଇଠି ଯାଇ ଚିରଦିନ ପାଇଁ ଶୋଇପଡ଼ନ୍ତି ।

ହାଟସାହୀର ବାସିନ୍ଦାମାନଙ୍କ ଭିତରେ ପଦ୍ମନାଭ ସେନାପତି ଜଣେ ନାମଜାଦା ମାମଲତକାର ଓ ମାତବର ଲୋକ । କୁଳଘର ହେଲେ ମଧ୍ୟ ତାଙ୍କ ଘରଟି ଅନ୍ଦର ଓ ସେ ଘରର ପିଣ୍ଡାଟି ଅନ୍ୟମାନଙ୍କ ପିଣ୍ଡାଠାରୁ ଉଚ୍ଚହୋଇ ଗଢ଼ା ହୋଇଛି ।

ତାଙ୍କ ପୂର୍ବପୁରୁଷ କୁଆଡ଼େ ସାଧାରଣ ମଲମୁଣ୍ଡିଆ ଗରିବ ଶ୍ରେଣୀର ଲୋକ ଥିଲେ । ସେ ଜମିଦାର ବଂଶର ଦଣ୍ଡାରୁ କେତେଟା ଶ୍ରେଣୀ ଇଂରେଜୀପାଠ ପଢ଼ି ଆସିଥିବାରୁ ସେ ବାବୁଶ୍ରେଣୀରେ ନାମ ଲେଖାଇଛନ୍ତି । ଗୋଡ଼ରେ ସବୁବେଳେ ଚଟିପିନ୍ଧି ଚାଲିଚଳନ୍ତି କରନ୍ତି । କେତେକ ଅଦୃଷ୍ଟ ଲୋକ ତାଙ୍କୁ ସମ୍ମାନପାଇଁ ତାଙ୍କୁ ଦେଖାଇ ତାଙ୍କ ପଛରେ ଗୀତ ଭଣି ବୋଲିବାର ଶୁଣାଯାଏ—

ପ୍ରତି ସାମ୍ପ୍ରତର ବଖରାଳ ଘର ଛପର ନ ହୁଏ ଯାହାର
ବୃଷ୍ଟି ପାତବେଳେ ଦୃଷ୍ଟି ପାତ କଲେ ସମାନ ଭିତର ବାହାର
ତାଙ୍କ କୁଳପୁତ୍ର ଅଙ୍ଗରେଜି ପଢ଼ି କରି ଗୋପନୀୟ ବେଭାର
ଖଲ ବେଉପାରେ ପରଧନ ଲୁଟି ଉଚ୍ଚ ପିଣ୍ଡା ଏବେ ତାଙ୍କର
ବଖିରେ,
ସାଧୁଙ୍କୁ ଦେଉଛୁ ଶରୀ କଉପୁନ ଖଲ ପରେ ଥୋଇ ନଥିରେ ।

ସେ ଯାହାହେଉ, ତାଙ୍କ ଧାମନାରେ ସମସ୍ତେ ତାଙ୍କୁ ଡାକନ୍ତି ପଦନବାବୁ । ତାଙ୍କର ବେଶି କିଛି ଧନ ସମ୍ପତ୍ତି ନ ଥିଲା କି ସେ ଜମିଦାରଙ୍କ ଟପିଲା ଭଳି ପୁଡ଼ାଏ ମଧ୍ୟ କିଣିପାରିନାହାନ୍ତି; ତଥାପି ସେ ଅଞ୍ଚଳର ପାଞ୍ଚ କୋଶ ଭିତରେ ତାଙ୍କ ନାମ ଡାକହାକ । ତାଙ୍କର ଏତେ ପ୍ରତିପତ୍ତି ଯେ ଲୋକେ କହନ୍ତି ସେ ଗଲାବେଳେ ଗର୍ଭିଣୀ ଗାଈ ମଧ୍ୟ ଅଡ଼େଇ ହୋଇଯାଇ ତାଙ୍କୁ ବାଟ ଛାଡ଼ିଦିଏ । ସେ ତାଙ୍କ ଉଚ୍ଚ ପିଣ୍ଡାରେ ବସିଲାବେଳେ ସାଧାରଣ ଲୋକେ ସେ ନ ଦେଖିବା ଭଳି ଅଡ଼େଇ ହୋଇ ବାଟଘରକି ଚାଲିଯାଆନ୍ତି ।

ସକାଳୁ ଉଠିବାକ୍ଷଣି ଦାଣ୍ଡପିଣ୍ଡାରେ ମୁହଁ ଧୋଉ ଧୋଉ ସାମନା ଘରର ଲୋକଙ୍କୁ ଡାକିପକାଇ ସେ ଚନ୍ଦନପତର ବରାଦ କରନ୍ତି । ମୁହଁ ହାତ ଧୋଇ, ଦୁଇ ହାତରେ ଚନ୍ଦନପତ୍ର ଚକଟି ଚକଟି ଗାମୁଛା ଖଣ୍ଡିଏ ପିନ୍ଧି ଗାଁ ମୁଣ୍ଡକୁ ଯାଇ, ଗଛ ଛାଇ ନିକଟରେ ଦୁଇକାର୍ଯ୍ୟ ସମାପ୍ତକରି ପାଖ ଗାଡ଼ିଆରେ ଶୌଚ୍ଚ ସାରି ଘରକୁ ଫେରନ୍ତି ।

ଘରେ ଲୁଗାପଟା ବଦଳାଇସାରି ତାଙ୍କର ଗ୍ରାମପରିକ୍ରମା କାର୍ଯ୍ୟ ଆରମ୍ଭ ହୁଏ । କାହା ଦୁଆରକୁ ଉଠି ତୁହାର ବରାଦ ତ କେଉଁଠି ଜଳଖିଆର ବରାଦ କରି ଏଠି ଡାକେ ସେଠି ଡାକେ ଦେଇ ଶେଷରେ ଗ୍ରାମଦେବତାଙ୍କ ମଣ୍ଡପରେ ତାଙ୍କ ଅଡ୍ଡା ଜମେ । କାହାଘରେ କାହାର କାହାର କଳି ଲାଗିଛି, କେଉଁଠି କାହା ଜମିରେ କାହାର ଗାଈପଶି ଫସଲ ଖାଇଛି, କିଏ କେଉଁଆଡ଼େ ଗଲା, କିଏ ଗାଆଁକୁ ଫେରିଲା, ସେ ସବୁର ସମ୍ବାଦ ସଂଗ୍ରହକରି ସେ

ଅନ୍ୟତଃ ସେ ଦିନଷ୍ଟାପାଇଁ ନିଜର କର୍ମପନ୍ଥା ସ୍ଥିର କରନ୍ତିଅନ୍ତି । ତା' ସଙ୍ଗେ ସଙ୍ଗେ ମଧ୍ୟାହ୍ନ ଭୋଜନ ପାଇଁ କାହା ହାଣ୍ଡିରେ ଚାଉଳ ପଡ଼ିବ, ତା'ର ମଧ୍ୟ ବ୍ୟବସ୍ଥା ହୋଇଯାଏ । ଖାଇ ପିଇ ଭିତରେ, ସାହିପଡ଼ୋଶୀଙ୍କ ଭିତରେ ମନୋମାଳିନ୍ୟ ଥିଲେ ବା ସୁବିଧାଦେଖି ମନୋମାଳିନ୍ୟ ସୃଷ୍ଟିକରାଇ, ତା'ର ସମାଧାନ ପାଇଁ ଦୁଇପକ୍ଷକୁ ଡକାଇ ସେ ନିଜ ହାତ ଚଳାଇବାର ବ୍ୟବସ୍ଥା କରନ୍ତି । ଦରକାର ମନେକଲେ ଅବସ୍ଥା ଅନୁସାରେ ବ୍ୟବସ୍ଥାକରି ସେମାନଙ୍କ ଖର୍ଚ୍ଚରେ ସହରକୁ ଯାଇ ଓକିଲ ଯୋଗାଡ଼ କରି ମାଲିମୋକଦ୍ଦମା ଲଗାଇ ଦିଅନ୍ତି ।

ପଦନବାବୁ ଅର୍ଦ୍ଧଶିକ୍ଷିତ ହେଲେ ମଧ୍ୟ ଇଂରେଜୀଭାଷା ପ୍ରୟୋଗରେ ହାକିମ ହୁକୁମା ପୋଲିସ ଦାରୋଗା ପ୍ରଭୃତିଙ୍କ ସଙ୍ଗେ ସମାନ ସ୍ତରରେ ଆଲୋଚନା କରି ନାନା ଉପାୟରେ ସେମାନଙ୍କୁ ବଶ କରିଥାଆନ୍ତି । ପୋଲିସ ଓ ହାକିମଙ୍କ ସାନ୍ନିଧ୍ୟ ଯୋଗୁଁ ସାଧାରଣ ମଲିମୁଣ୍ଡିଆଙ୍କଠାରୁ, ସେଠାରେ ଥିଲାବାଲା ଲୋକ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ପ୍ରାଣରେ ଭୟ କରନ୍ତି । ତାଙ୍କୁ ଦେଖିଲେ ସମସ୍ତଙ୍କ ମନରେ ଶକୁନି ଦର୍ଶନପରି ଭାବ ଜାଗ୍ରତ ହୁଏ । ତେଣୁ ସମସ୍ତେ ତାଙ୍କ ଆଦେଶ ପାଳନକରି ପାନ ଚା' ପ୍ରଭୃତିରେ ଚର୍ଚ୍ଚାକରି ଶୀଘ୍ର ନିଜ ଦୁଆରୁ ବିଦାୟଦେବା ପାଇଁ ଚେଷ୍ଟା କରନ୍ତି ।

ତାଙ୍କ କଥାବାର୍ତ୍ତାରୁ ସେ ଅଞ୍ଚଳର ଉନ୍ନତି ପାଇଁ ଓ ଦୁଃସ୍ଥଲୋକଙ୍କର ମଙ୍ଗଳ କରିବା ପାଇଁ ତାଙ୍କ ପ୍ରାଣ କାନ୍ଦୁଥିଲାପରି ଜଣାଯାଏ । ସେହି କାରଣରୁ ହେଉ ବା ଡରଭୟରୁ ହେଉ, ସମସ୍ତ ସ୍ଥାନୀୟ ନିର୍ବାଚନମାନଙ୍କରେ ଜୟଲାଭ କରି ଗ୍ରାମ୍ୟ ସଙ୍ଘ ଓ ନିର୍ବାଚିତ କମିଟିମାନଙ୍କରେ ସେ ସଦସ୍ୟ ପଦରେ କର୍ମକର୍ତ୍ତାଭାବେ ଆସନ ଅଳଂକୃତ କରିଥାଆନ୍ତି । ସ୍କୁଲ କାର୍ଯ୍ୟକାରୀ କମିଟି ଓ ଅନ୍ୟାନ୍ୟ ସାଧାରଣ ଅନୁଷ୍ଠାନମାନଙ୍କରେ ମଧ୍ୟ ସେ ଆସନ ମାଡ଼ି ବସିଥାଆନ୍ତି । ହାକିମ ଚାକିରି ନ ଥାଇ ମଧ୍ୟ ସେ ଅଞ୍ଚଳରେ ତାଙ୍କ ହାକିମି ବଜାୟ ରଖିଥାଆନ୍ତି ।

ସେ କହନ୍ତି ଜନତା ତାଙ୍କର ଓ ସେ ସର୍ବସାଧାରଣଙ୍କ ଲୋକ । ଏହି ଭିତ୍ତିରେ ତାଙ୍କର ଯେତେବେଳେ ଯାହା ଦରକାର ସେ ଦାବୀକରି ସର୍ବସାଧାରଣଙ୍କଠାରୁ ଆଦାୟ କରନ୍ତିଅନ୍ତି ।

ତାଙ୍କ ଝିଅ ବାହାଘର ଦିନ ତାଙ୍କ ଘରକୁ ନିମନ୍ତ୍ରଣରେ ଆସିଥିବା ଜଣେ ଭଦ୍ରଲୋକଙ୍କୁ ନିଜର ଅଭ୍ୟାସବଶତଃ ଆଙ୍ଗୁଠି ଦେଖାଇ ପାନ ଖଣ୍ଡେ ଦେବାକୁ ଆଦେଶ ଦେଲେ । ଭଦ୍ରଲୋକ ହସି ହସି କହିଲେ, "ଆଜ୍ଞା, ଅନ୍ୟ ଦିନ ସିନା ଆମେ ଦେଉ, ଆଜି ପରା ଆମେ ଆପଣଙ୍କ ଅତିଥି, ଆଜି ଆପଣଙ୍କର ଆମକୁ ଦେବା କଥା ।"

ପଦନ ବାବୁ ଉତ୍ତର ଦେଲେ, "ହଇଓ, ତୁମେ କି ମୋର ଅତିଥି ? ଏସବୁ ତ ତୁମର । ମୁଁ କ'ଣ ଏ ବିବାହ ଉତ୍ସବ ନିଜେ କରୁଛି ନା ନିଜେ କରିପାରନ୍ତି ! ମୋର ତ ସବୁ ବେରଙ୍ଗ ପୋଷ୍ଟ । ବିନା ଟିକଟରେ ମୋ ଚିଠି ଲଫାପା ଯିବା ଆସିବା କରେ । ଏସବୁ ତୁମର । ତୁମେମାନେ ସବୁ ଯୋଗାଇ ଏ ଭୋଜି କରୁଛ—ମୋର ଏଥିରେ କଅଣ ଅଛି ? ଆଣ, ଆଣ ପାନ ବାହାର କର ।"

ସତକୁ ସତ ଅନ୍ୟମାନେ ହିଁ ଭୋଜିର ବ୍ୟବସ୍ଥା କରନ୍ତି । ସେ ପରେ ସରକାରଙ୍କ ଠାରୁ ରାଏସାହେବ ଉପାଧି ପାଇଲାବେଳେ ମଧ୍ୟ ଦୂରରେ ହାକିମ ଚାକିରି କରୁଥିବା ସେ ଅଞ୍ଚଳର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ତାଙ୍କ ଅଭ୍ୟର୍ଥନା ପାଇଁ ହାତରୁ ପଇସା ଦେଇ ଏକ ବଡ଼ ଭୋଜିର ଆୟୋଜନ କରିଥିଲେ ।

ପଦନ ବାବୁ ବହୁ ଲୋକଙ୍କୁ ସେମାନଙ୍କ ଜମିଜମା ଓ ବ୍ୟବସାୟ ପ୍ରଭୃତିରେ ଉପଦେଶ ପରାମର୍ଶ ଦିଅନ୍ତି । ଦରକାର ହେଲେ ହିସାବପତ୍ର ତନଖି କରି ଟିକସ ଓ ଦେଣା ନେଣା ସ୍ଥିର କରନ୍ତି; କିନ୍ତୁ କାହାପାଖେ ଚାକିରି କରନ୍ତି ନାହିଁ କି ବନ୍ଧା ହୋଇ ରହନ୍ତି ନାହିଁ । କିନ୍ତୁ ଅନେକଙ୍କର କ୍ଷମତାପତ୍ର ତାଙ୍କ ପାଖରେ ଥାଏ ।

ସେ ନିଜକୁ ଇଂରେଜୀ ବିଦ୍ୟାରେ ଧୁରନ୍ଧର ଓ ଜଣେ ବିଦ୍ୱାନ୍ ଲୋକ ବୋଲି ପ୍ରଚାର କରନ୍ତି । ଇଂରେଜୀ ହାକିମ ହୁକୁମାଙ୍କ ଭାଷା, ସେ ଭାଷା ଶିଖି ସେମାନଙ୍କ ସଙ୍ଗେ ଇଂରେଜୀରେ କଥାବାର୍ତ୍ତା କରି ନିଜ ମର୍ଯ୍ୟାଦା ବଢ଼ାଇବା ପାଇଁ ସ୍ଥାନୀୟ ଜମିଦାର ପଦନ ବାବୁଙ୍କୁ ନିଜର ଇଂରେଜୀ ଶିକ୍ଷକ ଭାବରେ ନିଯୁକ୍ତ କରିଥିଲେ ।

ପଦନ ବାବୁ କେତେଗୁଡ଼ିଏ ଚଳନ୍ତି ଇଂରେଜୀ ଶବ୍ଦ ତାଙ୍କୁ ଶିଖାଇବା ସଙ୍ଗେ ସଙ୍ଗେ ଖଣ୍ଡିଏ ଇଂରେଜୀ ଓଡ଼ିଆ ଅଭିଧାନ ଆଣି ତାକୁ ଘୋଷି ଆୟତ୍ତ କରିବାକୁ ପରାମର୍ଶ ଦେଲେ । ଜମିଦାର କେତେଗୁଡ଼ିଏ ଇଂରେଜୀ ଶବ୍ଦ ମନେ ରଖି ସେଗୁଡ଼ିକ ମନ ମୁତାବକ ବ୍ୟବହାର କରିବାକୁ ଲାଗିଲେ ।

ବ୍ୟାକରଣର 'ଯମକ' ପରି କେତେଗୁଡ଼ିଏ ଇଂରେଜୀ ଶବ୍ଦ ଏକାପରି ଉଚ୍ଚାରଣ ହୁଏ । ଡାଇରିଆ, ଆଇଡ଼ିଆ ପ୍ରଭୃତି ଶବ୍ଦର ଉଚ୍ଚାରଣ ଏକାପରି ହୋଇଥିବାରୁ ଗୋଟିକୁ ଅନ୍ୟ ସ୍ଥାନରେ ବ୍ୟବହାର କରିବାରେ ଅସୁବିଧା ହୁଏନାହିଁ । ଗୋଟିଏ ବିଷୟରେ ତାଙ୍କର ଧାରଣା ଅନ୍ୟ ଭଦ୍ରବ୍ୟକ୍ତିଙ୍କ ଧାରଣା ସଙ୍ଗେ ସମାନ ବୋଲି ପ୍ରକାଶ କରିବାକୁ ଯାଇ ସେ କହିପକାନ୍ତି, "ଆପଣଙ୍କର ଯେଉଁ ଡାଇରିଆ ମୋର ସେଇ ଡାଇରିଆ ।" ଧାରଣାଟା ଝାଡ଼ାରେ ପରିଣତ ହୋଇଯାଏ । ତାଙ୍କର ସେଦିନ ବିବାହର ବର୍ଷପୂର୍ତ୍ତି ଦିବସ ବୋଲି ଜଣାଇ ଜଣାଇ 'ମୋର ଆଜି ଇଉନିଭର୍ସିଟି ଡେ' ବୋଲି କହନ୍ତି । ଆନିଭରସାରିଟା ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଯାଏ । ଏପରିକି ସ୍ତ୍ରୀଙ୍କର ଅତିସାର ଝାଡ଼ା ପାଇଁ ସେ ଡାକ୍ତରଖାନାକୁ ଯିବାଟା "ମୋ

ସହଧର୍ମିଣୀଙ୍କର ଡ଼ିସ୍‌ପେନସାରୀ ହୋଇଥିଲ, ମୁଁ ଡ୍ରେସେଣ୍ଟିକୁ ଯାଉଥିଲି” ବୋଲି କହିବା ଦ୍ୱାରା କି ଗୋଳମାଳ ହେଲା ସେ ଜାଣିପାରନ୍ତି ନାହିଁ ।

ଏ ସମୟରେ ଶ୍ରୋତାମାନେ ଚମତ୍କୃତ ହୋଇ ହସ ହସ ମୁହଁ କଲେ ସେ ତାଙ୍କ ଇଂରେଜୀ ଜ୍ଞାନରେ ଅନ୍ୟମାନଙ୍କୁ ପ୍ରୀତ କରିପାରୁଛନ୍ତି ବୋଲି ଭବି ଆପ୍ୟାୟିତ ହୁଅନ୍ତି ଓ ମନେ ମନେ ଶିକ୍ଷକଙ୍କୁ ଧନ୍ୟବାଦ ଦିଅନ୍ତି । ସେ ଉତ୍ସାହିତ ହୋଇ ନିଜ ଲୋକଙ୍କୁ ଦେଖାଇବା ଭଳି ବେଳେ ବେଳେ ବସିରହି ବଡ଼ ପାଟିରେ ଅଭିଧାନ ଘୋଷନ୍ତି ।

ଇଂରେଜୀ ଶିକ୍ଷା ବାହାନାରେ ଜମିଦାରଙ୍କର ବେଶି ପ୍ରିୟ ହେବାଦ୍ୱାରା ତାଙ୍କ ଜମିବାଡ଼ି ଓ ବ୍ୟବସାୟ ମାଲିମକଦ୍ଦମା ପ୍ରଭୃତିରେ ପରାମର୍ଶ ଦେବାପାଇଁ ପଦନ ବାବୁଙ୍କୁ ଅନେକ ସୁବିଧା ହୁଏ । ଜମିଦାର ଗୁରୁ ଭାବରେ ତାଙ୍କ କଥା ମାନି ଚଳୁଥିବାରୁ ପଦନ ବାବୁ ପ୍ରାୟ ତାଙ୍କୁ ହାତମୁଠାରେ ରଖିଥାନ୍ତି । ଜମିଦାରଙ୍କ ପାଖଲୋକେ ଓ ସ୍ୱଳ୍ପଦରମାପ୍ରାପ୍ତ ଧର୍ମୀ ଗୁମାସ୍ତାମାନେ ଜମିଦାରଙ୍କଠାରୁ ସୁବିଧା ହାସଲ କରିବା ପାଇଁ ପଦନ ବାବୁଙ୍କୁ ପ୍ରୀତ କରି ରଖିଥାଅନ୍ତି ।

ଜମିଦାର ଧନ ଓ କ୍ଷମତା ମଦରେ ବୁଡ଼ିରହିଥିଲେ । ନାମ କମେଇବା ପାଇଁ ଉଚ୍ଚ ଅଫିସରଙ୍କୁ ସନ୍ତୁଷ୍ଟ କରିବାକୁ ଇଂରେଜୀ ଭାଷା ଶିକ୍ଷା ଓ ମେଳା ମହୋତ୍ସବର ଆୟୋଜନରେ ବ୍ୟସ୍ତ ରହି ନିଜର ସମ୍ପତ୍ତି ରକ୍ଷଣାବେକ୍ଷଣ ପାଇଁ ପଦନ ବାବୁଙ୍କ ଉପରେ ନିର୍ଭରଶୀଳ ହୋଇଉଠିଲେ ।

ସେତେବେଳରେ ଜମିଦାରୀ ଓ ମଠ ଗୁମାସ୍ତାମାନଙ୍କର ମାସିକ ଦରମା ଏକରୁ ଦୁଇ ଟଙ୍କା ଥାଏ । ଜମିଦାର ରାଗିଗଲେ କୋଟମାନା ଦରମା ଠାରୁ ଦରବାଣ୍ଡା ବଳିପଡ଼େ । ଦରମା ପ୍ରାପ୍ତ ମିଳେନାହିଁ । ସେମାନେ ଝିଅ ବାହାଘର ବା ବାପଙ୍କ ଶ୍ରାଦ୍ଧ ପ୍ରଭୃତି ଦର୍ଶାଇ କେବେ କେବେ କିଛି ଟଙ୍କା ପାଆନ୍ତି ।

ଗୁମାସ୍ତାମାନଙ୍କର ଅବଶ୍ୟ ଦରମାକୁ ଖାତିର ନ ଥାଏ । ଚତୁରାଳି ଖାଇବା ପାଇଁ ସେମାନଙ୍କୁ ଅନୁମତି ମିଳିଥାଏ । ଖଜଣା ଆଦାୟ କମିସନ ଓ ଅନ୍ୟାନ୍ୟ ପାଉଣା ପ୍ରଜାମାନଙ୍କ ଠାରୁ ସେମାନେ ନିଜ ପାଇଁ ମାହାଲ ବା ଜମିଦାରୀରୁ ପ୍ରଚୁର ଅର୍ଥ ସଂଗ୍ରହ କରନ୍ତି । ଜମିଦାରଙ୍କ ସମ୍ପତ୍ତିର ରକ୍ଷଣାବେକ୍ଷଣ ଓ ଜମିଦାରଙ୍କ ପାଇଁ ଆଦାୟ ଯାହାହେଉ ପଛକେ ସେମାନଙ୍କ ପାଉଣା ଆଦାୟ ଦୃଢ଼ ଥିବାରୁ ସେମାନଙ୍କ ସମ୍ପତ୍ତି ସବୁବେଳେ ବଢ଼ିବାରେ ଲାଗିଥାଏ । ତଥାପି ସବୁ ଶୃଙ୍ଖଳାରେ ଚାଲିଛି ବୋଲି ପଦନ ବାବୁଙ୍କ ପରି ଲୋକେ ଜମିଦାରଙ୍କୁ ବୁଝାଇ ଆଶ୍ୱସ୍ତ କରି ରଖିଥାଆନ୍ତି ।

ଏପରି ବ୍ୟବସ୍ଥାକୁ ଲକ୍ଷ୍ୟ କରି କେହି କେହି ଗ୍ରାମ୍ୟ କବିଙ୍କ ଭଣିତ କବିତା ବୋଲିବାର ଶୁଣାଯାଏ—

ଆମ ଜମିଦାର୍ କାଣେ ଶୃଙ୍ଖଳା,
ବାହାର୍ ଗୁମାସ୍ତା ମାହାଲ୍ ଚରନ୍ତି
ଚୋରେ ବୁଲୁଥାନ୍ତି ଭଣ୍ଡା ଖଣ୍ଡା ।

ଜମିଦାର ଓ ହାକିମହୁକୁମା ସମସ୍ତଙ୍କୁ ହାତରେ ରଖି ପଦନବାବୁ ଅଖଣ୍ଡ ପ୍ରତିପତ୍ତି ଲାଭ କରୁଥିଲେ ମଧ୍ୟ ତାଙ୍କ କ୍ଷମତାରେ ଆଞ୍ଚ ଲାଗିଯିବାର ସନ୍ଦେହ ସବୁବେଳେ ତାଙ୍କ ମନରେ ବସା କରିଥାଏ ଓ ସେଥିପାଇଁ ସେ ସତର୍କ ଥାଆନ୍ତି । ଗ୍ରାମରେ ଅନ୍ୟ କେହି ଭଲ କାମ କରି ସୁନାମ ବା ଲୋକପ୍ରିୟ ହେବା ଜାଣିଲେ ସେ ଚମକି ପଡ଼ନ୍ତି ଓ ତା'ର ବଦନାମ ପ୍ରଚାର କରାଇ ତାକୁ ତଳିତଳା କରିବାକୁ ଉଦ୍ୟମ କରନ୍ତି ।

ମଶାଣି ଉପରେ ଗାନ୍ଧୀ ଆଶ୍ରମ ବସିବାଦିନୁ ନାନା ଆଶଙ୍କା ଆସି ତାଙ୍କୁ ମାଡ଼ିବସୁଥାଏ । ସେ ଆଶ୍ରମର ପ୍ରଭାବ ଯେତିକି ବଢ଼ୁଥାଏ ତାଙ୍କ ଛାତି ସେତିକି ଧୁକୁ ଧୁକୁ ହେଉଥାଏ । ଆଶ୍ରମବାସୀ ନିଃସ୍ୱାର୍ଥ ଭାବରେ ଲୋକସେବା କରିବାର ଉପାୟ ଗ୍ରହଣ କରିଥିବାରୁ ତାଙ୍କ ସ୍ୱାର୍ଥରେ ବାଧା ପଡ଼ିବାର ବହୁତ ସମ୍ଭାବନା ଥାଏ ।

ସେ ନିରୀହ ଲୋକଙ୍କୁ ସାମାନ୍ୟ କଥାରେ ଯେପରି ଅସୁବିଧାରେ ପକାଇ ସର୍ବସ୍ୱାନ୍ତ କରନ୍ତି ତା'ର ସୁରାକ ପାଇଲେ ଆଶ୍ରମବାସୀ ହୁଏତ ତାଙ୍କ ବିରୁଦ୍ଧରେ ବିଦ୍ରୋହ ସୃଷ୍ଟି କରିପାରନ୍ତି ବୋଲି ପଦନ ବାବୁଙ୍କର ପ୍ରଥମେ ଧାରଣା ଜନ୍ମିଥିଲା; କିନ୍ତୁ କେତୋଟି ଘଟଣାରେ ସେପରି କିଛି ନହେବାରୁ ସେ ସତର୍କତାର ସହିତ ତାଙ୍କ କାର୍ଯ୍ୟ କରିଚାଲିଲେ ।

ଦୁଇଟି ଭାଇ ଗୋଟିଏ ତେଜରାତି ଦୋକାନ କରି ଚଳୁଥିଲେ । ଦୁଇଭାଇ ଦୁଇଟି ବଡ଼ ସାଙ୍ଗପରି ବ୍ୟବହାର କରନ୍ତି । ତାଙ୍କ ଭିତରେ ମନୋମାଳିନ୍ୟ ହେବା ଅସମ୍ଭବ । ତାଙ୍କ ଘରେ ଗୋଟିଏ ମାତ୍ର ପୁଅ । ସେ ଦୁଇଭାଇଙ୍କର ନୟନ ପିତୁଳା । ପଦନ ବାବୁଙ୍କୁ ସେମାନେ ଖୁସି ରଖିବାକୁ ଚେଷ୍ଟା କରି ମଧ୍ୟ ବିଫଳ ହୋଇ ତାଙ୍କ କୋପଦୃଷ୍ଟିରେ ପଡ଼ିଲେ । ଥରେ ପଦନ ବାବୁଙ୍କ ବରାଦ ମୁତାବକ କେତେକ ଜିନିଷ ଯୋଗାଇ ନପାରି ବାଧ୍ୟହୋଇ ନାସ୍ତି ବାଣୀ ଶୁଣାଇ ତାଙ୍କୁ ଫେରାଇଦେଲେ । ସେ ମୁରୁକି ମୁରୁକି ହସ ହସି 'ହଉ ହଉ' କହି ସେଠାରୁ ଉଠି ଚାଲିଗଲେ । ଦୁଇ ଚାରିଦିନ ପରେ ପ୍ରଚାର ହେଲା—ସେ ଦୁଇଭାଇ ବହୁତ ଲାଭକରି ହିସାବରେ ସେ ସବୁ ଠିକ୍ କରି ଲେଖୁ ନଥିବାର ସମ୍ବାଦ ପାଇ ଶୀଘ୍ର ସରକାରୀ ଯାଞ୍ଚ ଅଫିସରମାନେ ଆସୁଛନ୍ତି । ତାଙ୍କ ହିସାବ ଦେଖି ତାଙ୍କୁ ନିଶ୍ଚୟ ବହୁତ ଜୋରିମାନା କରିବେ । ଟଙ୍କା ଦେଇ ନପାରିଲେ ଦୁଇ ଭାଇଙ୍କୁ ଜେଲ୍‌ଯାଇ ଘଣା ପେଲିବାକୁ ପଡ଼ିବ ।

ସେ ପ୍ରଚାର କାନରେ ବାଜିବାକ୍ଷଣି ଭାଇଦୁଇଟି ମୁଣ୍ଡରେ ହାତଦେଇ ବସିଲେ । ଡରରେ ତାଙ୍କର ପିଳେହି ପାଣି ହେଲା । ସେମାନେ କି ଲାଭ କରିଛନ୍ତି, କଅଣ ଲେଖାରେ

ଚେଷ୍ଟା କରିଛନ୍ତି, କିନ୍ତୁ ଓଟାରେଇ ପାରିଲେ ନାହିଁ । ପ୍ରତିଦିନ ବାକିରୁ ଲାଭ କଥା ତ ଛାଡ଼ ମୂଳଧନରୁ ବି କେତେକାଂଶ ଏବେ ଗ୍ରାହକଙ୍କ ଖାତାରେ ପଡ଼ିଛି, ସେମାନେ ତାଙ୍କ ଦେଣା ଦେବା କଥା ସ୍ବପ୍ନରେ ଧରୁନାହାନ୍ତି । ଦବଦବାଣିଦେଲେ ତତକା ପଇସାରେ ବାକୀ ନେଇ ଯାହା କିଛି ଲାଭ ହୁଏ ସେଥିରେ ନିଜର ଗୁଜରାଣ ମେଣ୍ଟାଇବା କଥା ।

ଦୁଇ ଭାଇ ବସି ବିଚାର କଲେ—ନା, ଆଉ ଏ ବ୍ୟବସାୟ କରିହେବ ନାହିଁ । ଅଣ୍ଟାଗୁଣ୍ଡା ଦେଇ ସରକାରୀ ଲୋକଙ୍କୁ ଖୁସି କରି ଫେରାଇ ଦେବାକୁ ମଧ୍ୟ ତାଙ୍କର ଶକ୍ତି ନାହିଁ, ତେଣୁ ଦୋକାନଟି ଭାଙ୍ଗି ଦେବାକୁ ହେବ । ଦାଣ୍ଡଘରେ ତ ଦୋକାନ—ଜିନିଷପତ୍ର ମିଶି ନଅ ଛଅ କରି ବିକି କରାଯାଇ ଦାଣ୍ଡଘରଟିକୁ ଓଳାଇ ସଫା କରାଯାଇଗଲା । ଏହିପରି ମନ୍ତ୍ର ପରି ଚୁହୁଁ ଚୁହୁଁ ବହୁଦିନର ଦୋକାନଟି କୁଆଡ଼େ ଉଭେଇଗଲା ।

ସଦନ ବାବୁଙ୍କ କାହାଣୀରୁ ଏପରି ବହୁ ଛୋଟ ଛୋଟ ବ୍ୟବସାୟ କେନ୍ଦ୍ର ଓ ଲୋକଙ୍କ ସାମ୍ୟଚ୍ଛେଦ ଶୂନ୍ୟ ହୋଇଯାଇଛି; କିନ୍ତୁ ସେ ସବୁ ପାଇଁ ତାଙ୍କ ସାମନାରେ କେହି ତାଙ୍କୁ ଦୋଷ ଦେବାପାଇଁ ସାହସ ବାନ୍ଧି ପାରୁନାହାଁନ୍ତି । କେହି ମନରେ ସାହସ ବାନ୍ଧି ତାଙ୍କୁ ଦୋଷ ଦେବାକୁ ଉଦ୍ୟତ ହେଲେ ସେ ସଙ୍ଗେ ସଙ୍ଗେ ଦେବଦେବୀଙ୍କ ପ୍ରସାଦ, ପାଦୁକ ବା ନିଜ ପୁଅ ମୁଣ୍ଡ ଛୁଇଁ ନିର୍ଦ୍ଦୋଷ ପ୍ରମାଣ କରି ନିଜକୁ ଦୋଷମୁକ୍ତ କରାଇନିଅନ୍ତି । ଲୋକେ ତାଙ୍କ ପଛରେ ଟପ୍‌ଟାପ୍ ହୁଅନ୍ତି—ତାଙ୍କର କେଉଁଠି ଘରରୁ ଅଧିକ ପୁତ୍ରସନ୍ତାନ ଥିଲେ । ଏପରି ମୁଣ୍ଡଛୁଇଁ ହଲପ କରିବା ଅଭ୍ୟାସ ଯୋଗୁଁ ସେମାନେ ଜଣ ଜଣ କରି ସ୍ୱର୍ଗାରୋହଣ କରିଛନ୍ତି । ଶେଷରେ ତାଙ୍କର ପତ୍ନୀ ଗୋଟିଏ ମାତ୍ର ପୁତ୍ର ଛାଡ଼ି ଅକାଳରେ ଇହଲୀଳା ସମ୍ବରଣ କରିଥିଲେ । ଏପରି ଏକ ଘଟଣାରେ ସେ ପୁଅଟିକୁ ଭିଡ଼ିଆଣି ତା'ର ମୁଣ୍ଡ ଛୁଇଁଲାବେଳକୁ ତାଙ୍କର ଜଣେ ଶୁଭାକାଂକ୍ଷୀ ଓ ଗୁରୁଜନଶ୍ରେଣୀୟ ବୃଦ୍ଧ ସେ ପୁଅଟିକୁ ତାଙ୍କଠାରୁ ଛଡ଼ାଇନେଇ, "ଏଇ ଗୋଟିକ ଥାଉ, କୁଳ ରହୁ, ଆଉ ତ ପୁଅ ହେବାର ସମ୍ଭାବନା ନାହିଁ, ତେଣୁ ଏହା ମୁଣ୍ଡରେ ହାତ ଦିଅନାହିଁ ।" କହି ସେ ପୁଅଟିକୁ ଧରି ସେଠାରୁ ଉଠି ଚାଲିଯାଇଥିଲେ । ତଥାପି ସେ କଚେରୀରେ ହାକିମଙ୍କ ସତ୍ୟପାଠ କରାଇବା ସବୁବେଳେ ସତ୍ୟ କହୁଛନ୍ତି ବୋଲି କହନ୍ତି । ପରୋପକାର କରିବା ଛଡ଼ା, ଅନ୍ୟ କିଛି କରିବା ତାଙ୍କ ଜାତକରେ ନାହିଁ ବୋଲି ଦାବି ସାବ୍ୟସ୍ତ କରନ୍ତି ।

ଅନ୍ୟମାନଙ୍କ ପ୍ରଚେଷ୍ଟାରେ ତାଙ୍କ ପୁଅ ଦୂର ସହରରେ ବୋର୍ଡ଼ିଂରେ ରହି ପାଠ ପଢ଼ିଲେ । ସେ ବଡ଼ ମେଧାବୀ ଛାତ୍ର, ବଡ଼ ସାଧାସିଧା ଓ ମେଳାପୀ ଥିଲେ, ବ୍ୟବହାର ଓ ଚାଲିଚଳଣି ଅତି ଉତ୍ତମ । ପିଲାଦିନୁ ପିତାଙ୍କଠାରୁ ଦୂରରେ ରହି ଶିକ୍ଷାପାଇଥିବାରୁ ପିତାଙ୍କ ବଦ୍‌ଗୁଣ ସବୁ ସଂଗ୍ରହ କରିପାରିନାହାଁନ୍ତି । ସେ ତାଙ୍କର ଶିକ୍ଷା ସମାପ୍ତ କରି ପ୍ରତିଯୋଗିତା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବଡ଼ ସରକାରୀ ଚାକିରି ପାଇଲେ । ସେ ଅନ୍ୟ ଗୋଟିଏ ପ୍ରଦେଶରେ ହାକିମ ହେଲେ ।

ଗାଁଲୋକମାନେ ତାଙ୍କ ଦୁଃଖପାଆନ୍ତି ଓ ସେ ଗାଁକୁ ଆସିଲେ ତାଙ୍କ ନମ୍ରତାପୂର୍ଣ୍ଣ ବ୍ୟବହାର ଯୋଗୁଁ ସମସ୍ତେ ତାଙ୍କୁ ଆଦର କରନ୍ତି । ସେ ତାଙ୍କ ପିତାଙ୍କୁ ଓ ଅନ୍ୟ ଗୁରୁଜନମାନଙ୍କୁ ଭକ୍ତି କରନ୍ତି ।

ପଦନ ବାବୁଙ୍କ ଘରେ ଆଉ କେହି ନାହିଁ । ତାଙ୍କ ବ୍ୟବହାର ଯୋଗୁଁ ଗ୍ରାମବାସୀଙ୍କ ମଧ୍ୟ ମୁଣ୍ଡଧରି ବେଶିଦିନ ରହିପାରନ୍ତି ନାହିଁ । ଖାଇବା ପିଇବା ବଡ଼ ଅସୁବିଧା । ତେଣୁ ତାଙ୍କୁ ସାଙ୍ଗରେ ନେଇଯିବାକୁ ପୁଅ ବହୁତ ଲଗାନ୍ତି । ପଦନ ବାବୁ ସେ ପ୍ରସ୍ତାବରେ ରାଜିନହୋଇ ଗାଆଁ ଛାଡ଼ି ଯିବାକୁ ଅମଙ୍ଗ ହୁଅନ୍ତି । ଗାଁରେ କେହି କେହି ତାହାଙ୍କୁ ସହାନୁଭୂତି ଦେଖାଇ ପୁଅସଙ୍ଗେ ଯିବାପାଇଁ ବୁଝାଇ କହନ୍ତି—"ଆପଣ ଏତେ ଅସୁବିଧାରେ ଏକୁଟିଆ ଏ ଘରେ କାହିଁକି ପଡ଼ିଛନ୍ତି ? ପୁଅ ବୋହୂ ତ ଆପଣଙ୍କୁ ଏତେ ସମ୍ମାନ କରନ୍ତି, ଆଦର କରି ଡାକୁଛନ୍ତି, ଆପଣ ତାଙ୍କ ସଙ୍ଗେ ଯାଇ ନାତି ନାତୁଣୀ ସଙ୍ଗେ ଖେଳି ଭଲଭାବରେ ସମୟ କଟାଇ ପାରନ୍ତେ, ଆପଣ ସେଠାକୁ ନ ଯାଇ କାହିଁକି ଏକୁଟିଆ ପଡ଼ିରହିବାକୁ ଇଚ୍ଛା କରୁଛନ୍ତି ?"

ପଦନ ବାବୁ ଉତ୍ତର ଦିଅନ୍ତି, "ହଇଓ, ପୁଅ ସଙ୍ଗେ ଯାଇ ଜନ୍ମପାର, ଦେଶପାରି ହୋଇ ସେ ଅପନ୍ତରା ରାଜ୍ୟରେ କାହିଁକି ପଙ୍ଗୁ ହୋଇ ବସିବ ? ତୁମ ନାତି ନାତୁଣୀ କ'ଣ ମୋର ନୁହନ୍ତି ? ମୋ ନାତି ନାତୁଣୀ ପାଠ ପଢିବେ ନା ମୋ ସାଙ୍ଗେ ବସି ଖେଳିବେ ? ସେଠାରେ ପଦନବାବୁଙ୍କୁ ଚହ୍ନିବ କିଏ ? ମୋର ପରିଚୟ ହେବ ଅମୁକବାବୁଙ୍କ ବାପ । କିଏ କିଏ ହୁଏତ କହିବେ ମେଜେଷ୍ଟ୍ରର ସାହେବଙ୍କ ବାପ ଗୋଟେ କୋଡ଼ିଆ ପରି ହାକିମ କୋଠିର ପିଣ୍ଡାରେ ବସିରହିଛି । ସେଠି ମୋର କାମ ବା କଅଣ ? ଏଠିତ ମୁଁ ତୁମର ପଦନ ବାବୁ—ତୁମ ଦୁଃଖ ସୁଖ ମତେ ଲାଗିଛି । ମୋ ନଜର ବା କଅଣ ଦୁଃଖ ସୁଖ ଅଛି ? ମୁଁ ଏ ଜନମମାଟି ଛାଡ଼ି କାହିଁକି 'ଦୂରକୁ ଯିବ, ଶେଷରେ ତୁମେ ସମସ୍ତେ ମତେ ଭୁଲିଯିବ ।"

ତାଙ୍କ ଉତ୍ତର ଶୁଣି ତାଙ୍କ ପଛରେ କେହି କେହି କହନ୍ତି, "ତୁମକୁ ଭୁଲିବାକୁ ଏଠା ଲୋକଙ୍କୁ ତୁମେ କାହିଁକି ସୁବିଧା ଦେବ ? ଏ ମାଟି ଛାଡ଼ିକରି କାହିଁକି ଯିବ ? ଏହାକୁ ତ ଧରି ତୁମ ଖଳ ବୁଦ୍ଧିରେ ଚଳୁଥିବ । ଆମ ପଛରେ କଣ୍ଟାପରି ଲାଗି ସବୁବେଳେ ଆମକୁ ଖେଞ୍ଚୁଥିବ । ଆମେ ନଳୀ ଗୋଡ଼ ଘାଆ ପରି ସବୁବେଳେ ତୁମକୁ ଝିଙ୍କୁଥିବୁ । ତୁମେ ଚାଲିଗଲେ ଆଉ ସ୍ତ୍ରୀ ଗାଈ ତା' ପଦାଡ଼େ, ତା' ଗାଈ ସ୍ତ୍ରୀ ପଦାଡ଼େ କିଏ କରିବ ? ଏଠି ନଇଁକୁଣ୍ଠ କରି ଓଦାଖିଆ ଷଣ୍ଢପରି ବୁଲୁଥାଅ । ହଉ, କଅଣ କରୁଛ କର । ସବୁଦିନ କଅଣ ସମାନ ଯାଏ । ଆଶ୍ରମ ବସିଲାଣି, ଲୋକଙ୍କ ଆଖି ଫିଟିଲାଣି, ତୁମ ଔଷଧ ଆଉ କେତେଦିନ କାମ କରୁଛି କରୁ ।

# ଦୁଇ

ଓଡ଼ିଶା ଭୂଇଁରେ କେତେ ଯୁଦ୍ଧ ଲଗିଯାଇଛି । ଚଣ୍ଡାଶୋକ ପ୍ରଚଣ୍ଡ ରଣକ୍ଷେତ୍ରରେ ବିଜୟୀ ହୋଇ ମଧ୍ୟ ନିଜର ହିଂସ୍ର ପ୍ରକୃତିର ପରାଜୟ ମାନି ଧର୍ମାଶୋକରେ ପରିଣତ ହୋଇଛନ୍ତି । ଖାରବେଳଙ୍କଠାରୁ ଗଜପତିମାନଙ୍କ ସମୟ ଭିତରେ ଓଡ଼ିଆ ସାମ୍ରାଜ୍ୟ ବହୁଦୂର ବିସ୍ତାରଲାଭ କରିଛି । ପୁଣି ବିଂଶ ଶତାବ୍ଦୀ ଆରମ୍ଭବେଳକୁ ଖଣ୍ଡବିଖଣ୍ଡିତ ହୋଇ ପ୍ରାୟ ଲୀନ ହେବା ଅବସ୍ଥାକୁ ଆସିଯାଇଛି । ସାମ୍ରାଜ୍ୟ ସଙ୍ଗେ ସଙ୍ଗେ ଓଡ଼ିଆ ଭାଷା ଓ ସଂସ୍କୃତି ମଧ୍ୟ ଇତସ୍ତତଃ ହୋଇପଡ଼ିଛି । ଏଭଳି ପତନୋନ୍ମୁଖ ଅବସ୍ଥାରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ବିଦ୍ୟାଦାନ ମାଧ୍ୟମରେ ଧରି ରଖିବାପାଇଁ ଆପ୍ରାଣ ଚେଷ୍ଟା କରିଛନ୍ତି ମାଟିବଂଶର ଅବଧାନମାନେ । ଦୁଧ ଖଡ଼ି, ତାଳପତ୍ର ଓ କରଣୀଧରି ଓଡ଼ିଆ ଭାଷା ପାଇଁ ଯୁଦ୍ଧକରି ବହୁବାଧାସତ୍ତ୍ୱେ ଓଡ଼ିଆ ଭାଷାକୁ ବଂଚାଇ ରଖିଛନ୍ତି ।

ମାଟି ପିଣ୍ଡାରେ ଦୁଧ ଖଡ଼ିରେ ବ୍ରହ୍ମା ବିଷ୍ଣୁ ମହେଶ୍ୱର ବୋଲି ତିନିଗୋଟି ମୂର୍ତ୍ତି ଲାଜି ସେଥିରେ ଶିଶୁମାନଙ୍କର ହାତ ଘୋରି ଘୋରି ସୁନ୍ଦର ଗୋଲ ଗୋଲ ଓଡ଼ିଆ ଅକ୍ଷର ଲେଖାଇବା ପାଇଁ ସେମାନେ ହାତ ଠିକ୍ କରାଇନେଉଥିଲେ । ତା'ପରେ ଆସ୍ତେ ଆସ୍ତେ ପିଲାଏ ଅଙ୍କ ସାହିତ୍ୟ ପ୍ରଭୃତି ଶିଖନ୍ତି । ମିଶାଣ, ଫେଡ଼ାଣ, ଓଡ଼ାଙ୍କ, ଫେଡ଼ାଙ୍କ ପରିକିଆ, ସାହି ପରିକିଆ, କଡ଼ାଗଣ୍ଡା, ଶୋଧିଠାରୁ ଲୀଳାବତୀ ସୂତ୍ର ପର୍ଯ୍ୟନ୍ତ ସମସ୍ତ ଗଣିତ ବିଦ୍ୟା ଚାଟଶାଳୀରେ ଶିକ୍ଷା ଦିଆଯାଏ । ଆଜିକାଲି ଯେଉଁ ଅଙ୍କସବୁ ପାଟୀଗଣିତ, ତ୍ରିକୋଣମିତି, ବୀଜଗଣିତ, ପରିମିତି, ଜ୍ୟାମିତି ପ୍ରଭୃତିରେ ଶିକ୍ଷା ଦିଆଯାଉଛି ସେ ସବୁ ଚୂର୍ଣ୍ଣେ ଚୂର୍ଣ୍ଣେ ମାନସାଙ୍କରେ ବା ମନଅଙ୍କରେ ରୂପ ନିଏ । ଲୀଳାବତୀ ସୂତ୍ର, ଯଥା—

ପଣକୁ ପଣ ପାଞ୍ଚକଡ଼ା ମାଗଣ ପଣ ଗଣ୍ଡା ଅଷ୍ଟଦାଢ଼,<br>
ଗଣ୍ଡା କଡ଼ା ଅଷ୍ଟ ବଦାଢ଼ ହୁଅଇ ପଣକଡ଼ା ବେନି ଦାଢ଼ ।<br>
କାହ୍ନାଣ ସହିତ ଯାହାକୁ ଗୁଣିବ ମୂଲ ତାର ହୁଏ ସେହି,<br>
ଚଟମାନଙ୍କର ପ୍ରୟୋଜନ ଅର୍ଥେ ଲୀଳାବତୀ ସୂତ୍ର କହି ।<br>
ଥିଲା ଯେ ଦେଉଳ ଏକ ବିଚିତ୍ର ଗଠନ,<br>
କ୍ରୋଧଭରେ ଠେଲି ଦେଲା ପବନ ନନ୍ଦନ ।<br>
ଅଧେକ ଜଳରେ ତାର ତୃତୀୟାଂଶ ସ୍ଥଳେ,<br>
ଦଶମ ଭାଗକୁ ଭାଗେ ଶିଉଳିର ଜଳେ ।<br>
ବାଉନ ହାତ ବିଦ୍ୟମାନ<br>
କହ ହେ ସୁବୋଧ ଚଟ ଦେଉଳ ପ୍ରମାଣ ।

ସେକାଳର ଗୋଟିଏ ଚଟ୍ଟଶାଳୀ ନାନା ବିଷୟରେ ଶିକ୍ଷାଦିଆଯାଉଥିବା ବହୁଶିକ୍ଷକବିଶିଷ୍ଟ ସ୍କୁଲ ନଥିଲା । ଜଣେ ଅବଧାନ ବା ଶିକ୍ଷକ ଏକାଧାରରେ ଗଣିତଜ୍ଞ, ସାହିତ୍ୟିକ, ଐତିହାସିକ ଓ ଅର୍ଥଶାସ୍ତ୍ରୀ ପ୍ରଭୃତି ଭାବରେ ନିଜକୁ ଶିକ୍ଷିତ କରି ଗ୍ରାମ ବା ଛାତ୍ରମାନଙ୍କୁ ଶିକ୍ଷାଦିଅନ୍ତି ।

ଚଟ୍ଟଶାଳୀ ବିଦ୍ୟାରେ ପାଠସଙ୍ଗେ ସୁନ୍ଦର ବିନୟ, ଶୃଙ୍ଖଳା ଓ ସମୟାନୁବର୍ତ୍ତିତା ଶିକ୍ଷା ପ୍ରତି ମଧ୍ୟ କଠୋର ଦୃଷ୍ଟି ଦିଆଯାଏ । ଛାତ୍ରମାନଙ୍କୁ ବେଳେବେଳେ କଠୋର ବ୍ୟବହାର କରାଯାଉଥିବାରୁ ଓ ପାଠରେ ହେଳା ପାଇଁ ଦଣ୍ଡ ଦିଆଯାଉଥିବାରୁ କୌଣସି କୌଣସି ଅବଧାନଙ୍କୁ ନିଷ୍ଠୁର ପ୍ରକୃତିର ଲୋକ ବୋଲି କୁହାଯାଏ ।

ଚଟ୍ଟଶାଳର ସମୟବ୍ରଜନ ଶିକ୍ଷା ଆଧୁନିକ ଶିକ୍ଷା ପଦ୍ଧତିରେ ସମ୍ଭବ ନୁହେଁ । ଅବଧାନେ ଆସିବାପୂର୍ବରୁ ଛାତ୍ରମାନେ ନିଜର ଉପସ୍ଥିତି ସମୟ ଅନୁସାରେ ଧାଡ଼ି ବାନ୍ଧି ନିଜ ସ୍ଥାନରେ ଠିଆହୋଇଥାଆନ୍ତି । ଅବଧାନେ ଆସିଲାକ୍ଷଣି ଦୁଇ ହାତ ଅଞ୍ଜୁଳା କରି ଦେଖାଇଦିଅନ୍ତି । ଯିଏ ପ୍ରଥମରୁ ଆସିଥାଏ ଅବଧାନେ ତା' ହାତକୁ ଶୂନ ବୋଲି କହି ତାଙ୍କ ବେତରେ ଅଳ୍ପ ଲେଖିଦିଅନ୍ତି । ତା' ପଛ ଦିନ ଏକବୋଲି ତା ହାତକୁ ବାଡ଼ିଏ ଦିଅନ୍ତି । ତା' ପଛଦିନ ଦୁଇ ବାଡ଼ି, ଏପରି ଶେଷ ଦିନ ବହୁତ ବାଡ଼ି ଖାଏ । ତେଣୁ କିଏ ଆଗ ଅସି ପହଞ୍ଚିବ ସେଥିପାଇଁ ଛାତ୍ରମାନଙ୍କ ଭିତରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଲାଗିରହିଥାଏ । ବିନାକାରଣରେ ଦିନଟିଏ ଯଦି ଅନୁପସ୍ଥିତହେଲେ ତାଙ୍କୁ କାନ ନାକଧରି କାଣ୍ଡକୁ ଆଉଜି ଚଉକ ଦଣ୍ଡ ଭୋଗ କରିବାକୁ ହୁଏ ।

ଅବଧାନଙ୍କର ସ୍ଥାନଘର ବା ମାସିକ ବେତନ କିଛି ସ୍ଥିର ନଥାଏ । ଗାଁର ଆଖଡ଼ାଘର, ଦେଉଳ ତୁଳସୀ ବା କାହା ପିଣ୍ଡିପିଣ୍ଡା ସ୍କୁଲଘରର କାମ କରେ । ଛାତ୍ରମାନେ ପାଳକରି ଦିନକୁ ଗୋଟିଏ ବକ୍ତ ଖାଇବାକୁ ଦିଅନ୍ତି । ପାଳିଦିନ ଖାଇବା ପୂର୍ବରୁ ଦେହରେ ଲଗାଇ ଗାଧୋଇଯିବାପାଇଁ କିଛି ତେଲ ମଧ୍ୟ ମିଳେ । ଭୋଜନ ପରେ ଛାତ୍ର ଘରୁ ମେଞ୍ଚାଏ ଧୂଆଁପତ୍ର ଓ ଟିକିଏ ଚୂନ ହାତରେ ମକଚି ମକଚି ପାଟିରେ ପକାଇ ଅବଧାନେ ବିଦାୟ ନିଅନ୍ତି ।

ଗଣେଶପୂଜା, ସରସ୍ୱତୀପୂଜା ଦିନମାନଙ୍କରେ ଗୋଟିଏ ଥାଳରେ ନଡ଼ିଆଟିଏ ରଖି ଛାତ୍ରମାନେ 'ବନ୍ଦଇ ହରି ଦେବ ମୁରାରି ଲକ୍ଷ୍ମୀଦେବୀଙ୍କର କାନ୍ତ' ବୋଲି ଗୀତ ଗାଇ ଗାଇ ଗ୍ରାମ ପରିକ୍ରମା କରନ୍ତି । ଗ୍ରାମବାସୀ ସେ ଥାଳିରେ ପଇସା ପକାନ୍ତି । ସେ ପଇସା ଅବଧାନଙ୍କୁ ଦିଆଯାଏ । ସେଇ ଭେଟିରେ ଅବଧାନଙ୍କର ବାର୍ଷିକ ଲୁଗାପଟା ଚଳେ । ପାଠପଢା ସମୟ ବାହାରେ ଅବଧାନେ ଗ୍ରାମକୋଠ ଓ ମନ୍ଦିରପାଇଁ ଯେଉଁ ସାମୟିକ କାର୍ଯ୍ୟ କରନ୍ତି, ସେ ବାବଦରେ ଯାହା ପାଉଣା ଦିଆଯାଇଥାଏ ସେଥିରେ ଚଳିଯିବ ଚଳନ୍ତି । ଅବଧାନଙ୍କର ପାଳମିଳୁଥିବା ସଞ୍ଜା ବା ଆହାର ପ୍ରାୟ କଂଟକୀ ଏକସେର ଚାଉଳ । ତା' ସଙ୍ଗରେ ଝଣ୍ଟେ ଦି'ଖଣ୍ଡ ପରିବା ବା ଶୁଖୁଆ ଥିଲେ ତାଙ୍କର ଏକ ବକ୍ତରେ ଦିନଟି ପାଇଁ କ୍ଷୁଧା ନିବାରଣ

ହୋଇଯାଏ । ଯଥେଷ୍ଟ ଭାତ ସଙ୍ଗେ ଟିକିଏ ଶୁଖୁଆ, ମେଣ୍ଟାଏ ଲୁଣ ଓ ଗୋଟେଦୁଇଟା ଲଙ୍କାମରିଚ ଖାଇ ସେ ତୃପ୍ତି ଅନୁଭବ କରିପାରନ୍ତି ।

ନିରାଡ଼ମ୍ବର ଜୀବନ । ଏକମାତ୍ର ଧ୍ୟାନ ପିଲାଙ୍କୁ ପାଠ ପଢ଼ାଇ ମଣିଷ କରିବା । ସେଥିପାଇଁ ନିଜ ଗାଁଗଣ୍ଡା ଛାଡ଼ି ସେମାନେ ଦୂରଦୂରାନ୍ତରରେ ଗୋଟିଏ ଗୋଟିଏ ଚାହାଳି କରି ଜୀବନ କଟାଇଦିଅନ୍ତି ।

ଇଂରେଜ ଅମଳରେ ଅବଧାନ ପାଠ ପ୍ରତି ଲୋକଙ୍କ ଆସ୍ଥା କମିଆସିଲା । ସରକାରୀ ସ୍କୁଲରେ ଶିକ୍ଷା ପାଇଲେ ଉପର ଉପରକୁ ପାଠ୍ୟକ୍ରମର ବ୍ୟବସ୍ଥା ଥିବାରୁ ସେଥିରେ ଚାକିରିବାକିରିର ସୁବିଧା ରହିଲା; କିନ୍ତୁ ଅବଧାନ ପାଠ ପଢ଼ିବାରେ ସେ ସମ୍ଭାବନା ନଥିଲା ।

ସରକାରଙ୍କର ଚାହାଳି ଶିକ୍ଷା ପ୍ରତି ବୈମାତୃକ ଭାବ ଯୋଗୁ ସେ ପାଠ ପ୍ରତି ଲୋକଙ୍କର ଅଗ୍ରହ କମିଗଲା । ଅବଧାନମାନେ ବେକାର ହୋଇ ବୁଲିଲେ । କେଉଁଠି କେଉଁଠି ପୁରୁଣାକାଳିଆ ଅଭିଭାବକମାନଙ୍କ ଅନୁଗ୍ରହରୁ ସରକାରୀ ସ୍କୁଲରୁ ପ୍ରତ୍ୟାହୃତ ବାଳୁଙ୍ଗା ବା ମାନ୍ଦାପିଲାଙ୍କୁ ଧରି ଚାହାଳିଟିଏ କରିବାର ସୁଯୋଗ ପାଇଲେ । ଅବଧାନଙ୍କର କାଳକୁ କପର ତଳିବେ ଆଗରୁ ସେଥିପାଇଁ ହେଉନଥିଲା, ଯଥେଷ୍ଟର ମଧ୍ୟ ଅଭ୍ୟାସ ନ ଥିଲା । ତେଣୁ ସେମାନଙ୍କର ଆର୍ଥିକ ପରିସ୍ଥିତି ଅତି ଦୀନ ଅବସ୍ଥାରେ ଆସି ପହଞ୍ଚିଲା । ସେମାନେ ଅନ୍ନଚିନ୍ତାରେ ବାଟହେଲେ ।

ସେତେବେଳର ସାମାଜିକ ପରିସ୍ଥିତି ବର୍ଣ୍ଣନା କରୁଥିବା ଗୋଟିଏ ଯାତ୍ରା ଅଭିନୟର ଭୂମିକାରେ ଅବତୀର୍ଣ୍ଣ ହୋଇ ଜଣେ ଅଭିନେତା ଗାଇଥିଲେ—

ଅବଧାନେ ଅବଧାନେ କିଏ ଡାକୁଛି
ଶୁଖିଲା ନଇରେ ମୁଁ ତ ନାହା ପେଲୁଛି
ଉଠିଚି ଚାହାଳି ଘର
ଦେଖାନାହିଁ ଚାଟଙ୍କର
(ମୁଁ ତ) ଭାଗବତ ଆଦି ଅନ୍ନ ଖୋଜି ବୁଲୁଚି
ଅବଧାନେ ଅବଧାନେ କିଏ ଡାକୁଚି ॥

ସେଇ ମାଟିବଂଶ ଅବଧାନଙ୍କର ବଂଶର ଲୋକ ଭିଖାରି ଚରଣ ମହାନ୍ତି । ତାଙ୍କ ବାପା ବଡ଼ପୁଟ ଗାଁରୁ ଆସି ପୁରୀଜିଲା ଗୋପ ନିକଟ 'ଡମ୍ବର' ଅଞ୍ଚଳରେ ଚାହାଳିଟିଏ କରିଥିଲେ । ଗ୍ରାମବାସୀଙ୍କ ଅନୁଗ୍ରହରୁ ସେଠାରେ ସେ ଘରଟିଏ ପାଇ ପିଲାପିଲି ନେଇ ରହୁଥିଲେ । ସ୍ଥାନୀୟ ମଠର ସାମୟିକ କାର୍ଯ୍ୟ କରି ତାଙ୍କର ଗୁଜୁରାଣ ସ୍ୱଚ୍ଛଳ ଭାବରେ ଚଳୁଥିଲେ । ତାଙ୍କର ନିଜ ଗ୍ରାମରେ ଘର ଓ ଅଳ୍ପ କିଛି ପୈତୃକ ସମ୍ପତ୍ତି ଥିଲା । ତେଣୁ ଡମ୍ବର ଅଞ୍ଚଳରେ ବହୁକାଳ କଟାଇଲେ ମଧ୍ୟ ନିଜ ଗ୍ରାମ ସହିତ ସମ୍ପର୍କ ରଖିଥିଲେ ଓ ବର୍ଷ ଅଧିକାରେ ଘରେ ଯାଇ ବୁଲିଆସୁଥିଲେ ।

ଇଂରେଜ ଅମଳରେ ଗାଆଁ ଗାଆଁ ହୋଇ ପ୍ରାଇମେରୀ ସ୍କୁଲ ସବୁ ନୂଆ ହୋଇ ବସୁଥିଲା । ସେ ଗ୍ରାମରେ ମଧ୍ୟ ଗୋଟିଏ ପ୍ରାଇମେରୀ ସ୍କୁଲ ବସିଲା । ପିଲାମାନେ ଚଟ୍ଟଶାଳୀ ଛାଡ଼ି ପ୍ରାଇମେରୀ ସ୍କୁଲରେ ନାମ ଲେଖାଇବାର ପ୍ରସ୍ତାବ ହେଲା । ଗ୍ରାମଲୋକମାନେ ଭିଖାରୀ ବାବୁଙ୍କ ବାପାଙ୍କୁ ଭକ୍ତି ଓ ସମ୍ମାନ ଦେଖାଉଥିବାରୁ ତାଙ୍କର ନିଜ ବ୍ୟବସ୍ଥା କରିବା ପାଇଁ ସରକାରୀ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କଲେ ।

ପରେ ଶିକ୍ଷାବିଭାଗର ଜଣେ ଉଚ୍ଚ ହାକିମଙ୍କୁ ସେ ଗ୍ରାମରେ ସମ୍ବର୍ଦ୍ଧନା ଦିଆଗଲା । ନୂଆହୋଇ ଗଢ଼ାହୋଇଥିବା ପ୍ରାଇମେରୀ ସ୍କୁଲଟି ଉଦ୍‌ଘାଟିତ ହେଲା । ଅବଧାନେ ଚଟ୍ଟଶାଳୀର ସମସ୍ତ ପିଲାଙ୍କୁ ନେଇ ପଟୁଆର କରି ସେ ସ୍କୁଲ ନିକଟରେ ପହଞ୍ଚିଲେ । ସେଠାରେ ନୂଆ ନିଯୁକ୍ତି ପାଇଥିବା ଦୁଇଜଣ ତାଲିମପ୍ରାପ୍ତ ଶିକ୍ଷକ ସେମାନଙ୍କୁ ପାଛୋଟିନେଲେ । ପିଲମାନେ ମିଠେଇ ପାଇଲେ । ଅବଧାନେ ତୃତୀୟ ଶିକ୍ଷକଭାବେ ମାସିକ ଚାରି ଟଙ୍କା ବେତନରେ ନିଯୁକ୍ତି ପାଇଲେ ।

ଭିଖାରୀ ଆଗରୁ ଚଟ୍ଟଶାଳୀରେ ଓ ବାପାଙ୍କ ପାଖରେ ପଢ଼ୁଥିଲେ । ସେ ନିମ୍ନପ୍ରାଥମିକ ସ୍କୁଲରେ ନାମ ଲେଖାଇ ବୃତ୍ତିପରୀକ୍ଷା ଦେଲେ ଓ ବୃତ୍ତି ପାଇ ପୁରୀ ଜିଲ୍ଲା ସ୍କୁଲରେ ପଢ଼ିଲେ । ସେ ମେଧାବୀ ଛାତ୍ର ଥିଲେ । ମାଟ୍ରିକ ପରେ କଟକରୁ ବି.ଏ. ପାଶ୍ କରି କଟକର ଗୋଟିଏ ଘରୋଇ ସ୍କୁଲରେ ଶିକ୍ଷକତା କଲେ । ମାଟ୍ରିକ୍ ପୂର୍ବରୁ ତାଙ୍କର ବିବାହ ହୋଇଯାଇଥିଲା । ପିଲାଟିଏ ତାଙ୍କ ପିତାଙ୍କ ନିକଟରେ ରହୁଥିଲେ ଓ ସେ ଛୁଟିମାନଙ୍କରେ କଟକରୁ ସେଠାକୁ ଯିବା ଆସିବା କରୁଥିଲେ ।

ସେଠାରେ ଲାଗ ଲାଗ ଦୁଇ ବର୍ଷ ବର୍ଷା ହେଲାନାହିଁ । ସବୁ ଜମି ପଡ଼ିଆ ପଡ଼ିଲା । ଭୂଇଁ ଫାଟି ଆଁ କଲା । ପାଟରେ ଅଟରେ ପାଣି ଟୋପାଏ ମଧ୍ୟ ମିଳିଲା ନାହିଁ । ବର୍ଷା ଆଶାରେ ଲୋକେ ଚାତକ ପରି ଚାହିଁ ଚାହିଁ ନିରାଶ ହେଲେ । ଚାରିଆଡ଼େ ହାହାକାର ।

ଭିଖାରୀ ବାବୁ ଛୁଟିରେ ଗାଁକୁ ଆସି ଏସବୁ ଦେଖି ଚିନ୍ତାଗ୍ରସ୍ତ ହୋଇପଡ଼ିଲେ । ସେ ଅଞ୍ଚଳରୁ ଅଧିକାଂଶ ଲୋକ ଗାଆଁ ଗଣ୍ଡା ଛାଡ଼ି ପଳେଇଲେଣି, ବାକି ଯେ ରହିଥିଲେ ତାଙ୍କ ଦେହରେ ଖାଦ୍ୟାଭାବରୁ କଣ୍ଟା ଦୋହଲୁଛି । ସେମାନଙ୍କ ମଧ୍ୟରୁ ଅନେକ ନାନା ରୋଗ ଭୋଗ କରୁଛନ୍ତି ଓ ବାଟରେ ଘାଟରେ ଟଳିପଡ଼ୁଛନ୍ତି ।

ସେତେବେଳର ଗୋରା ସରକାରଙ୍କର ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ସ୍ଥାନୀୟ ସରକାରୀ ବାବୁମାନେ ଲହରେ ତେଲ ପକାଇ ବସିରହିଛନ୍ତି ଓ ସୁବିଧା ଦେଖି ସୁନା ରୂପା ସବୁ ଲୋକଙ୍କଠାରୁ ମାଟି ଗୋଡ଼ି ଦରରେ କିଣି ସାଇତିବାରେ ଲାଗିଛନ୍ତି ।

ପରିତ୍ର ବନ୍ଧୁ ଗୋପବନ୍ଧୁ ସେତେବେଳେ ବିହାର ଓଡ଼ିଶା ବିଧାନସଭାର ସଦସ୍ୟ । ସେ ଲୋକଙ୍କ ଅବସ୍ଥାରେ ବିଚଳିତ ହୋଇ ଓଡ଼ିଶାର ଗୋରା ହାକିମମାନଙ୍କୁ ଲୋକଙ୍କୁ ସାହାଯ୍ୟ କରିବାକୁ କାକୁତି ମିନତି ହୋଇ ଜଣାଇଲେ । ଫଳ କିଛି ହେଲାନାହିଁ । ବିଧାନ ସଭାରେ ଦୁର୍ଭିକ୍ଷ ଓ ଦୁରବସ୍ଥା କଥା ବର୍ଣ୍ଣନା କରିବାରୁ ଓଡ଼ିଶା ହାକିମମାନଙ୍କୁ ପଚରାଗଲା ।

ସରକାର ପୁରୀ ଜିଲ୍ଲାର ଗୋରା କଲେକ୍ଟର ସାହେବଙ୍କ ରିପୋର୍ଟ ବିଧାନସଭାରେ ପେଶ୍ କଲେ । ସେ ରିପୋର୍ଟରେ ଥିଲା 'ଦୁର୍ଭିକ୍ଷ ଅଞ୍ଚଳର ଲୋକେ ଖୁବ୍ ଧନୀ । ସେମାନଙ୍କ ସ୍ତ୍ରୀମାନେ ସୁନାର ବଡ ବଡ଼ ଖଡ଼ୁ ପିନ୍ଧିଛନ୍ତି । ସେଠାରେ ଖାଦ୍ୟ ପଦାର୍ଥ ଅଭାବ ହେଲେ ମଧ୍ୟ ଅନ୍ୟଠାରୁ କିଣିଆଣି ଖାଇବା ପାଇଁ ସେମାନଙ୍କର ଯଥେଷ୍ଟ ଶକ୍ତି ଅଛି ।' ସେ ରିପୋର୍ଟ ଶୁଣି ଗୋପବନ୍ଧୁ ପିତଳ ଖଡ଼ୁ ଓ ସେମାନଙ୍କ ଖାଦ୍ୟ ବଣୁଆପଖ ଓ ମୁଠି ଘାସ ଆଣି ବିଧାନସଭାର ଟେବୁଲ୍ ଉପରେ ଥୋଇ ଭୋ ଭୋ କାନ୍ଦିଲେ ।

ତଥାପି ସରକାର ଲୋକଙ୍କ ପାଇଁ ବିଶେଷ କିଛି କଲେନାହିଁ । ସେତେବେଳେ ବଢ଼ି ମରୁଡ଼ି ବାତ୍ୟା ପ୍ରଭୃତି ପ୍ରାକୃତିକ ବିପଦ ପାଇଁ ସରକାର ଆଗରୁ ବ୍ୟବସ୍ଥା କରି ଖାଦ୍ୟପଦାର୍ଥ ମହଜୁଦ କରି ରଖୁନଥିଲେ । ଅନ୍ୟ ସ୍ଥାନରୁ ସଂଗ୍ରହ କରି ବିପନ୍ନ ଅଞ୍ଚଳକୁ ପଠାଇବା ପାଇଁ ସରକାରୀ କଳ ଓ ଯାନବାହନର ସୁବିଧା ନଥିଲା । ଖାଦ୍ୟ ଆସି ସେ ସ୍ଥାନରେ ପହଞ୍ଚିବା ସମୟସାପେକ୍ଷ ଥିବାରୁ ସେ ସବୁ ଅଧାପନ୍ତରିଆ ସରକାରୀ ବ୍ୟବସ୍ଥା ହେଉ ହେଉ ସେଠାର ଅବସ୍ଥା ଅସମ୍ଭାଳ ହୋଇଥିଲା ।

ସତ୍ୟବାଦୀରୁ ସ୍ୱେଚ୍ଛାସେବକ ଗ୍ରୁପବାହିନୀ ସହିତ କିଛି ଚୂଡ଼ା ଚାଉଳ ସଂଗ୍ରହ କରି ପଣ୍ଡିତ ନୀଳକଣ୍ଠ ସେଠାରେ ଗ୍ରୁଉଣୀ ପକାଇଥିଲେ । ସ୍ୱେଚ୍ଛାସେବକମାନେ ଗାଁ ଗାଁ ବୁଲି ଚୂଡ଼ା ଚାଉଳ ବାଣ୍ଟିବା ଓ ରୋଗୀସେବା କାର୍ଯ୍ୟ କରୁଥିଲେ । ନୀଳକଣ୍ଠଙ୍କୁ ସାହାଯ୍ୟ କରିବାକୁ ଦଣ୍ଡପଲ୍ଲୀର ବିପ୍ଳବୀ ସେତେବେଳର ସାବରମତୀ ଆଶ୍ରମର କର୍ମୀ ଗୋବିନ୍ଦ ମିଶ୍ରଙ୍କ ଠାରୁ ଖବର ପାଇ ମହାତ୍ମାଗାନ୍ଧୀ ଠକ୍କରବାପାଙ୍କୁ ସେଠାକୁ ପଠାଇଥିଲେ । ଗୋପବନ୍ଧୁ ଓ ଗାନ୍ଧୀଙ୍କ ଆବେଦନରେ କିଛି କିଛି ସାହାଯ୍ୟ ଆସି ସେ ଗ୍ରୁଉଣୀରେ ପହଞ୍ଚୁଥିଲା ।

ଭିକାରୀ ବାବୁ ସତ୍ୟବାଦୀ ସ୍ୱେଚ୍ଛାସେବକ ଦଳରେ ମିଶି ଚୂଡ଼ା ଚାଉଳ ବାଣ୍ଟିବାରେ ଲାଗିପଡ଼ିଲେ । ଲୋକଙ୍କର ନିଜେ ଚାଉଳ ସିଝାଇ ଭାତ କରି ଖାଇବାକୁ ମଧ୍ୟ ସାମର୍ଥ୍ୟ ନ ଥିଲା । ସେମାନେ ଚାଉଳ ପାଇବା ମାତ୍ରକେ ଭପ୍ ଭପ୍ କରି ଯେତିକି ଚୋବାଇ ଯାଆନ୍ତି ଓ ହଜମ କରିନପାରି ଝାଡ଼ା ବାନ୍ତି ରୋଗରେ ପଡ଼ନ୍ତି । ଲୋକଙ୍କର ମାନସିକ ଅବସ୍ଥା ଏପରି ଅବସ୍ଥାକୁ ଆସିଥିଲା ଯେ ମାଆ ମଧ୍ୟ ପିଲାଠାରୁ ଛଡ଼ାଇ ଖାଦ୍ୟ ଖାଇଯାଉଥାଏ ।

ସ୍ୱେଚ୍ଛାସେବକମାନେ ଆଉ ଚାଉଳ ନଦେଇ ଭାତ ରାନ୍ଧି ବାଣ୍ଟିବାକୁ ଲାଗିଲେ । ଅବସ୍ଥା ଦେଖି ଯେତିକି ଭାତ ଜଣେ ହଜମ କରିପାରିବ, ସେତିକି ପରିମାଣ ଜଣକୁ ଦେବାର ବ୍ୟବସ୍ଥା ହେଲା । ଦିନେ ଭିକାରୀବାବୁ ଭାତ ବାଣ୍ଟିଲାବେଳେ ଜଣେ ଲୋକ ଆଉ ଭାତ ପାଇଁ ଜିଦ୍ ଧରିଲା । ସେ ଲୋକ ପୂର୍ବରୁ ସେଠାରେ ଜଣେ ଧନୀ ଲୋକ ଥିଲା । ବହୁ ଭୋଜିଭାତ କରୁଥିଲା ଓ ତା' ଦୁଆରୁ ଅତିଥି ଅଭ୍ୟାଗତ ନଖାଇ ଫେରୁନଥିଲେ । ସେ ଲୋକର ଭାତ ମୁଠାକ ପାଇଁ ବିକଳ ଦେଖି ଭିକାରୀବାବୁ ସହ୍ୟ କରିନପାରି ନିୟମ ବାହାରେ ସେ ଯେତେ ମାଗିଲା ତାକୁ ସେତେ ଭାତ ଖାଇବାକୁ ଦେଲେ । ସେ ଅନେକ ଦିନୁ ଖାଇ ନଥିଲା, ଭାତ

ପାଇ ରାକ୍ଷସ ଭଳି ଦୁଇ ହାତରେ ନେଇ ଗିଳିବାକୁ ଲାଗିଲା । ଗୁଡ଼ାଏ ଖାଇଦେଇ ସେ ସେହି ସ୍ଥାନରେ ଟଳିପଡ଼ିଲା । ତା'ର ପ୍ରାଣବାୟୁ ଉଡ଼ିଗଲା ।

ଭିଖାରୀ ବାବୁ ସେ ମର୍ମନ୍ତୁଦ ଦୃଶ୍ୟ ଦେଖି ମୋହାବିଷ୍ଟ ହୋଇପଡ଼ିଲେ । ଅନ୍ୟ ସ୍ୱେଚ୍ଛାସେବକମାନେ ନିର୍ବାକ୍ ହୋଇ ଠିଆହୋଇଥିଲେ । ସେଠାରେ ପହଞ୍ଚିଥିବା ଜଣେ ସରକାରୀ କର୍ମଚାରୀ ଭିଖାରୀ ବାବୁଙ୍କୁ ଲକ୍ଷ୍ୟକରି କହିଲେ, "ଦେଖ ଦେଖ, ଲୋକଗୁଡ଼ାକୁ ଆଉ ବେଶି କରିଦେଅ । ତାଙ୍କର ନିଜ ପେଟକୁ ବି ଅଟକଳ ନାହିଁ । ମାଗଣା ପାଇଲା ବୋଲି ଏ ଲୋକଟା ଗେଫିଦେଇଗଲା । ଆରେ ଯେତିକି ଶକ୍ତି ସେତିକି ଖାଅ—ଅତି ଲୋଭରେ ତ ମୃତ୍ୟୁ ନିଶ୍ଚିତ । ସେ ଲୋକଟାକୁ ଭଗବାନ ଠିକ୍ ଶାସ୍ତି ଦେଇଛନ୍ତି ।" ଏହା କହି ଠୋ ଠୋ କରି ହସିଉଠିଲେ ।

ଲୋକର ମୃତ୍ୟୁବେଳେ ବି ଏପରି ମନ୍ତବ୍ୟ ଓ ଉପହାସ ଭିଖାରୀବାବୁଙ୍କୁ ବିଚଳିତ କରିପକାଇଲା । ତାଙ୍କ ମନର ଦୁଃଖ ସେ ଅଫିସରଙ୍କ ଉପରେ କ୍ଷୋଭ ଓ ରାଗରେ ପରିଣତ ହେଲା । ସେ ମୁହୂର୍ତ୍ତକ ପାଇଁ ବିଶ୍ୱରଶକ୍ତି ହରାଇ ସେ ଅଫିସରଟିର ବେକ ଧରି ଚିପି ଦେବାକୁ ଦୁଇ ହାତ ବଢ଼ାଇ ତା' ଆଡ଼କୁ ଉଚ୍ଛୁଙ୍କିଗଲେ । ଅଫିସରଙ୍କର 'ମାରିପକାଇଲା' ବୋଲି ଚିତ୍କାର ଶୁଣି ନିକଟରେ ବୁଲୁଥିବା ଦାରୋଗାର ନିର୍ଦ୍ଦେଶରେ ସିପାହୀମାନେ ଆସି ଭିଖାରୀ ବାବୁଙ୍କୁ ଘେରିଯାଇ ତାଙ୍କ ହାତରେ ହାତକଡ଼ି ପିନ୍ଧାଇ, ଗିରଫ କରି ପୋଲିସ ଥାନାକୁ ନେଇଗଲେ । ତାଙ୍କ ନାମରେ ମୋକଦ୍ଦମା ରୁଜୁ ହୋଇ ସେ ପୁରୀ ଚାଲାନ ହେଲେ । ସେ ଘଟଣାରେ ସ୍ୱେଚ୍ଛାସେବକମାନଙ୍କ ଭିତରେ ହାଇଚାଇ ପଡ଼ିଗଲା । ପୁରୀର ଓକିଲ ଜଗବନ୍ଧୁ ସିଂହ ଭିଖାରୀ ବାବୁଙ୍କ ପାଇଁ ମୋକଦ୍ଦମା ଲଢ଼ିଲେ । ସ୍ଥାନୀୟ ଲୋକଙ୍କ ଭିତରୁ କେହି ପୋଲିସଙ୍କ ସପକ୍ଷରେ ସାକ୍ଷ୍ୟ ଦେବାକୁ ମିଳିଲେ ନାହିଁ । ପୋଲିସ ବାହାରୁ ସାକ୍ଷୀ ଯୋଗାଡ଼ କଲେ, କିନ୍ତୁ ଓକିଲଙ୍କ ଜେରାରେ ସେମାନେ ଧରାପଡ଼ିଲେ ଓ ଭିଖାରୀବାବୁ ନିର୍ଦ୍ଦୋଷରେ ଖଲାସ ହେଲେ ।

ସେହିଦିନଠାରୁ ସରକାରୀ ଲୋକ ଓ ଗୋରା ସରକାରଙ୍କ ଉପରେ ତାଙ୍କର କ୍ରୋଧାଗ୍ନି ଜଳିଉଠିଲା । ଗୋରା ସରକାରଙ୍କୁ ଏ ଦେଶରୁ ତଡ଼ିବାକୁ ଉଦ୍ୟମ କରିବା ପାଇଁ ସେ ମନେ ମନେ ଶପଥ ନେଲେ । ସେ କଟକରେ ପହଞ୍ଚିବା ପରେ ଚାକିରୀରେ ଆଉ ତାଙ୍କ ମନ ଲାଗିଲା ନାହିଁ । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାପାଇଁ ତାଙ୍କ ମନ ବ୍ୟାକୁଳ ହେଲା । ଦେଶର ଅବସ୍ଥା ଜାଣିବାକୁ ଓ ସଂଗ୍ରାମ ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ସେ ସମ୍ବନ୍ଧୀୟ ଖବରକାଗଜ ଓ ବହିପତ୍ର ସେ ପଢ଼ିବାକୁ ଲାଗିଲେ ।

ସେ ଆଗରୁ ବୃଦ୍ଧ ପିତାଙ୍କୁ ଓ ପିଲିପିଲିଙ୍କୁ ନିଜ ଗାଁକୁ ପଠାଇ ଦେଇଥିଲେ । ଗ୍ରାମରେ ପିତାଙ୍କର ପରଲୋକ ହୋଇଯିବାର ଖବର ଆସି ପହଞ୍ଚିଲା । ସେ ତରତର ହୋଇ ଗ୍ରାମାଭିମୁଖେ ଯାତ୍ରାକଲେ । ଜଟଣୀ (ଖୋର୍ଦ୍ଧାରୋଡ଼) ଷ୍ଟେସନରୁ ଖୋର୍ଦ୍ଧାବାଟେ ଆସିଲା-

ବେଳକୁ କଚେରୀ ଚାରିପଟରେ ଖୁବ ଭିଡ଼ ଜମିଥିଲା । ଲୋକେ ଗୋପବନ୍ଧୁଙ୍କ ଜୟଧ୍ୱନି କରୁଥିଲେ ।

ଗୋପବନ୍ଧୁଙ୍କ ସମ୍ପାଦପତ୍ରରେ 'ସତ୍ୟ ହେଲେ ସାଙ୍ଘାତିକ' ବୋଲି ସରକାରଙ୍କ ବିରୁଦ୍ଧରେ ଯେ ସମ୍ବାଦ ପ୍ରକାଶ ପାଇଥିଲା ସେଥିପାଇଁ ତାଙ୍କ ନାମରେ ଗୋଟିଏ ମାନହାନି ମୋକଦ୍ଦମା ହୋଇଥିଲା । ସେଇ ମୋକଦ୍ଦମାର ରାୟ ଶୁଣିବା ପାଇଁ ଲୋକେ ରୁଣ୍ଡ ହୋଇଥିଲେ । ଗୋପବନ୍ଧୁ କାଠଘେରାରୁ ଖଲାସ ହେଲେ । ଭିଡ଼ ଭାଙ୍ଗିଲା । ଗୋପବନ୍ଧୁଙ୍କୁ ଦେଖି ଭିଖାରୀ ବାବୁ ପ୍ରଣାମ କଲେ । ସେ ତାଙ୍କୁ କୁଣ୍ଢାଇପକାଇ କୋର୍ଟରେ ସେଦିନ ତାଙ୍କର ଉପସ୍ଥିତ ହେବାର କାରଣ ପଚାରିଲେ । ସେ କହିଲେ, "ବାପାଙ୍କ ପରଲୋକ ସମ୍ବାଦ ଶୁଣି ଗାଁକୁ ଯାଉଛି । ଆପଣଙ୍କ ମୋକଦ୍ଦମା ସମ୍ବାଦରେ ଏଠାରେ ଟିକିଏ ଅଟକିଗଲି, ରାୟ ଶୁଣିଲି । ମୁଁ ଭାବିଥିଲି କଚେରୀ ତ ତାଙ୍କର, ହାକିମ ତ ତାଙ୍କର, ଏଥିରେ ଆପଣ କି ସୁବିଚାର ପାଇବେ ? ସୁଭାଷ ବୋଷଙ୍କ ଭଳି ହାକିମ ପଦରେ ବସିନଥିଲେ ଆଉ କେଉଁ ହାକିମ ନିର୍ଭୀକ ଭାବରେ ଏପରି ରାୟ ଦେବାକୁ ସାହସ କରିପାରନ୍ତା । ଏ ଅତ୍ୟାଚାରୀ କଳଙ୍କିତ ଇଂରେଜ ସରକାରକୁ କ'ଣ ଲେଖାଲେଖିରେ ବା ବକ୍ତୃତାରେ ଜବରଦକର ହଟାଇ ହେବ ? ଆପଣ ଏକମତ ହୁଅନ୍ତୁ ନ ହୁଅନ୍ତୁ ମୋ ମତରେ ବଙ୍ଗଳାର ସନ୍ତ୍ରାସବାଦୀ ଆନ୍ଦୋଳନ ପରି ଭାରତସାରା ଏକ ବୈପ୍ଳବିକ ଆନ୍ଦୋଳନ ଦରକାର ।"

ତାଙ୍କ କଥା ଶୁଣି ଗୋପବନ୍ଧୁ ଅଳ୍ପ ହସି କହିଲେ, "ଭିକାରୀ, ବ୍ରିଟିଶ ସରକାରଙ୍କ ସୁଶିକ୍ଷିତ ସୈନ୍ୟସାମନ୍ତ, ଅମାପ ଅସ୍ତ୍ରଶସ୍ତ୍ର ଓ ଅଖଣ୍ଡ କ୍ଷମତା ଆଗରେ ଆମର ହାତତିଆରି ବୋମା କିଛି କାମ ଦେବନାହିଁ । ଭାରତ ଏଡ଼େବଡ଼ ଦେଶ, ଦେଶସାରା ଏକାବେଳକେ ହିଂସାତ୍ମକ ଆନ୍ଦୋଳନ ସଂଗଠିତ କରିବା ସମ୍ଭବପର ନୁହେଁ ।

ଲୋକେ ଏ ପର୍ଯ୍ୟନ୍ତ ଅଚେତନ ଅବସ୍ଥାରେ ପଡ଼ିରହିଛନ୍ତି । ସ୍ୱାଧୀନତା ପାଇଁ ରାଜନୈତିକ ଚେତନା ଆଣିବା ପାଇଁ ପ୍ରଥମେ ଲୋକଙ୍କ ଭିତରେ ଶିକ୍ଷାର ପ୍ରସାର ଦରକାର ଓ ମଣିଷ ଗଢ଼ିବା ଦରକାର । ଆମର ବୋମା ମଣିଷର ମସ୍ତିଷ୍କ । ଶହ ଶହ ବର୍ଷର ନିଦ୍ରିତ ମାନବକୁ ଜାଗ୍ରତ କରି ତା'ର ଆଖି ଫିଟାଇବା ପାଇଁ ନିର୍ଭୀକ ମନୁଷ୍ୟର ପ୍ରୟୋଜନ । ସରକାରଙ୍କ ପ୍ରତି ଭୟ ଛଡ଼ାଇ ଲୋକଙ୍କୁ ଜାତୀୟବୋଧ ଶିକ୍ଷା ଦେବା ଯେକୌଣସି ଦେଶପ୍ରେମୀର ପ୍ରଥମ କର୍ତ୍ତବ୍ୟ । ତୁମେ ଗାଁକୁ ଯାଉଛ, ସେଠାରେ ଲୋକଙ୍କୁ ସଂଗଠିତ କର । ଲୋକେ ସଂଗଠିତ ହୋଇପାରିଲେ ଓ ନିର୍ଭୀକ ଭାବରେ ନିଜର ଦାବି ଉପସ୍ଥାପିତ କରିପାରିଲେ ଆମେ ସ୍ୱାଧୀନତା ହାସଲ କରିପାରିବା । ହାତ ବୋମା ଡିଆରିରେ ତାହା ହେବନାହିଁ । ଏ ଜାତିର ଦୃଢ଼ତା ଓ ନୈତିକ ଶକ୍ତି ବଳରେ ଇଂରେଜ ଶାସନର ପ୍ରସ୍ତର ଅଟ୍ଟାଳିକା ଟଳି ପଡ଼ିବ ।

ଗୋପବନ୍ଧୁଙ୍କଠାରୁ ବଦାୟ ନେଇ ବହୁ ଭାବନା ମୁଣ୍ଡରେ ମୁଣ୍ଡାଇ ସେ ଗାଁଆଡ଼କୁ ଚାଲିଲେ । ଏହି ଖୋର୍ଦ୍ଧା ଭୂଇଁ, ବୀରଭୂଇଁ, ସେ ବୀର ପାଇକମାନେ କାହାନ୍ତି ? ସେମାନେ କୁଆଡ଼େ ଉଭେଇଗଲେ ! ତାଙ୍କର ବଂଶଧରମାନେ ଏପରି ଭୀରୁ, କାପୁରୁଷ କିପରି ପାଲଟି ଗଲେ ? ବାଘ ଘରେ ବିରାଡ଼ି ନାଚ ସମ୍ଭବ ହେଲା । ଓଡ଼ିଶା କଅଣ ଥିଲା କଅଣ ହେଲା । ଏ ଦେଶରେ ସାହସ ସହିତ କାହାର ପାଟି ଫିଟାଇ ନିର୍ଭୀକ ଭାବରେ ପଦେ କଥା କହିବାର କ୍ଷମତା ନାହିଁ । ସରକାରୀ ଲୋକ ବା ପୁଲିସଟାର ଲାଲ ପଗଡ଼ିଟାଏ ଦେଖିଲେ ଲୋକେ ଡରରେ ଥରହର ହେଉଛନ୍ତି । ଏଠାରେ ପୁଣି କଥାଟି ଚଳୁଛି—

କହିହେଉଆଇ ମାଇପ ଆଗେ
ପାଟି ନଫିଟଇ ପାଇକ ଆଗେ ।

ଏ ଜାତିର କଅଣ ଆଉ ପ୍ରାଣ ନାହିଁ ? ଏ ବୀର ଜାତି କଅଣ ପ୍ରକୃତ ମାଇଚିଆ ପାଲଟିଗଲା ? ଏ ଜାତିକୁ ନପୋଡ଼ ନିଦରୁ ପୁଣି କିପରି ଉଠାଇହେବ ? ଇଂରେଜଙ୍କ ରାଜ୍ୟପ୍ରସାରଠାରୁ ସିପାହୀ ବିଦ୍ରୋହ ପର୍ଯ୍ୟନ୍ତ, ଇଂରେଜଙ୍କ ବିରୁଦ୍ଧରେ ବିଦ୍ରୋହ ନିଆଁ ଥରକୁଥର ଜଳିବାକୁ ଚେଷ୍ଟାକରି କାହିଁକି ପୁଣି ଲିଭିଯାଉଛି । ଓଡ଼ିଶାର ଝଣ୍ଡାଯୁକ୍ତ ସେନା କଅଣ ଇଂରେଜଙ୍କ ବିରୁଦ୍ଧରେ ଯୁଦ୍ଧ କରିନଥିଲେ ? କିନ୍ତୁ ଫଳ କଅଣ ହେଲା ! ବରୁଣେଇ ପର୍ବତ ତଳର 'ଫାସିବର', ଯେଉଁ ବରଗଛର ଦୁଇଟି ବଡ଼ ବଡ଼ ଡାଳକୁ ଦୁଇପଟୁ ଭିଡ଼ିଆଣି ସେଥିରେ ସେନାପତି ଜୟୀରାଜଗୁରୁଙ୍କ ଦୁଇଗୋଡ଼କୁ ଅଲଗା ଅଲଗା କରି ଦୁଇ ଡାଳରେ ବାନ୍ଧି, ଡାଳ ଦୁଇଟିକୁ ଛାଡ଼ିଦେବା ଦ୍ୱାରା ସେ ଦୁଇଫାଳ ହୋଇ ଚିରିହୋଇ ଯାଇଥିଲେ, ସେ ଗଛଟି ଏବେବି ଇଂରେଜ ଅତ୍ୟାଚାରର ମୂକସାକ୍ଷୀ ରୂପେ ଠିଆହୋଇ ସଶସ୍ତ୍ର ବିଦ୍ରୋହର ବିଫଳତା ପ୍ରମାଣକରୁଛି ।

ଗୋପବନ୍ଧୁଙ୍କ କଥାହିଁ ଠିକ୍ । ହାତବୋମାରେ ଇଂରେଜଙ୍କୁ ଏ ଦେଶରୁ ବିତାଡ଼ିତ କରିହେବନାହିଁ । ନୈତିକ ଏକତା ବଳରେ ହିଁ ବିଦେଶୀ ସରକାରର କାର୍ଯ୍ୟକୁ ବାଧାଦାନ ଦ୍ୱାରା ସେମାନଙ୍କୁ ପଙ୍ଗୁ କରିପାରିଲେ ସେମାନେ ଆପେ ଆପେ ଏ ଦେଶ ଛାଡ଼ି ପଳାଇବେ । ସେଥିପାଇଁ ଜନଚେତନା ଜାଗ୍ରତ କରିବାକୁ ଲୋକ ଗଢ଼ିବା ଦରକାର ।

ଏପରି ଭାବି ଭାବି ସେ ନିଜ ଗ୍ରାମରେ ଆସି ପହଞ୍ଚିଲେ । ସେ ଅନ୍ୟ ସ୍ଥାନରେ ଜନ୍ମ ହୋଇଛନ୍ତି ଓ ପିଲଦିନୁ ବାହାରେ ବଢ଼ିଛନ୍ତି । ଗ୍ରାମ ସହିତ ତାଙ୍କର ସମ୍ପର୍କ ଖୁବ୍ କମ୍ ଥିଲା । ସେଠାରେ ସେ ପ୍ରାୟ ଅପରିଚିତ । ତଥାପି ସେଠାରୁ ପିଲାଟିଲାଙ୍କୁ ନେଇ ଆଉ ବା କେଉଁଆଡ଼େ ଯିବେ, ତେଣୁ ପିତାଙ୍କ ଶ୍ରାଦ୍ଧକ୍ରିୟା ପରେ ସେଇ ଗାଁକୁ ନିଜର କର୍ମକ୍ଷେତ୍ର କରି ବାଛିଲେ । ଶିକ୍ଷକତା ତାଙ୍କର ବଂଶପରମ୍ପରା, ତେଣୁ ସେଠାରେ ସେ ସ୍କୁଲଟିଏ ଆରମ୍ଭ କରିବାରୁ ଅନେକ ତାଙ୍କୁ ସାହାଯ୍ୟ କରିବାକୁ ବାହାରି ପଡ଼ିଲେ । ଏପରିକି ସ୍ଥାନୀୟ ଜମିଦାର ସାହାଯ୍ୟ ଓ ଉତ୍ସାହ ଦେଇ ସେ ସ୍କୁଲଟିର ଶୁଭ ଦେଲେ ।

ତାଙ୍କର ବ୍ୟକ୍ତିତ୍ୱ ଦ୍ୱାରା ଆକୃଷ୍ଟ ହୋଇ ଆଉ କେତେକ ନିଃସ୍ୱାର୍ଥପର ଶିକ୍ଷିତ ଯୁବକ ମଧ୍ୟ ତାଙ୍କ ସହିତ ଶିକ୍ଷକତାରେ ଯୋଗଦେଲେ । ତାଙ୍କର ଅଦମ୍ୟ ଅଧ୍ୟବସାୟ ଯୋଗୁ ସ୍କୁଲଟିର କଳେବର ଓ ସୁନାମ ବୃଦ୍ଧି ପାଇବାରେ ଲଗିଲା । ସତ୍ୟବାଦୀ ବିହାରର ଅନୁକରଣରେ ପାଠ୍ୟକ୍ରମ ସହିତ ଜାତୀୟତାବୋଧ, ସାଂସ୍କୃତିକ ଚେତନା, ଶାରୀରିକ ବ୍ୟାୟାମ ଓ ବୈଷୟିକ ଶିକ୍ଷାର ବ୍ୟବସ୍ଥା ରହିଲା । ସମୟସମୟରେ ଅନ୍ୟସ୍ଥାନରୁ ବିଶିଷ୍ଟ ପଣ୍ଡିତ ଓ ଜନସେବୀମାନେ ଆସି ପିଲାମାନଙ୍କ ସହିତ ନାନାବିଷୟରେ ଆଲୋଚନା କରନ୍ତି । ଦେଶର ସଂସ୍କୃତି, ପରମ୍ପରା, ସାହିତ୍ୟ ଓ ଇତିହାସ ପ୍ରଭୃତି ବିଷୟରେ ନିୟମିତ ଭାବରେ ଆଲୋଚନା ସଭା ବସେ । ଛାତ୍ରମାନଙ୍କର କର୍ତ୍ତବ୍ୟବୋଧ ଓ ଶୃଙ୍ଖଳା ଉପର ପ୍ରତି ଶିକ୍ଷକମାନେ ତୀକ୍ଷ୍ଣ ଦୃଷ୍ଟି ଦିଅନ୍ତି । ସେପରି ଆଲୋଚନା ସଭାମାନଙ୍କରେ ଶିକ୍ଷକ, ଛାତ୍ର ଓ ବକ୍ତାଙ୍କଛଡ଼ା ସ୍କୁଲ କାର୍ଯ୍ୟକାରୀ ସମିତିର ସଭ୍ୟ ଓ ସ୍ଥାନୀୟ ଭଦ୍ରବ୍ୟକ୍ତିମାନେ ମଧ୍ୟ ଯୋଗଦିଅନ୍ତି । ସ୍କୁଲଛାତ୍ରଙ୍କ ଦାନ, ଶୃଙ୍ଖଳା, ସେବା, ଆତିଥେୟତା ଓ ଭଦ୍ର ଆଚରଣ ସେ ଅଞ୍ଚଳର ସମସ୍ତଙ୍କ ନଜର କରି ପକାଇଲା । ସେ ସ୍କୁଲର ପ୍ରଶଂସା ଦୂରଦୂରାନ୍ତରେ ମଧ୍ୟ ଶୁଣାଗଲା ।

## ତିନି

୧୯୩୦ ମସିହା ଆରମ୍ଭ । ସକାଳୁ ବସୁମାତା ଶୀତରେ ଥରୁ ଥରୁ ହେଉଛି । ଆକାଶବୁଢ଼ା କାକର ଲୁହ ବର୍ଷୁଛି । ପିଲାମାନେ ବୁଢ଼ୀମା ଓ ମା'ଙ୍କ ପାଖରେ ଜାକିଜୁକି ହୋଇ ଶୋଇଛନ୍ତି । ଗଭେଇମାନେ କନ୍ଥା ଓ ମୁନ୍ଦରା ତଳୁ ଉଠ୍ ଉଠ୍ ହେଉଛନ୍ତି । ବୁଢ଼ା-ବୁଢ଼ୀମାନେ କାଠପତ୍ର ଯୋଗାଡ଼କରି ଧୂନି ଜାଳି ନିଆଁ ପୋଇଁବା ପାଇଁ ଚେଷ୍ଟା କରୁଛନ୍ତି । ହଠାତ୍ ଜଣେ ଗେରୁ ଖଦଡ଼ ପିନ୍ଧା ଦାଢ଼ିଆଲୋକ ବାଡ଼ି ଖଣ୍ଡିଏ ଧରି ଗାଁ ଦାଣ୍ଡେ ଦାଣ୍ଡେ ସ୍କୁଲଆଡ଼କୁ ଗତିକରିବାର ଦେଖାଗଲା ।

ଭିକାରିବାବୁ ଶେଯରୁ ଉଠି ମୁହଁ ହାତ ଧୋଇ ପ୍ରାର୍ଥନା ସାରି ଦାନ୍ତ ଘସିବାକୁ ସ୍କୁଲ ବୋଡ଼ିଙ୍ଗ୍ ବାରଣ୍ଡାରେ ବସୁଥିଲେ, ସ୍କୁଲ ଆଡ଼କୁ ଆସୁଥିବା ଭଦ୍ରଲୋକଙ୍କୁ ଦେଶସେବୀ ପ୍ରଚାରକ ଅନନ୍ତ ମିଶ୍ର ବୋଲି ଚିହ୍ନିପାରି ପିଣ୍ଡାରୁ ଉଠି ତାଙ୍କୁ ପ୍ରଣାମ ଜଣାଇ ସ୍କୁଲ ବୋଡ଼ିଙ୍ଗ୍‌କୁ ପାଛୋଟିନେଲେ । ପ୍ରଚାରକ ଛାତ୍ର ଜୀବନରୁ ଗୋପବନ୍ଧୁ, ନୀଳକଣ୍ଠ ଓ ଆଚାର୍ଯ୍ୟ ହରିହରଙ୍କ ସଙ୍ଗେ ଦେଶସେବାରେ ଜୀବନଦେଇ ନିଜର ମୃତ୍ୟୁ ପୂର୍ବରୁ ଦେଶକୁ ଉନ୍ନତ ଅବସ୍ଥାରେ ଦେଖିଯିବାକୁ ସଂକଳ୍ପ କରିଥିଲେ । ସେ ଘରଦ୍ୱାର ଛାଡ଼ି ସନ୍ନ୍ୟାସୀ ବେଶରେ ବୁଲି ବୁଲି ଲୋକଙ୍କ ଭିତରେ ଜାତୀୟତା ଭାବ ଓ

ଚେତନା ଆଣିବା ପାଇଁ ସ୍ୱଦେଶପ୍ରେମର ବାର୍ତ୍ତା ପ୍ରଚାରକରୁଥିଲେ । ଶୀତ, ବର୍ଷା, ଖରା କୌଣସି ପ୍ରତି ତାଙ୍କର ଖାତିର ନଥିଲା । ଖେକ ଶୋଷ ନମାନି ସହର, ମଫସଲ, ମୋଗଲବନ୍ଦି, ଗଡ଼ଜାତ ଓ ବିଚ୍ଛିନ୍ନ ଅଞ୍ଚଳର ସହର ଜଙ୍ଗଲରେ ସେ ଚାଲିଚାଲି ବୁଲୁଥିଲେ । ମାନ ଅଭିମାନ ସୁଖ ଦୁଃଖ ସବୁ ତାଙ୍କ ପାଇଁ ସମାନ ଥିଲା । ବିଚ୍ଛିନ୍ନ ଅଞ୍ଚଳରେ ଓଡ଼ିଆ ପ୍ରଚାର ପାଇଁ ସିଂହଭୂମିର ଚାଇଁବସାରେ ସେ ପ୍ରେସ୍‌ଟିଏ କରି 'ସମ୍ମିଳନୀ' କାଗଜ ପ୍ରକାଶ କରିଥିଲେ; ପରେ ସ୍ୱାଧୀନତାର ବାର୍ତ୍ତା ପ୍ରଚାରରେ ଇଂରେଜ ସରକାରଙ୍କ କ୍ରୁର ଦୃଷ୍ଟି ତାଙ୍କ ଉପରେ ପଡ଼ି ସେ କେତେଥର ହସି ହସି କାରାବରଣ କରିଥିଲେ ।

ଭିକାରି ବାବୁ ତାଙ୍କୁ ନେଇ ଅନ୍ୟ ଶିକ୍ଷକମାନଙ୍କ ସଙ୍ଗେ ପରିଚୟ କରାଇଦେଲେ । ତାଙ୍କଠାରୁ ଜାତୀୟ କଂଗ୍ରେସ ଓ ସ୍ୱାଧୀନତା ସଂଗ୍ରାମ ବିଷୟ ଶୁଣିବାପାଇଁ ସ୍କୁଲ ଛୁଟି ପରେ ଗୋଟିଏ ସଭା ହେବାର ବ୍ୟବସ୍ଥା କରାଗଲା । ଅପରାହ୍ନ ଚାରିଟାବେଳକୁ ସ୍କୁଲ ପ୍ରାଙ୍ଗଣଟି ଛାତ୍ର, ଶିକ୍ଷକ ଓ ସ୍ଥାନୀୟ ଭଦ୍ରବ୍ୟକ୍ତିମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଗଲା । ବାଗ୍ମୀ ଅନନ୍ତ ଠିଆହୋଇ ସମସ୍ତଙ୍କୁ ହାତଯୋଡ଼ି ନମସ୍କାର କରିବା ପରେ ନିଜର ବକ୍ତବ୍ୟ ଆରମ୍ଭ କଲେ । ସେ କହିଲେ— ଅନେକ ଦିନ ତଳେ ମୁଁ ଦେଶମିଶ୍ରଣ ପ୍ରଚାର ପାଇଁ ଏଠାକୁ ଆସିଥିଲି । ଓଡ଼ିଶାର ସବୁ ଅଂଶକୁ ଏକାଠି କରି ଓଡ଼ିଆ ଜାତିର ମେରୁଦଣ୍ଡକୁ ଦୃଢ଼ କରିବାଦ୍ୱାରା ଓଡ଼ିଆଙ୍କର ଅର୍ଥାଭାବ ଓ ଦୁଃଖ ଦୁର୍ଦ୍ଦଶା ଦୂର କରିବାକୁ ଉତ୍କଳ ସମ୍ମିଳନୀର ପତାକା ତଳେ ଆମର ଆନ୍ଦୋଳନ ଆରମ୍ଭ ହୋଇଥିଲା । କଂଗ୍ରେସର ପତାକା ତଳେ ଏକଜୁଟ୍‌ହୋଇ ଇଂରେଜ ସରକାରଙ୍କୁ ଏ ଦେଶରୁ ବିଦାୟ ଦେବାପାଇଁ ମହାତ୍ମାଗାନ୍ଧୀ ଆହ୍ୱାନ ଦେବା ପରେ ଆମର ମହାନ୍ ନେତା ପଣ୍ଡିତ ଗୋପବନ୍ଧୁ ଆମର ଆନ୍ଦୋଳନକୁ ଜାତୀୟ ମହାସ୍ରୋତରେ ମିଶାଇ ଦେଇଛନ୍ତି । ଓଡ଼ିଶା ଭାରତର ଅବିଚ୍ଛେଦ୍ୟ ଅଙ୍ଗ । ଇଂରେଜ ଭାରତର ଶାସକ । ତାଙ୍କରି କୂଟନୀତି ଫଳରେ ଆଜି ଓଡ଼ିଶା ଓ ଭାରତର ଅନ୍ୟାନ୍ୟ ଅଂଶର ଏ ଆର୍ଥିକ ଓ ରାଜନୈତିକ ଦୁରବସ୍ଥା । ସବୁ ପ୍ରଦେଶର ଲୋକେ ଏକଜୁଟ ହୋଇ ବିରୋଧ ନ କଲେ ଇଂରେଜମାନେ ଆମ ଦେଶକୁ ଛାଡ଼ି ଯିବେନାହିଁ, ଆମର ଅବସ୍ଥା ଦିନକୁଦିନ ଆହୁରି ଖରାପ ହେବ । ଏ ଦେଶରେ ଏକତା ନଥିବାରୁ ବିଲାତର ମୁଷ୍ଟିମେୟ ଗୋରାବେପାରୀ ଭାରତକୁ ବ୍ୟବସାୟ କରିବାକୁ ଆସି କଳେ ବଳେ କୌଶଳେ କପରି ଗୋଟାକ ପରେ ଗୋଟାଏ ରାଜ୍ୟ ହାତ ପଏଠ କରି ସମଗ୍ର ଭାରତର ଶାସନ କ୍ଷମତା ନିଜ ହାତକୁ ଘେନିଗଲେ । ତାଙ୍କର ଅତ୍ୟାଚାରରେ ଅତିଷ୍ଠ ହୋଇ ସିପାହୀବିଦ୍ରୋହରୁ ଆରମ୍ଭ ହୋଇଥିବା ଏକ ବିରାଟ ସଂସ୍ତ୍ର ବିଦ୍ରୋହ ମୁଣ୍ଡଟେକିଲା । ଦେଶର ଏକତା ଓ ଅସ୍ତ୍ର ଅଭାବରୁ ତାହା ସଫଳ ହୋଇପାରିଲାନାହିଁ । ଏ ଦେଶବାସୀଙ୍କୁ ଠକାଇ ବୋଧଶୋଧ ଦେବାକୁ କମ୍ପାନୀ ହାତରୁ ଇଂଲଣ୍ଡର ରାଣୀ ମହାରାଣୀ ଭିକ୍ଟୋରିଆ ଭାରତର ଶାସନ କାଢ଼ିନେଇ ନିଜେ ସୁଶାସନ ଦେବେ ବୋଲି ବ୍ରିଟିଶ ସରକାର ଘୋଷଣା କଲେ । ଇଂଲଣ୍ଡର ରାଜାରାଣୀ ନାମମାତ୍ରକୁ ଶାସନ କରନ୍ତି, ସେମାନେ ସାକ୍ଷୀଗୋପାଳ, ତାଙ୍କର କୌଣସି ଶାସନ କ୍ଷମତା ନାହିଁ । ତାଙ୍କର ନାମ ବ୍ୟବହାର କରି ପୂର୍ବ ପରି ଇଂରେଜମାନେ

ଦେଶ ଲୁଣ୍ଠନ କଲେ ଓ ଏ ଦେଶକୁ ପୋଲିସ ବଳରେ ଶାସନ କଲେ । ଆମ ଦେଶରେ ଶାସନର ଆଦର୍ଶ ହେଉଛି ରାମରାଜ୍ୟ । ମହାତ୍ମା ଗାନ୍ଧୀ ଇଂରେଜଙ୍କଠାରୁ ଅହିଂସା ଅସହଯୋଗ ସଂଗ୍ରାମଦ୍ୱାରା ଶାସନ ଛଡ଼ାଇ ଆଣି ଲୋକଙ୍କ ହାତରେ ଶାସନ ଦେଇ ରାମରାଜ୍ୟ ଶାସନ ପ୍ରଚଳନ କରିବାକୁ ଘୋଷଣା କରିଛନ୍ତି । ଆପଣମାନେ ପୁରାଣରୁ ରାମରାଜ୍ୟ କଥା ଶୁଣିଥିବେ । ଆମର ଓଡ଼ିଶାରେ ମଧ୍ୟ ରାଜାରାଣୀମାନେ ସୁଶାସନ କରି ଆମକୁ ସୁଖରେ ରଖିଥିଲେ । ଓଡ଼ିଶାର ବହୁ ପୁରାତନ ଭୌମ ବଂଶର ଏବେ ମିଳିଥିବା ରାଣୀ ଦଣ୍ଡୀମହାଦେବୀଙ୍କ ଶାସନ-ଲେଖରୁ ଜଣାପଡ଼ୁଛି, ଏ ରାଜ୍ୟରେ ଅଭାବ ନଥିଲା, ସମସ୍ତେ ଧନୀ ଥିଲେ, ଯୁଦ୍ଧ ବିଗ୍ରହ ଲାଗୁନଥିଲା । ଲୋକଙ୍କର ଡର ଭୟ ନଥିଲା, ଖଳ ପ୍ରକୃତି, ବିବାଦପ୍ରିୟ ଦୁଶ୍ଚରିତ୍ର ଲୋକେ ନ ଥିଲେ, ଦେଶରେ କରଭାର ନଥିଲା, ସମସ୍ତେ ମୁକ୍ତସ୍ୱାଚ୍ଛନ୍ଦ୍ୟ ଓ ଶାସକଙ୍କର ସୁବିଚାର ଭୋଗ କରୁଥିଲେ ।

ଆମର ଅବସ୍ଥା କଅଣ ଥିଲା ଓ ବର୍ତ୍ତମାନ କଅଣ ହୋଇଛି ? ଆଜି ଭାରତର ସମସ୍ତ ଭାଷାଭାଷୀ ଲୋକଙ୍କଠାରୁ ବି ଓଡ଼ିଆ ଅତ୍ୟଧିକ ଅବହେଳିତ ଅବସ୍ଥାରେ ପଡ଼ିରହିଛି । ଭାରତରେ ଇଂରେଜ ରାଜତ୍ୱର ଆରମ୍ଭର ବହୁବର୍ଷ ପରେ ଓଡ଼ିଶା ରାଜ୍ୟରୁ ଖଣ୍ଡେ ଖଣ୍ଡେ କରି ଇଂରେଜମାନେ ହସ୍ତଗତ କରି ଓ ସେ ଅଞ୍ଚଳ ସବୁକୁ ପଡ଼ୋଶୀ ପ୍ରଦେଶମାନଙ୍କର ପଦାନତ ଅଞ୍ଚଳରେ ପରିଣତ କରିଥିଲେ । ନଅଙ୍କ ଦୁର୍ଭିକ୍ଷରେ ଓଡ଼ିଆଙ୍କ ମେରୁଦଣ୍ଡ ଭାଙ୍ଗି ସେମାନଙ୍କୁ ଦରିଦ୍ରତମ ଜାତିରେ ପରିଣତ କରିଛନ୍ତି । ଆପଣମାନେ ଜାଣନ୍ତି ଏଇ କିଛିବର୍ଷ ତଳେ ଓଡ଼ିଶାରେ ପୁଣି ଏକ କରାଳ ଦୁର୍ଭିକ୍ଷ ପଡ଼ିଲା, ପୁରୀଜିଲ୍ଲାର ଉତ୍ତର ଅଞ୍ଚଳ ସବୁଠାରୁ ବେଶି ବିପଦର ସମ୍ମୁଖୀନ ହୋଇଥିଲା । ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ତାଙ୍କର ସହକର୍ମୀମାନେ ସେଠାରେ ପ୍ରାଣପାତ କରି ସେବାକାର୍ଯ୍ୟ କରୁଥିଲେ ।

ସେତିକିବେଳେ ଓଡ଼ିଆ ବୋଲି ଗୋଟିଏ ଜାତି ଅଛି ଓ ସେ ଅତ୍ୟନ୍ତ ଦୁର୍ଦ୍ଦଶାଗ୍ରସ୍ତ ବୋଲି ସାବରମତୀ ଆଶ୍ରମରେ ମହାତ୍ମାଗାନ୍ଧିଙ୍କ କାନରେ ପଡ଼ିଲା । ମହାତ୍ମାଗାନ୍ଧି ତାଙ୍କ ସହକର୍ମୀଙ୍କୁ ଓଡ଼ିଶା ପଠାଇ ଏଠାର ଖବର ବୁଝିବାପରେ, ମହାଭାରତୀୟ ରାଜନୀତି ସ୍ରୋତରେ ଯୋଗଦେବାପାଇଁ କଂଗ୍ରେସ ସଂଗଠନର ଶାଖା ଗଢ଼ିବାକୁ ପଣ୍ଡିତ ଗୋପବନ୍ଧୁଙ୍କୁ ଅନୁରୋଧ କଲେ । ସେ ସମୟରେ ଉତ୍କଳ ଗୌରବ ମଧୁସୂଦନଙ୍କ ନେତୃତ୍ୱରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରିବାକୁ ପ୍ରଚାର କରିବାପାଇଁ ଉତ୍କଳ ସମ୍ମିଳନୀ ଥିଲା ଏକମାତ୍ର ଅନୁଷ୍ଠାନ । ଗୋପବନ୍ଧୁ ଓ ଆମପରି ତାଙ୍କର ସହକର୍ମୀମାନେ ଓଡ଼ିଆଙ୍କ ଭିତରେ ପ୍ରାଣ ସଞ୍ଚାର କରିବାକୁ ଲାଗିପଡ଼ିଥିଲୁ ।

ଗାନ୍ଧିଙ୍କ ଅନୁରୋଧ ପରେ ଓଡ଼ିଆଙ୍କ ଦୁଃଖ ବର୍ଣ୍ଣନା କରି ଗୋପବନ୍ଧୁ ତାଙ୍କ ନିକଟକୁ ଲେଖିଲେ—ଇଂରେଜ ସରକାର ଭାରତର ଶେଷ ସ୍ୱାଧୀନ ଜାତି ଓଡ଼ିଆଙ୍କର ଅଣ୍ଟା ଭାଙ୍ଗିଦେଇଛନ୍ତି । ଏବେ ଓଡ଼ିଆଙ୍କର ବାପ ମା' ବୋଲି କେହିନାହିଁ । ଓଡ଼ିଆଙ୍କର ସ୍ୱତନ୍ତ୍ରତା ନାହିଁ । ପଡ଼ୋଶୀମାନେ ବି ତାଙ୍କ ତଣ୍ଟି ଚପୁଛନ୍ତି । ଏ ଅବସ୍ଥାରେ ଶିରୋନାସ୍ତି—

ହିଁରେବ୍ୟଥା ପର ସେମାନେ କପର ଜାତୀୟ କଂଗ୍ରେସରେ ମିଶିବେ ଓ ମିଶିଲେ ବା ଗୋଟିଏ କବନ୍ଧ ଜାତି ଭାରତ ପାଇଁ କ ଯୁଦ୍ଧ କରପାରବ ?

ତା'ପରେ ଜାତୀୟ କଂଗ୍ରେସ କଅଣ ତାହାସଙ୍ଗେ ପରିଚତ ହେବାପାଇଁ କଲକତା ଯାଇ ସେଠାରେ ବସୁଥିବା କଂଗ୍ରେସର ବଶେଷ ଅଧିବେଶନରେ ଗୋପବନ୍ଧୁ ଯୋଗଦେଲେ । ସେହି ବର୍ଷ ପୁଣି ନାଗପୁରରେ ଜାତୀୟ କଂଗ୍ରେସର ଅଧିବେଶନ ବସିଲା । ସେଥିରେ ଗୋପବନ୍ଧୁ ଭାଷା ଭିତ୍ତିରେ ପ୍ରଦେଶଗଠନ ବଷୟରେ ତାଙ୍କର ସୁଚନ୍ତିତ ଯୋଜନା ମହାତ୍ମାଗାନ୍ଧିଙ୍କୁ ବୁଝାଇ ତାଙ୍କୁ ନଜ ସଙ୍ଗେ ଏକମତ କଲେ । ବଚ୍ଛିନ୍ନ ଅଞ୍ଚଳ ସିଂହଭୂମି ଗଞ୍ଜାମ କୋରାପୁଟ ତରଲା ମଞ୍ଜୁଷା ପ୍ରଭୃତ ଅଞ୍ଚଳ ମିଶାଇ ଗୋଟିଏ ଉତ୍କଳ କଂଗ୍ରେସ ଗଢ଼ାହେବାପାଇଁ ଜାତୀୟ କଂଗ୍ରେସଦ୍ୱାରା ଗୋଟିଏ ପ୍ରସ୍ତାବ ପାଶ୍‌ହେଲା । ଗୋପବନ୍ଧୁ ଓଡ଼ିଶାକୁ ଫେରଆସି ଅମମାନଙ୍କୁ ଧର ଓଡ଼ିଶାରେ କଂଗ୍ରେସର ମୂଳଦୁଆ ସ୍ଥାପନ କଲେ । ଅସହଯୋଗ ଆନ୍ଦୋଳନରେ ଅମର ପ୍ରିୟ ଅନୁଷ୍ଠାନ ସତ୍ୟବାଦୀ ସ୍କୁଲର ଶିକ୍ଷକ ଓ ଛାତ୍ର-ମାନେ ପୂର୍ଣ୍ଣପ୍ରାଣରେ ଝାସଦେଇଥିଲେ । ଅହିଂସା ସଂଗ୍ରାମ ବାଟରୁ ଛାଡ଼ି ଯେ ଅନ୍ଦୋଳନ ଗାନ୍ଧିଙ୍କ ନୀତ ବରୁଦ୍ଧ ହିଂସା ଅନ୍ଦୋଳନଆଡ଼କୁ ମୁହାଁଇବାରୁ ସେ ଅନ୍ଦୋଳନ ସ୍ଥଗିତ ରଖିବାକୁ ଗାନ୍ଧି ନର୍ଦ୍ଦେଶ ଦେଲେ । ତେଣୁ ସବୁ ପ୍ରଦେଶପର ଓଡ଼ିଶାରେ କଂଗ୍ରେସ ଅବସ୍ଥା ମଧ୍ୟ ସଙ୍କଟଜନକ ଅବସ୍ଥାରେ ପଡ଼ିଥିଲା । ଗୋପବନ୍ଧୁ ତାଙ୍କର ସାପ୍ତାହିକ ସମ୍ବାଦପତ୍ର 'ସମାଜ'ଟିକୁ ଚଳୁରଖିବା ପାଇଁ ଲଲା ଲଜପତ ରାୟଙ୍କଦ୍ୱାରା ପ୍ରତଷ୍ଠିତ ସେବାସଂସ୍ଥା ଲୋକସେବକ ମଣ୍ଡଳରେ ଅଜୀବନ ସଭ୍ୟରୂପେ ଯୋଗଦେଲେ ଓ ବନ୍ୟା ମରୁଡ଼ି ଦୁର୍ଗତ ଅଞ୍ଚଳରେ ପୁଣି ସେବାକାର୍ଯ୍ୟ ଚଳାଇଲେ । କର୍ମୀ ପୁରୁଷ ଗୋପବନ୍ଧୁ, ଦେଶରେ ନଷ୍କ୍ରିୟତାର ବାତାବରଣ ଦେଖି କଂକର୍ତ୍ତବ୍ୟବମୂଢ଼ ହୋଇଗଲେ । ସେହି ଦେଶପ୍ରାଣ ମହାମନୀଷୀଙ୍କର ନୈରାଶ୍ୟ ଅନ୍ଧକାର ଭିତରେ ୧୯୨୮ ଖ୍ରୀଷ୍ଟାବ୍ଦରେ ମହାପ୍ରୟାଣ ଘଟିଛୁ ।

କଂଗ୍ରେସ ପୁଣି ସ୍ୱାଧୀନତା ଶପଥ ଗ୍ରହଣକର ଏଇ ୧୯୩୦ ଜାନୁୟାରୀ ଛବଶ ତାରଖକୁ ସ୍ୱାଧୀନତା ଦବସ ରୂପେ ପାଳନ କରବାକୁ ନର୍ଦ୍ଦେଶ ଦେଇଛନ୍ତି । ଆମ୍ଭମାନଙ୍କୁ ଏକଜୁଟ ହୋଇ ଏ ଶପଥ ଗ୍ରହଣ କରବାକୁ ହେବ । ଏବେ ଆମର ସାରଥୀ ପୁଣ୍ୟାତ୍ମା ଗୋପବନ୍ଧୁ ଆମକୁ ନେତୃତ୍ୱ ଦେବାକୁ ଆଉ ଇହଜଗତରେ ନାହାନ୍ତି; କନ୍ତୁ ଓଡ଼ିଆ ଜାତୀୟ ବୋଇତର ମଙ୍ଗଧାରୀ ଜଗନ୍ନାଥ ଅଛନ୍ତି । ସେ ଆମକୁ ସତ୍‌ପଥରେ ଚଳାଇ ଏଥର ନଶ୍ଚୟ ଜୟଯୁକ୍ତ କରାଇବେ । ଜଗନ୍ନାଥଙ୍କ ନାମ ସ୍ମରଣ କର ଭାରତର ସ୍ୱାଧୀନତା ପାଇଁ ଆମର ଆବାଳ ବୃଦ୍ଧବନତାଙ୍କୁ ସ୍ୱାଧୀନତା ଶପଥ ନେବାକୁ ପଡ଼ିବ । ଦେଶପାଇଁ ନର୍ଭୀକ ଭାବରେ ଆତ୍ମବଳ ଦେବାପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ଭାରତବାସୀଙ୍କ ଭୀରୁତା ଓ ପରସ୍ପର ଭିତରେ କଳହର ସୁବିଧାନେଇ ମୁଷ୍ଟିମେୟ ଇଂରେଜ ଏ ଦେଶରେ ଗାଦିମାଡ଼ି ବସି ବରାଟ ଜନତା ଉପରେ ଅତ୍ୟାଚ୍ଚାର ଚଳାଇଛନ୍ତି । ଏ ଦେଶର ଲୋକଙ୍କ ମନରୁ ଭୀରୁତା ଦୂରହେଲେ ଓ ଲୋକେ

ନିଜର ଅଧିକାର ଏବଂ କ୍ଷମତା ପ୍ରତି ସଚେତନ ହୋଇ ପୁଣି ଏକାଠି ହେଲେ ଇଂରେଜ ଶାସକଙ୍କୁ ଲଙ୍ଗୁଡ଼ ଜାକି ଏଦେଶ ଛାଡ଼ି ପଳାଇଯିବାକୁ ଡେରି ସମ୍ଭବ ନାହିଁ ।

ସେଥିପାଇଁ ଆମ କଂଗ୍ରେସ ଅନୁଷ୍ଠାନର ନେତୃବର୍ଗ ଲୋକଙ୍କ ଭିତରେ ଆତ୍ମବିଶ୍ୱାସ ସୃଷ୍ଟି କରି ସରକାରୀ ଭୟ ଦୂର କରାଇବା ପାଇଁ ଏ ଶପଥ ପାଠର ନିର୍ଦ୍ଦେଶ ଦେଇଛନ୍ତି । ସରକାର ଲାଠି ଓ ବନ୍ଧୁକ ମୂନରେ ଲୋକଙ୍କୁ ଭୟଭୀତ କରାଇ ସ୍ୱରାଜ୍ୟ ପ୍ରାପ୍ତି ଉଦ୍ୟମକୁ ପଣ୍ଡ କରିଦେବାକୁ ଦୃଢ଼ପ୍ରତିଜ୍ଞ । ଲୋକେ ସେ ସବୁକୁ ନଡ଼ରି ପୂର୍ଣ୍ଣ ପ୍ରାଣରେ ଆତ୍ମବଳି ଦେଇପାରିଲେ 'ସ୍ୱରାଜ' ନିଶ୍ଚୟ ମିଳିବ ।

ସଭାରେ ସମସ୍ତେ ନୀରବରେ ବସି ପ୍ରଚାରକଙ୍କ ବାର୍ତ୍ତା ଶୁଣୁଥିଲେ । ଭିକାରିବାବୁ ଚୈତିଆଡ଼କୁ ଆଖି ବୁଲାଇ ଦେଖିଲେ, ପଦନବାବୁ ଓଠକାମୁଡ଼ି ମୁଣ୍ଡ୍ ହଲେଇ ହଲେଇ ହସୁଛନ୍ତି । ପିଲମାନଙ୍କ ଭିତରୁ କେତେକ ଭାବବିହ୍ୱଳ ହୋଇ ସେମାନଙ୍କ ମୁହଁ ନାଲି ପଡ଼ିଯାଇଛି । ସେମାନଙ୍କ ଭିତରେ ତାଙ୍କର ପୁଅ ନବକୁମାର ସବୁଠାରୁ ବେଶି ଭାବ-ବିହ୍ୱଳ ହେଲାପରି ଜଣାଯାଉଥିଲା ।

ସଭା ସରିବା ସଙ୍ଗେ ସଙ୍ଗେ ତାଙ୍କର ସାରଗର୍ଭକ ବକ୍ତୃତାର ଭୂୟସୀ ପ୍ରଶଂସା କରିବାପରେ ପ୍ରଚାରକଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କରି ପଦନବାବୁ ସ୍କୁଲରୁ ନିଜ ଘରଆଡ଼କୁ ଯାତ୍ରା କଲେ । ଘରକୁ ଯିବାବେଳେ ତାଙ୍କ ପାଦଦୁଇଟି ସିଧାରାସ୍ତାରେ ଗତି ନକରି ଟିକିଏ ବଙ୍କେଇ ଯାଇ ପୋଲିସ ଦାରୋଗାଙ୍କ ଘରେ ପହଞ୍ଚିଲା । ଦାରୋଗା ବାବୁଙ୍କ କାନରେ ଫୁସ୍ ଫୁସ୍ କରି କିଛି ମନ୍ତ୍ର ଫୁଙ୍କିବା ପରେ ତାଙ୍କ ଗୋଡ଼ ଠିକ୍ ରାସ୍ତାରେ ନିଜ ଘର ଆଡ଼କୁ ମୁହାଁଇଲା । ଦାରୋଗାବାବୁ ପ୍ରଚାରକଙ୍କୁ ଅଭ୍ୟର୍ଥନା କରି ପୋଲିସଥାନାକୁ ଆଣିବା ପାଇଁ କନେଷ୍ଟବଳଙ୍କ ସଙ୍ଗେ ପରାମର୍ଶ କଲେ ।

ସଭାରୁ ଆସି ପ୍ରଚାରକ ଗ୍ରାମବାସ ବାରଣ୍ଡାରେ ବସିଲେ । କେତେକ ଛାତ୍ର ତାଙ୍କ ଚାରିପଟେ ଘେରିଯାଇ କେତେ କଅଣ ପ୍ରଶ୍ନ ପଚାରିବାକୁ ଲାଗିଲେ । ସବୁଠାରୁ ବେଶି ପ୍ରଶ୍ନ ହେଲା ଗାନ୍ଧିଙ୍କ ଉପରେ—ସେ କିପରି ଲୋକ ? କଅଣ ପଢ଼ିଛନ୍ତି ? ସେ କେତେ ଉଚ୍ଚ ? ସେ କହିଲେ କାହିଁକି ଆନ୍ଦୋଳନ ଆରମ୍ଭ ହେଉଛି ଓ ମନାକରିଦେଲେ କିପରି ଆନ୍ଦୋଳନ ବନ୍ଦ ହେଇ-ଯାଉଛି ? ତାଙ୍କୁ ଦେଖିହେବ କି ନାହିଁ ? ସେ କେବେ ସେ ଗାଆଁକୁ ଆସିବେ ?...ଇତ୍ୟାଦି ।

ପ୍ରଚାରକ ଗୋଟି ଗୋଟି କରି ପ୍ରଶ୍ନର ଉତ୍ତର ଦେଉଥାଆନ୍ତି ଓ ପିଲଙ୍କ ପିଠି ଆଉଁସୁଥାଆନ୍ତି । ପିଲମାନେ ତନ୍ମୟ ହୋଇ ଶୁଣୁଥାଆନ୍ତି । ଗୋଟିଏ ପିଲାକୁ ପଛରୁ କିଏ କଅଣ ଶିଖେଇଦେଲା । ସେ ଆଗକୁ ଆସି ପ୍ରଚାରକଙ୍କୁ କହିଲା—ଆପଣ ତ କହିଲେ ଇଂରେଜ ପଳାଇଗଲେ ରାମ ରାଜ୍ୟ ହେବ—ଏ ଦେଶର ଲୋକେ ନିଜେ ରାଜା ହେବେ—ଯଦି ମୋ ବାପା ରାଜା ହୁଅନ୍ତି, ତାହେଲେ କାହା କଥା ଶୁଣି କଅଣ ରାମଙ୍କ ପରି ସେ ମୋ ବୋଉକୁ ଘରୁ ବାହାରକରି ବଣକୁ ତଡ଼ିଦେବେ ? ନିରୀହ ନିର୍ବୁଦ୍ଧିଆ ପିଲାଟିର ସରଳ ଶିକ୍ଷାହୋଇଥିବା କଥାରେ ସମସ୍ତେ ଠୋ ଠୋ ହୋଇ ହସିଉଠିଲେ । ଏହି ସମୟରେ ଦୁଇଜଣ ନାଲି

ପଗଡ଼ିଧାରୀ ପୋଲିସ ଆସି ତାଙ୍କ ପାଖେ ପହଞ୍ଚିଲେ । ସେମାନେ ପ୍ରଚାରକଙ୍କୁ ସାନ୍ଧ୍ୟ ନିତ୍ୟକର୍ମ ବା ଜଳପାନର ସୁବିଧା ନ ଦେଇ ସଙ୍ଗେ ସଙ୍ଗେ ସେମାନଙ୍କ ସହିତ ଥାନାକୁ ଯିବାପାଇଁ ନିର୍ଦ୍ଦେଶ ଦେଲେ ।

ଥାନାକୁ ଆସିବାପରେ ଦାରୋଗାବାବୁ ତାଙ୍କୁ ଏଣୁ ତେଣୁ ପଚରାପଚରି କଲେ । କୋମଳମତି ବାଳକମାନଙ୍କ ମନରେ ରାଜଦ୍ରୋହର ବୀଜ ରୋପଣ କରିବା ଅଭିଯୋଗର ଶାସ୍ତି ସ୍ୱରୂପ ସେ ସ୍ଥାନ ସଙ୍ଗେ ସଙ୍ଗେ ଛାଡ଼ି ଚାଲିଯିବାପାଇଁ ଆଦେଶ ଦେଲେ । ତାଙ୍କୁ ଟିକିଏ ଦୂର ସ୍ଥାନରେ ଛାଡ଼ିଆସିବା ପାଇଁ ତାଙ୍କ ସଙ୍ଗରେ ସେଇ କନେଷ୍ଟବଲ ଦୁଇଜଣଙ୍କୁ ପଠାଇଲେ । ଅହିଂସାବାଦୀ ପ୍ରଚାରକ ବିନା ଆପତ୍ତିରେ ଖାଲି ପେଟରେ ହସି ହସି ସେ ସ୍ଥାନ ଛାଡ଼ି ଚାଲିଗଲେ ।

ସେହିଦିନଠାରୁ ସ୍କୁଲ ଓ ଭିକାରି ମାଷ୍ଟ୍ରଙ୍କ ଉପରେ ସରକାରଙ୍କର କ୍ରୂର ଦୃଷ୍ଟି ପଡ଼ିଲା । ଜମିଦାର ଓ ଅନ୍ୟାନ୍ୟ କାର୍ଯ୍ୟକାରୀ କମିଟି ମେମ୍ବରମାନଙ୍କୁ ଗୋପନରେ ତାଗିଦ କରିଦିଆଗଲା ।

ଦୁଇ ତିନିଦିନ ପରେ ଜଣେ ଉଚ୍ଚ ରାଜକର୍ମଚାରୀ ଆସି ସ୍କୁଲ ପ୍ରାଙ୍ଗଣରେ ଆଉ ଗୋଟିଏ ସଭା କଲେ । ସେ ମହାମାନ୍ୟ ବ୍ରିଟିଶ ସମ୍ରାଟଙ୍କ ଅମଳରେ ଭାରତର କି କି ଉନ୍ନତି ହୋଇଛି ତାହା ବର୍ଣ୍ଣନା କରି ଓ ସରକାରଙ୍କର ପ୍ରଶଂସା ଗାନକରି ଗୋଟିଏ ଦୀର୍ଘ ବକ୍ତୃତା ଦେଲେ । ଭାରତବାସୀ ପୂର୍ବେ ମହରଟ୍ଟା ଓ ମୋଗଲମାନଙ୍କ ଅଧୀନରେ କିପରି ଦୁଃଖରେ ଥିଲେ ଓ ବ୍ରିଟିଶ ସରକାର ଲୋକଙ୍କୁ କିପରି ସୁଖସ୍ୱାଚ୍ଛନ୍ଦ୍ୟରେ ରଖିଛନ୍ତି, ସେ ବିଷୟ ବଖାଣି ସାରିବାପରେ ପିଲାମାନେ ପ୍ରଚାରକଙ୍କ ପରି ବାଉଳିଆ ମାଗିଖିଆ ରାଜଦ୍ରୋହୀମାନଙ୍କ କଥା ନଶୁଣି ନିଜ ପାଠରେ ମନ ଦେଇ ବଡ଼ ବଡ଼ ହାକିମ ହେବାପାଇଁ ଉପଦେଶ ଦେଲେ । ସେ ସବୁକଥା ପିଲାମାନେ କାନକୁ ନନେଇ ପ୍ରଚାରକଙ୍କୁ ଝୁରି ହୋଇ ଚୁପଚାପ ହେବାରୁ ଅଫିସର ରାଗିଯାଇ ଭିକାରିବାବୁଙ୍କୁ କଟମଟ କରି ଚାହିଁବା ପରେ ସଭା ଛାଡ଼ି ଉଠିଗଲେ । ପିଲାମାନଙ୍କର ଦେଶର ଐତିହ୍ୟ କଥା ଭାବି ଦେଶପାଇଁ ପ୍ରାଣ ଦେବାପାଇଁ ଶପଥ ନେବାକୁ ମନ ଅସ୍ଥିର ହେଉଥିଲା । ସେମାନେ ଅଫିସରଙ୍କ ପଛରେ ସେ ଜଣେ ସରକାରଙ୍କର ଗୋଡ଼ାଣିଆ ଚାକର ବୋଲି କୁହାକୁହି ହୋଇ ତାଳିମାରି ସଭା ଛାଡ଼ି ନିଜ ନିଜ ଘରକୁ ବା ଛାତ୍ରାବାସକୁ ଚାଲିଗଲେ ।

ଭିକାରି ମାଷ୍ଟ୍ରେ ନୀରବରେ ସବୁ ଦେଖିଶୁଣି ଘରକୁ ଗଲେ । ରାତିଯାକ ଭାବି ଭାବି ଜାତି ପାଇଁ ପ୍ରାଣବଳି ଦେବା ଉଦ୍ଦେଶ୍ୟରେ ନିଜର ଭବିଷ୍ୟତ କାର୍ଯ୍ୟପନ୍ଥା ସ୍ଥିର କରିବାକୁ ଚିନ୍ତା କଲେ । ପରଦିନଠାରୁ ସ୍ଥାନୀୟ ଲୋକଙ୍କୁ ନିଜ ଚିନ୍ତାରେ ପ୍ରଭାବିତ କରିବାକୁ ଉଦ୍ୟମ କଲେ । ତାଙ୍କ କଥାରେ କେତେକ ମାଷ୍ଟ୍ର ଓ ସ୍ଥାନୀୟ ଲୋକ ମଧ୍ୟ ଏକମତ ହୋଇ ପ୍ରଚାରରେ ଲାଗିଲେ । କଂଗ୍ରେସ ବାର୍ତ୍ତା ଗାଁ ଗାଁ ହୋଇ ପ୍ରଚାର ହେବାରେ ସେ ଗାଁର ଲୋକମାନେ ସରକାରଙ୍କ ବିରୁଦ୍ଧରେ ମେଳି ବାନ୍ଧିବାକୁ ଚେଷ୍ଟାକଲେ ।

ସରକାରୀ ଗୁପ୍ତ ପୋଲିସମାନେ ଗାଁ ଗାଁ ବୁଲି ସମ୍ବାଦ ଦେବାପରେ ସରକାରୀ କର୍ମଚାରୀମାନେ ଗୋପନରେ ଅସ୍ତ୍ର ମେଳ ବାନ୍ଧିବାର ସମ୍ଭାବନା ଥିବା ଗ୍ରାମମାନଙ୍କରେ ରାତି ଅଧରେ ନିଆଁ ଲଗାଇ ଦେଇ ଗାଁସବୁ ଧ୍ୱଂସ କଲେ। ଅଳ୍ପଦିନ ଭିତରେ, ୧୯୩୦ ମାର୍ଚ୍ଚ ମାସରେ, ଧୀରେ ଧୀରେ ଜମୁଥିବା ବନ୍ୟାଜଳ ଉଚ୍ଛୁଳିପଡ଼ି ନଦୀବନ୍ଧ ଡେଇଁ ପ୍ରବାହ ସୃଷ୍ଟି କଲାପରି ସରକାରଙ୍କ ବିରୁଦ୍ଧରେ ଜାତହୋଇଥିବା ପ୍ରତିହିଂସା ଦେଶସାରା ସତ୍ୟାଗ୍ରହ ପ୍ରବାହ ସୃଷ୍ଟି କଲା।

ସାବରମତୀ ଆଶ୍ରମରୁ ସମ୍ପୂର୍ଣ୍ଣ ଅସହଯୋଗ ଓ ଲୁଣମରା ସତ୍ୟାଗ୍ରହ ଆନ୍ଦୋଳନର ଡାକରା ଦେଇ ସ୍ୱରାଜ୍ୟ ନହେବା ପର୍ଯ୍ୟନ୍ତ ଆଉ ସେ ଆଶ୍ରମକୁ ଫେରିବେ ନାହିଁ ବୋଲି ଶପଥକରି ମାର୍ଚ୍ଚ ବାର ତାରିଖ ଦିନ ଗୁଜୁରାଟର ଦାଣ୍ଡିଗ୍ରାମ ନିକଟରେ ଲୁଣମରା ଆନ୍ଦୋଳନର ଶୁଭଦେବାପାଇଁ ମହାତ୍ମାଗାନ୍ଧି ପଦଯାତ୍ରା ଆରମ୍ଭ କଲେ। ଏପ୍ରିଲ୍ ୬ ତାରିଖରେ ଦାଣ୍ଡି ଉପକୂଳରେ ସେ ଲବଣ ଆଇନ ଭଙ୍ଗ କଲେ। ଦେଶସାରା ସେ ବାର୍ତ୍ତା ବିଜୁଳି ପରି ଖେଳିଗଲା। ଭିକାରି ବାବୁ ଆଉ ଥୟ ଧରି ପାରିଲେ ନାହିଁ। କେତେକ ସହକର୍ମୀଙ୍କୁ ଧରି ଲୁଣମରାରେ ଯୋଗଦେବାପାଇଁ କାକଟପୁର ନିକଟ ଅସ୍ତରଙ୍ଗଠାରେ ପହଞ୍ଚିଥିଲେ। ସେଠାରେ ନୀଳକଣ୍ଠଙ୍କ ନେତୃତ୍ୱରେ ଲୁଣମରା ଆରମ୍ଭ ହୋଇଥିଲା। ଭିକାରିବାବୁ ସେଠାରେ ପ୍ରଚାରକ ଅନନ୍ତଙ୍କୁ ଭେଟି ତାଙ୍କ ନିର୍ଦ୍ଦେଶରେ କାମ କରିବେ ବୋଲି ଯାଇଥିଲେ।

ସେ ସେଠାରେ ପହଞ୍ଚିଲାବେଳକୁ ପଣ୍ଡିତ ନୀଳକଣ୍ଠ ଓ ପ୍ରଚାରକ ଅନନ୍ତଙ୍କୁ, ପୋଲିସ ଧରିନେଇଥିଲେ। ଜଗନ୍ନାଥ ରଥ, ସତ୍ୟବାଦୀ ନନ୍ଦ, ଦୁଃଖୀଶ୍ୟାମ ଦାସ, ଲାଲବିହାରୀ ଦାସ ଓ ତାଙ୍କ ଦୁଇଭାଇ ବଙ୍କିମ ଗୋଲକ ପ୍ରଭୃତି ଶହ ଶହ ସତ୍ୟାଗ୍ରହୀ କାରାବରଣ କରିସାରିଥିଲେ। ସେଠାରେ ପୋଲିସଙ୍କର ନିର୍ମମ ଅତ୍ୟାଚାର ଚାଲିଥିଲା। ଲୁଣମରା ଆଟିକା ଫିଟିବାଠାରୁ ଲୋକଙ୍କ ଉପରେ ଲାଠିଚାଳନା ପ୍ରଭୃତି ଚାଲିଲେ ମଧ୍ୟ ଲୋକଭିଡ଼ କମୁନଥିଲା। ଜଣେ ନେତା ବା ଲୁଣମରା ସର୍ଦ୍ଦାର ପୋଲିସ ଦ୍ୱାରା ଗିରଫହେଲେ ସେ ନିଜ ବେକରୁ ଫୁଲମାଳଟି କାଢ଼ି ଅନ୍ୟ ଜଣଙ୍କ ବେକରେ ପକାଇଦେଇ ତାଙ୍କୁ ସଂଗ୍ରାମ ଚଳାଇ ରଖିବା ପାଇଁ ନିର୍ଦ୍ଦେଶ ଦେଇ କାରାବରଣ କରୁଥିଲେ।

ପୋଲିସ ଲାଠିରେ ମୁରାରି ତ୍ରିପାଠୀଙ୍କ ଶ୍ରୀମୁଖାନ୍ତ ସବୁ ଝର୍ଣ୍ଣି ରକ୍ତ ବୋହୁଥିଲା, ସେ ସେଥିକୁ ଖାତିରି ନ କରି ଜାତୀୟ ପତାକା ଧରି ବେକରେ ଫୁଲମାଳ ପକାଇ ଲୁଣ ମାରିବାପାଇଁ ନିର୍ଦ୍ଦେଶ ଦେଉଥିଲେ। ପୋଲିସ ମୁରାରି ବାବୁଙ୍କୁ ଗିରଫ କଲା। ଦର୍ଶକଙ୍କ ଭିତରୁ ଭିକାରି ବାବୁଙ୍କ ଉପରେ ମୁରାରିଙ୍କ ଆଖି ପଡ଼ିଲା। ସେ ତାଙ୍କୁ ଡାକି ତାଙ୍କ ହାତରେ ପତାକାଟି ଧରାଇଦେଲେ ଓ ବେକରୁ ଫୁଲମାଳଟି କାଢ଼ି ତାଙ୍କୁ ପିନ୍ଧାଇ ଦେଇ 'ମହାତ୍ମା ଗାନ୍ଧି କି ଜୟ', 'ଭାରତ ମାତା କି ଜୟ' ଧ୍ୱନି ଦେଇ ପୋଲିସ ପଛରେ ହାତକଡ଼ା ପିନ୍ଧି ଚାଲିଲେ।

ଭିକାରି ବାବୁ ଜଣେ ସାଧାରଣ ନୂତନ କର୍ମୀ ଭାବରେ ଲୁଣମରା ଆନ୍ଦୋଳନରେ ଯୋଗଦେବାକୁ ଆସୁଆସୁ ତାଙ୍କ ଉପରେ ନେତୃତ୍ୱର ଗୁରୁ ଦାୟିତ୍ୱ ପଡ଼ିଲା । କୁରୁପାଣ୍ଡବ ଯୁଦ୍ଧରେ ପ୍ରତିଦିନ ପାଇଁ ସେନାପତି ବଚ୍ଛାହେଲା ପରି ପରଦିନ ଲୁଣମରା ଆନ୍ଦୋଳନର ଯୋଜନା କରିବା ଭାର ତାଙ୍କ ଉପରେ ପଡ଼ିଲା । ଲୁଣମରା ହାଣ୍ଡି ଅଟିକା ଭଙ୍ଗାହୋଇ ପଡ଼ିଥାଏ । କର୍ମୀମାନେ ଧରାହୋଇଯାଉଥାଆନ୍ତି । ସେମାନଙ୍କୁ ଯେଉଁ ଗାଁ ବାଟେ ନିଆ ଯାଉଥାଏ, ସେଠାରେ ସେମାନେ ଅଭ୍ୟର୍ଥନା ପାଉଥାଆନ୍ତି । ହୁଳହୁଳି ଓ ସଂଗ୍ରାମର ଜୟଧ୍ୱନିରେ ମେଦିନୀ ଫାଟିପଡ଼ୁଥାଏ ।

ଭିକାରି ବାବୁ ଅସ୍ଥାୟୀ କ୍ୟାମ୍ପକୁ ଫେରିଲେ । ଗୁଡ଼ୁଁ ଗୁଡ଼ୁଁ କ୍ୟାମ୍ପଟି ପୁଣି ନୂଆ ନୂଆ ସ୍ତ୍ରୀ, ପୁରୁଷ ଓ ବାନରସେନା ସତ୍ୟାଗ୍ରହୀରେ ପୂରିଉଠିଲା । ପରଦିନ ସତ୍ୟାଗ୍ରହ ପାଇଁ ହାଣ୍ଡି ଅଟିକା, ଅଣକେ, କାଠ, ଡିଆସିଲି ପ୍ରଭୃତି ଯୋଗାଡ଼ ହୋଇ ରହିଲା ।

ସେ ରାତିରୁ ଉଠି ସତ୍ୟାଗ୍ରହୀ କର୍ମୀମାନଙ୍କୁ ଓ ଲୁଣମରା ସରଞ୍ଜାମ ଧରି ଗୋଟିଏ ନୂଆ ସ୍ଥାନରେ ଲୁଣମାରିବାପାଇଁ ପଦଯାତ୍ରା ଆରମ୍ଭ କଲେ । ବାଟରେ ଲୋକେ ସେମାନଙ୍କୁ ଜୟଧ୍ୱନି ଓ ହୁଳହୁଳି ସହିତ ଅଭ୍ୟର୍ଥନା କରି ସେମାନଙ୍କ ମୁଣ୍ଡରେ ସିନ୍ଦୂର ଟୋପା ଓ ବେକରେ ଫୁଲମାଳ ପିନ୍ଧାଇଦେଲେ । ଭିକାରି ବାବୁ ସାହସର ସହିତ ଲୁଣମରା କାର୍ଯ୍ୟ ତୁଲାଇ ପୋଲିସର ହାତକଡ଼ି ପିନ୍ଧିଲେ ।

## ଚାରି

ବନ୍ଦୀ ହେବା ପରେ ଭିକାରି ବାବୁଙ୍କର କେତେକ ସହକର୍ମୀ, ଯେଉଁମାନେ ପୋଲିସ କବଳରୁ ଖସିଥିଲେ, ସେମାନେ ସଙ୍ଗଠନକରି ଆନ୍ଦୋଳନକୁ ବ୍ୟାପକ କରିବାପାଇଁ ମୁଠେ ମୁଠେ ଲୁଣମରା ଲୁଣ ଧରି ଗାଁକୁ ଲେଉଟିଲେ ।

ଦେଶସାରା ଇସ୍କୁଲମାନଙ୍କ ଅବସ୍ଥା ଟଳମଳ ହେଲା । ଗୁଡ଼ୁଁ ଗୁଡ଼ୁଁ ଆନ୍ଦୋଳନ ବିରାଟ ଆକାର ଧରିଲା । ପିଲାଏ ପାଠ ଛାଡ଼ି ବାନରସେନାରେ ଯୋଗ ଦେଇ ଲୁଣମରା ଲୁଣ ଆଣି ବିକି ସତ୍ୟାଗ୍ରହୀଙ୍କ ପାଇଁ ଚାନ୍ଦା ସଂଗ୍ରହ କଲେ । ପୋଲିସଥାନା ଓ ସରକାରୀ ଅଫିସ ଉପରୁ ବ୍ରିଟିଶ ପତାକା ଟାଣି ତା ସ୍ଥାନରେ ଜାତୀୟ ପତାକା ଉଡ଼ାଇଲେ । କଚେରୀ କୋର୍ଟ ପ୍ରଭୃତିରେ ପଶି ହାକିମ ଆସିବା ପୂର୍ବରୁ ହାକିମଙ୍କ ଚଉକି ଅଧିକାର କଲେ । ହାକିମ ଓ କର୍ମଚାରୀମାନେ ସେ ଘରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଗୋଲାମି ପାଇଁ ଦେଶଦ୍ରୋହୀ ବୋଲି ଦଣ୍ଡାଦେଶଦେଲେ ।

ସେ ବେଳର କଥା, ବାନରସେନା ମଦ ଗଞ୍ଜେଇ ଦୋକାନ ଆଗରେ ପିକେଟିଙ୍ଗ୍ କରୁଥିଲେ । ବିଦେଶୀ ଜିନିଷ ପୋଡ଼ି, ସେ ସବୁ ନ କିଣିବା ପାଇଁ ଲୋକଙ୍କୁ ଅନୁରୋଧ କରୁଥିଲେ । ପୋଲିସମାନେ ବାନରସେନାଙ୍କୁ ସେ ସବୁ ସ୍ଥାନରୁ ଉଡ଼ାନେଇ ନିଷ୍ଠୁର ଭାବରେ ବେତାଘାତ କରନ୍ତି । ହାତରେ, ଗୋଡ଼ରେ, ପିଠିରେ ନୋଳାବସି ,ଦେହସାରା ଫାଟିଯାଉ ଥାଏ । ଆଖିରୁ ଝର ଝର ଲୁହ ବୋହି ପଡ଼ୁଥାଏ; କିନ୍ତୁ ତାଙ୍କର ପାଟି ବନ୍ଦ ହେଉ ନ ଥାଏ । ସେମାନେ 'ମାର, କେତେ ବେତ ତୁମେ ମାରିବ' ବୋଲି ଗୀତ ବୋଲୁଥାଆନ୍ତି । ବେତମାଡ଼ ପରେ ସେମାନଙ୍କୁ ଦିନଯାକ ଖିଆ ଉପାସରେ ଅଟକ ରଖି ରାତିହେଲେ କେହି ନ ଦେଖିବା ଭଳି ସେମାନଙ୍କୁ ଲୁଚାଇକରି ନେଇ ଦୂର ଅପରିଚିତ ସ୍ଥାନରେ ବା ଜଙ୍ଗଲରେ ଛାଡ଼ିଦେଇ ଆସୁଥାଆନ୍ତି । ସେମାନେ ଖିଆ ଓପାସ ନମାନି, ସ୍ୱାଧୀନତା ସଙ୍ଗୀତ ଗାଇ ଗାଇ ସହରକୁ ଫେରିଲେବେଳେ ବାଟରେ ଲୋକମାନେ ସେମାନଙ୍କ ଘାଆରେ ଔଷଧ ବୋଳିଦିଅନ୍ତି, ଖାଇବାକୁ ଆଣିଦିଅନ୍ତି । ସେମାନେ ସହରକୁ ଲେଉଟି ପୁଣି ସତ୍ୟାଗ୍ରହ ଆରମ୍ଭ କରନ୍ତି । ସେମାନଙ୍କୁ ବେତ ମାଡ଼ରେ ଜବତ କରିନପାରିଲେ ବା ଥରକୁ ଥର ସେମାନେ ଲେଉଟି ଆସିଲେ ତାଙ୍କୁ ବନ୍ଦୀ କରି କାରାଗାରକୁ ପଠାଇବାର ବ୍ୟବସ୍ଥା ହୁଏ ।

ସତ୍ୟାଗ୍ରହୀ ବାନରସେନା ସହରରେ ପିକେଟିଂ କରିବା ଛଡ଼ା, ଗାଆଁ ଗଣ୍ଡା ସହର ମଫସଲ ବୁରିଆଡ଼େ ଜାତୀୟ ସଙ୍ଗୀତ ବୋଲି ପ୍ରଚାର କରି ବୁଲୁଥିଲେ । ଦିନକୁ ଦିନ ଶହ ଶହ ପିଲା ସ୍କୁଲ କଲେଜ ଛାଡ଼ି ତାଙ୍କ ସଂଖ୍ୟା ବଢ଼ାଉଥିଲେ । ଜଣ ଜଣ କରି ନାନା ଜାତୀୟ ସଙ୍ଗୀତ ବୋଲି ଲୋକଙ୍କୁ ଉଦ୍‌ବୁଦ୍ଧ କରୁଥିଲେ । ସେମାନଙ୍କ ଭିତରୁ ଜଣେ ଯଦି ବୋଲେ—

କିଏ ଜାଣିଥିଲା ଏତେ କୁଟିଳତା ଅଛି ଏ ବିଦେଶୀ ଶାସନେ
ଜାଣିଥିଲେ ଅବା ବସାଇଆନ୍ତି କି ଆପେ ତାକୁ ରାଜ ଶାସନେ···

ସେ ଗୀତ ବନ୍ଦ ହେଲାବେଳକୁ ଆଉ ଜଣେ ହୁଏତ ବୋଲେ—

ଦେଶ ପଞ୍ଚାୟତ ଆଦେଶ ଦେଇଛି ଆଜି ଶୁଭଦିନ ଭାଇ,
ସ୍ୱାଧୀନତା ଯୁଦ୍ଧ ଆରମ୍ଭ ଆଜିଠୁ ଚାରିଆଡ଼େ ଦେଖ ଚାହିଁ,
ସ୍ୱାଧୀନେ ଉଡ଼ନ୍ତି କାକପକ୍ଷୀମାନେ
ସ୍ୱାଧୀନେ ଭାସନ୍ତି ଜଳଦେହେ ମୀନେ
ବଣ ବାଘ ଭାଲୁ ଜନମୁ ସ୍ୱାଧୀନ ସ୍ୱାଧୀନତା କାହିଁ କାହିଁ ?
ସ୍ୱାଧୀନ ରୁଷିଆ ସ୍ୱାଧୀନ ଜାପାନ
ସ୍ୱାଧୀନ ଚୀଇନା ଆନ ଦେଶମାନ
କେ ପୁରାଣେ ଲେଖା ଆମେ ରହିଥିବା ଚିର ପରାଧୀନ ହୋଇ ।

ସ୍ୱାଧୀନତା ଯୁଦ୍ଧ ଥରେ ଆରମ୍ଭିଲେ
ଶକତ କାହାର କିଏ ଭାଙ୍ଗିପାରେ
ମରଣ ଆସନ ଟଳମଳ ହୁଏ ମାନବ ତ ଛାର ତହିଁ ।

ଗାନ୍ଧି ମହାତ୍ମାଙ୍କ ଜୟଧ୍ୱନି ସହିତ ପୁଣି ବୋଲହୁଏ—

ଶୟନେ ସ୍ୱପନେ କିବା ଜାଗରଣେ ସେଇ ଗାନ୍ଧିକଥା ଭାବୁଛୁ
କି କୁହୁକ କଲ ସଭିଙ୍କୁ ଟାଣିଲ ବଡ଼ ଆଚମ୍ବିତ ଲାଗୁଛି,
ଦୋତାଲି ଉପରେ ବିଳାସରେ ଶୋଇ
ଅଳସରେ ଧମି ମାରୁଥିଲେ ହାଇ
କେତେ ଚିତ୍ତରଞ୍ଜନ ଯୋଡ଼ା ମାଡ଼ଖାଇ ଜୀବନକୁ ଦେଇ ମରୁଛନ୍ତି ।
ମେଘ ଘଡ଼ଘଡ଼ି ଶୁଣିଲେ ପଡ଼ଇ
ଲାଲ ପଗଡ଼ିକୁ ଦେଖିଲେ ଡରଇ
ସେଇ ଗୃହୀ ଆଜି ଗୃହବାସ ଛାଡ଼ି ତୋପ ମୁହେଁ ଝାସ ଦେଉଛନ୍ତି ।
କୁଳ ଭୂଆସୁଣୀ ସ୍ୱାମୀ ପୁଅ ଛାଡ଼ି
ଯାଉ ଯେ ନ ଥିଲେ ଘରୁ ଗୋଡ଼ କାଢ଼ି
ଦିନ ଦ୍ୱିପହରେ ସମୁଦ୍ର କୂଳରେ ଲୁଣ ପାଇଁ କାଠ ଭାଙ୍ଗୁଛନ୍ତି ।
କେତେ ଭବ ଆଶା ଯୁବକ ମନରେ
ବନ୍ଧ ଯୋଖୁଥାଏ ଅତି ସରାଗରେ
ପିତା ମାତା ଛାଡ଼ି, ପରୀକ୍ଷାକୁ ଛାଡ଼ି ଦେଶ ପାଇଁ ପ୍ରାଣ ଦେଉଛନ୍ତି ।
ଶୟନେ ସ୍ୱପନେ କିବା ଜାଗରଣେ ସେଇ ଗାନ୍ଧିକଥା ଭାବୁଛୁ ।

ରାମ ରାବଣ ଯୁଦ୍ଧରେ କୁମ୍ଭକର୍ଣ୍ଣ ନିଦରୁ ଉଠି ଦୁଇ ହାତରେ ଗୋଟାଇ ଶହ ଶହ ବାନରଙ୍କୁ ପାଟିରେ ଭର୍ତ୍ତିକଲାବେଳକୁ ସେମାନେ ଯେପରି ନାକ କାନ ବାଟେ ପଳାଇଆସି ପୁଣି ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଉଥିଲେ, ସେହିପରି ମାଡ଼ ଗାଳି ଓ ଜେଲ ଭୋଗ ପରେ ସେମାନେ ଫେରିଆସି ପୁଣି ସତ୍ୟାଗ୍ରହରେ ଯୋଗଦେଇ ସରକାରଙ୍କ ବିରୁଦ୍ଧରେ ଗୀତ ଗାଇ ନିଶା ଦୋକାନ ଆଗରେ ପିକେଟିଙ୍ଗ୍ କରନ୍ତି ।

ଭୁଲନା ଭୁଲନା ଭାଇ ଭରିଲଣି ସବୁ ଜେଲଖାନା ହେ, ଭାଇ ଭୁଲନା ଭୁଲନା,
ଚୋର ଡକାୟତ ଛାଡ଼ପାଉଛନ୍ତି ଜାଗା ନାହିଁ ରଖିବାକୁ ହେ
ଦେଶପ୍ରେମୀ ଦଳ ମହାପାପୀ ଯେଣୁ କଡାପିଠା ଯୋଗ ତାଙ୍କୁ ହେ
ନ୍ୟାୟବନ୍ତ ସରକାର, ଖୋଲିଛନ୍ତି ଶୁଣି କାରବାର ହେ
ନିଶା ଦୋକାନରେ ହାକିମ ଡାକନ୍ତି ମଦୁଆଙ୍କୁ ବାଟ ଛାଡ଼ ହେ
ମଦ ଖାଇବାରେ ବାଧା ଦେବ ଯେହୁ ଭାଗ୍ୟେ ତାର ବେତ ମାଡ଼ ହେ

ବୁଦ୍ଧି ହୋଇଲାଣି ବଣା, ଦାଣ୍ଡେ ମହତ ପଡ଼ୁଛି ଜଣା ହେ
ନ୍ୟାୟବନ୍ତ ସରକାର ମେଲଛନ୍ତି ଶୁଣି କାରବାର ହେ
ଘରେ ଭୁଲନା ଭୁଲନା ଭରିଲାଣି ସବୁ ଜେଲଖାନା ହେ, ଭୁଲନା ଭୁଲନା ।

ସେଇ ସଙ୍ଗୀତକୁ ତାଳଦେଇ ଜେଲ ଫେରନ୍ତା ସତ୍ୟାଗ୍ରହୀମାନେ ଜେଲ ଭିତରେ ସ୍ୱାଧୀନତା ସଂଗ୍ରାମୀ ବନ୍ଦୀମାନଙ୍କୁ ସରକାର କିପରି ବ୍ୟବହାର କରନ୍ତି ଓ କି ଖାଦ୍ୟ ଦିଅନ୍ତି, ତାହା ବର୍ଣ୍ଣନା କରି ଗୀତ ବୋଲନ୍ତି—

ନ୍ୟାୟବନ୍ତ ସରକାର ମେଲଛନ୍ତି ଶୁଣି କାରବାର ହେ
ବାରଟା ବେଳରେ ଘଣ୍ଟା ବାଜିଗଲେ ନାହାରେ ଆସଇ ଭାତ
ମାଣେ ମାଣେ ଭାତ ପରଶିଲାବେଳେ ଥରୁଥାଏ ତାଙ୍କ ହାତ ହେ
ଚାରିଟାବେଳରେ ଘଣ୍ଟା ବାଜିଗଲେ ଗହମ ଗୋଟିକଡ଼ ରୁଟି
କଲମ୍ବିସାଗରୁ ମେଞ୍ଚାଏ ଦିଅନ୍ତି ତାକୁ ଖାଇ ଆମେ ଖୁସି ହେ
ଜେଲ ବଗିଚାରେ ପରିବା ନମିଳେ ଖାଇବାକୁ ଦ୍ୟନ୍ତି ମୂଳା
ମୂଳା ଖାଇ ଖାଇ ଶୂଳା ବାହାରିଲେ ଔଷଧ ଦିଅନ୍ତି ଜଡ଼ା ହେ
ନ୍ୟାୟବନ୍ତ ସରକାର, ମେଲଛନ୍ତି ଶୁଣି କାରବାର ହେ ।

ବାନର ସେନାଙ୍କ କୋମଳ କଣ୍ଠରେ ଏସବୁ କରୁଣ ଜାତୀୟ ସଙ୍ଗୀତ ଓ ଇଂରେଜ ସରକାରଙ୍କର ଅହିଂସ ସତ୍ୟାଗ୍ରହୀଙ୍କ ଉପରେ ଚାଲିଥିବା ନିର୍ମମ ଦମନଲୀଳା ସମଗ୍ର ଦେଶର ପାଣି ପବନକୁ ତତାଇବାରେ ଲାଗିଲା ।

× × ×

ଭିକାରି ବାବୁଙ୍କ ସହକର୍ମୀମାନଙ୍କଠାରୁ ସେ ବନ୍ଦୀ ହୋଇଯିବା ସମ୍ବାଦ ପହଞ୍ଚିବା ସଙ୍ଗେ ସଙ୍ଗେ ସେ ଅଞ୍ଚଳରେ ଚହଲ ପଡ଼ିଯାଇଥିଲା । ତାଙ୍କ ଉପରେ ହୋଇଥିବା ଜୋରିମାନା ଆଦାୟ କରିବାକୁ ପୋଲିସ ଆସି ତାଙ୍କ ଘର କୋରଖଜାରି, ଜିନିଷପତ୍ର ସବୁ ଏଣେତେଣେ ଫୋପଡ଼ାଫୋପଡ଼ି କରିବା ପରେ, ଗାଈବାଛୁରୀଙ୍କୁ ଗୁହାଳରୁ ଫିଟାଇ ଅଡ଼ାଇ ଅଡ଼ାଇ ନେଇ ଚାଲିଗଲେ । ଏ ଘଟଣା ଜଳନ୍ତା ନିଆଁରେ ଘିଅ ଢାଳିଲାପରି କାମ କଲା । ସତ୍ୟାଗ୍ରହ ବାର୍ତ୍ତା ଚହୁଁ ଚହୁଁ ପବନ ପରି ସେ ଗାଆଁର ଚାରିପଟେ ଖେଳିଗଲା ।

ସେ ସ୍କୁଲ ପିଲାମାନେ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ପିଲାମାନେ ସ୍କୁଲ ଓ ଘର ଛାଡ଼ି ବାନରସେନାରେ ଯୋଗଦେଲେ । ଭିକାରି ବାବୁଙ୍କର ଦୁଇଟିଯାକ ପୁଅ ନବକୁମାର ଓ ସୂର୍ଯ୍ୟକୁମାର ତାଙ୍କର ରୁଗ୍ଣା ମାତାଙ୍କ ଗୋଡ଼ତଳେ ମୁଣ୍ଡିଆମାରି ବାନରସେନାରେ ଯୋଗ ଦେବାପାଇଁ ତାଙ୍କ ଆଶୀର୍ବାଦ ମାଗିଲେ । ମାଆ ରୋଗଶଯ୍ୟାରେ, ସାହା ଭରସା କେହି ନାହିଁ । ତାଙ୍କ ଆଖି ଛଳଛଳ ହୋଇଗଲା । କିନ୍ତୁ ନିଜ ବୁକୁର ଦୁଃଖକୁ ଚାପିରଖି ସେ ଆଶୀର୍ବାଦ କରି କହିଲେ—"ତୁମର ଓ ତୁମ ବାପାଙ୍କର କାର୍ଯ୍ୟସିଦ୍ଧି ପାଇଁ ଜଗନ୍ନାଥେ ସାହା ହୁଅନ୍ତୁ—ତୁମମାନଙ୍କର ମଙ୍ଗଳ ହେଉ ।"

ଦୁଇଭାଇଯାକ ଦୁଇଟି ବାନରସେନା ଦଳର ନେତୃତ୍ୱ ନେଲେ । ନବକୁମାର ଜାତୀୟପତାକା ହାତରେ ଧରି ପଟୁଆରର ଆଗେ ଆଗେ ଗୀତ ଗାଇ ଗାଇ ଚାଲିଲେ—

ରେ ପତାକା, ଜାତିର ଗରବ, ଜାତିର ଜୀବନ ପରାଣ ତୁହିରେ
ଏକତା ପୀରତି ଶାନ୍ତି ମୂରତି ସୁନ୍ଦର ତୋହର ସମାନ କାହିଁରେ
ଅରେ ଯେ ଜାଗିଛୁ ଜାତୀୟତା ସାଧୁ
ଚାଖିଁଚ ଯେ ଅରେ ସ୍ୱାଧୀନତା ମଧୁ
ପାଶିଛୁ ଦେବାକୁ ଜୀବନ ଯୌବନ ମାନ ସନମାନ-ବାସନା ନୋହିରେ ।

ତୋହରି ଲାଗି କେତେ କାରାଗାର, ବରିଲେ ମରିଲେ ସମର ଭୂଇଁରେ
ତୋହରି ଲାଗି କେତେ ଯେ ସମର ଲାଗିଛୁ ଜାଗିଛୁ କୀରତି ଅମର
ଧନ୍ୟ ଧନ୍ୟ ତୁହି ତିନରଙ୍ଗିଆରେ
ରଖିଛୁ ସଙ୍କଟେ ସୁଖ ସଙ୍ଗିଆରେ
'ଚରଖା' ଦରିଦ୍ର ସେବା ଅବତାର ବକ୍ଷରେ ତୋହର-ନମୁଁଛୁ ପଦ୍ମରେ ।

ପଛେ ପଛେ ସର୍ବାକୁମାରଙ୍କ ଦଳ ବୋଲିଲେ—

ବ୍ରହ୍ମଅସ୍ତ୍ର ଅଟେ ଆଇନ ଅମାନ୍ୟ ଲୁଣମରି ପାଶୁପତ ତ
ଗାଣ୍ଡିବ ଅଟଇ 'ନେହେରୁ' ରିପୋର୍ଟ ଅହିଂସା ଆମରି ବ୍ରତ ତ
ଭାଇ 'ଗାନ୍ଧିପରି' ଆମ ସାରଥି 'ପଟେଲ' କପିକେତନ ଅଟନ୍ତି ।

ପିଲାଏ ପଟୁଆର କରି ଜାତୀୟସଙ୍ଗୀତ ଗାଇ ଗ୍ରାମ ପରିକ୍ରମା କରିସାରି ବଜାର ମୁଣ୍ଡକୁ ଗଲାବେଳକୁ ସେ ଆଡ଼ୁ ପୋଲିସଦଳ ସେମାନଙ୍କ ଆଡ଼କୁ ମାଡ଼ି ଆସୁଥିବାର ଦେଖିଲେ । ପଦନ ବାବୁଙ୍କ ସୂତ୍ରରୁ ଘନ ଘନ ଖବର ପାଇ ପୋଲିସ ଫୌଜ ପିଲାମାନଙ୍କୁ ଜବତ କରିବାପାଇଁ ଆସୁଥିଲେ । ପିଲାମାନେ ସେମାନଙ୍କୁ ଖାତିର ନକରି ଆଗକୁ ଆଗକୁ ଚାଲୁଥିବାର ଦେଖି ପୋଲିସମାନେ ପଟୁଆର ଚାରିପଟେ ଘେରିଯାଇ ପିଲାମାନଙ୍କୁ ଅଟକାଇଦେଲେ । ପିଲାଏ ଅଟକିଲେ ମଧ୍ୟ ସ୍ୱାଧୀନତା ଧ୍ୱନି ବନ୍ଦ ହେଲାନାହିଁ ।

ଜଣେ ପୋଲିସ ଅଫିସର ପିଲାମାନେ ଆନ୍ଦୋଳନରେ ଯୋଗନଦେଇ ପାଠପଢ଼ାରେ ମନ ଦେବାକୁ ବୁଝାଇବାରେ—"ତୁମେ ସବୁ ଗୋରା ସରକାରଙ୍କ ବୁଲୁଗୁଡ଼ୁହା, ଶିଖି ମନାଇ, ବିଶ୍ୱାସଘାତକ", "ତୁମେ ଚାକିରି ଛାଡ଼ି ଆମ ସଙ୍ଗେ ଆନ୍ଦୋଳନରେ ଯୋଗଦିଅ" ବୋଲି ପିଲାଏ ପାଟିକଲେ ।

ପୋଲିସମାନେ ପିଲାଙ୍କ ହାତରୁ ଜାତୀୟ ପତାକା ଛଡ଼ାଇବାକୁ ଚେଷ୍ଟାକଲେ । ମୁଠା, ଗଣ୍ଠିକୁ ବାଡ଼ିରେ ଠୁକିଲେ । ହାତ ଛଣ୍ଡି ରକ୍ତବୁହା ହେବା ପର୍ଯ୍ୟନ୍ତ ପିଲାଏ ହାତରୁ ପତାକା ଛାଡ଼ୁନଥିଲେ ।

ସେଠାରୁ ଚାଲିଯିବାକୁ ପିଲାଙ୍କୁ ଆଦେଶ ଦିଆଗଲା । କିନ୍ତୁ ସେ ସ୍ଥାନ ପରିତ୍ୟାଗ କରିବା ସମସ୍ତେ ସେଇଠାରେ ଠିଆହୋଇ ସଂଗ୍ରାମର ଜୟଧ୍ୱନି ଦେବାକୁ ଲାଗିଲେ । ଧମକ ଓ ବେତ୍ରାଘାତ ମଧ୍ୟ କିଛି କାମ ଦେଲାନାହିଁ । ଜୟଧ୍ୱନିର ଜୋର୍ ବେଳକୁବେଳ ବଢ଼ିବାକୁ ଲାଗିଲା । ଶେଷରେ ହାକିମଙ୍କ ଆଦେଶରେ ପୋଲିସମାନେ ନବକୁମାର, ସୂର୍ଯ୍ୟକୁମାର ଓ ଅନ୍ୟ କେତେକ ପିଲାଙ୍କୁ ଘୋଷାରି ଘୋଷାରି ନେଇ ବନ୍ଦୀ କଲେ ।

ଜମିଦାରଙ୍କ ପୁଅ ବସନ୍ତ ବଡ଼ ସୌଖୀନ ଥିଲା । ସେ କଟକରେ ରହି ପାଠପଢ଼େ । ଛାତ୍ରାବାସରେ ରହିଲେ ମଧ୍ୟ ତା' ପାଇଁ ପାଖଲଗା ଭାବରେ ସବୁବେଳେ ଗୋଟିଏ ଚାକର ବନ୍ଧା । କଟକରେ ଛାତ୍ର ସତ୍ୟାଗ୍ରହର ଗଣ୍ଡଗୋଳ ଲାଗିବାରୁ ଜମିଦାର ବସନ୍ତକୁ କଟକରୁ ଗାଁକୁ ଫେରାଇଆଣିଥିଲେ । ଗାଁରେ ପାଖଲୋକ ନିଜର କୌଣସି କାର୍ଯ୍ୟରେ ଅନ୍ୟ ସ୍ଥାନକୁ ଯାଇଥିଲା । ବସନ୍ତ ଏକୁଟିଆ ଯାଇ ସ୍କୁଲ ପାଖରେ ପହଞ୍ଚିଲା । ପିଲାଙ୍କ ଉତ୍ସାହ ଦେଖି ଓ ଜାତୀୟସଙ୍ଗୀତ ଶୁଣି ଗୋଠ ମାତିଲେ ଖଣ୍ଟିଆ ଘୋଡ଼ା ମାତିଲାପରି ସେ ତନ୍ମୟ ହୋଇ ପଟୁଆରରେ ମିଶିଗଲା ।

ଧରପଗଡ଼ ହେଲାବେଳକୁ ସେ ବୋକାଙ୍କପରି ସେଠାରେ ବଲବଲ କରି ଚାହିଁ ଠିଆହୋଇ ରହିଲା । ପୋଲିସ ଆଦେଶ ଅମାନ୍ୟ କରୁଥିବାର ଅଭିଯୋଗରେ ସେ ମଧ୍ୟ ଧରାହୋଇ ଥାନାକୁ ଗଲା । ପାଖଲୋକ ତାକୁ ଖୋଜି ଖୋଜି ଘଟଣାସ୍ଥଳରେ ଆସି ପହଞ୍ଚିଲା । ପୋଲିସ ତାକୁ ବାନ୍ଧିନେଇ ଯାଉଥିବାର ଦେଖି ତା' ହାଲୁକା ଶୁଖିଗଲା । ସେ ଭୋ ଭୋ କାନ୍ଦି ଘରକୁ ଲେଉଟିଯାଇ ଜମିଦାରଙ୍କ ଗୋଡ଼ତଳେ ଲମ୍ବିହୋଇ ପଡ଼ିଲା । ପୁଅ ଧରାହୋଇଯିବା ଖବରରେ ବିବ୍ରତ ହୋଇ ଜମିଦାର ପଦନ ବାବୁଙ୍କ ଦ୍ୱାରସ୍ଥ ହେଲେ । ପଦନ ବାବୁ ଥାନାକୁ ଯାଇ ଜମିଦାରଙ୍କ ତରଫରୁ ପୋଲିସକୁ ଅଣ୍ଟାଗୁଞ୍ଜାରେ ଖୁସି କରାଇ ବସନ୍ତକୁ କ୍ଷମାପ୍ରାର୍ଥନା ପତ୍ରରେ ଦସ୍ତଖତ କରାଇ ମୁକୁଳାଇଆଣିଲେ ।

ଜେଲ ହାଜତ ଭିତରେ ନବକୁମାର ପ୍ରଭୃତିଙ୍କର ଏକତରଫା ବିଚାର ଚାଲିଲା । ସତ୍ୟାଗ୍ରହୀମାନଙ୍କ ତରଫରୁ କେହି ଓକିଲ ବା ସାକ୍ଷୀ ଦିଆହେଉନଥିଲେ । କିଛି ପ୍ରଶ୍ନହେଲେ ସେମାନେ କେବଳ ସରକାର ବିରୋଧୀ ଧ୍ୱନିମାନ ଦେଉଥିଲେ । ସରକାରୀ ଓକିଲ ଜବାବ ସୁଆଲ କରି ବହୁତ ଗୁଡ଼ିଏ ଦଫାରେ ସେମାନଙ୍କୁ ଦୋଷୀ ସାବ୍ୟସ୍ତ କରାଇଲେ । ହାକିମ ଗମ୍ଭୀର ହୋଇ ସତରେ ନ୍ୟାୟ ବିଚାର ଚଷ୍ମାକୁ ଓକିଆଁରୁ ଗାଲି ପକାଇଲାପରି ଟେବୁଲ ଉପରୁ ପୁଛିଲେ ତାଙ୍କ ହାତଲେଖା କାଗଜ ଭିଡ଼ିଆଣି ପଢ଼ିଲେ ଓ ଶେଷରେ ସତ୍ୟାଗ୍ରହୀ-ମାନଙ୍କୁ ଦୀର୍ଘ କାରାଦଣ୍ଡ ଆଦେଶ ଦେଲେ । ତାଙ୍କ ରାୟ ଶୁଣିବା ପରେ ସତ୍ୟାଗ୍ରହୀଙ୍କ ଅଟ୍ଟହାସରେ ଘର ଭାଙ୍ଗିପଡ଼ିଲାପରି ଲାଗିଲା ।

ଜେଲ ଦଣ୍ଡ ମିଳିଲାପରେ ସେମାନେ ପାଟନା କ୍ୟାମ୍ପ ଜେଲକୁ ଚାଲାଣ ହେଲେ । ପୁରୁଣା ଜେଲ ସବୁ ଭରପୂର ହୋଇଯାଇଥିବାରୁ ଭାରତର ବହୁସ୍ଥାନରେ ପଡ଼ିଆ ମାନଙ୍କରେ କଣ୍ଟାତାରର ଘେର ଦିଆହୋଇ କ୍ୟାମ୍ପ ବା ଅସ୍ଥାୟୀ ଜେଲମାନ ତିଆରି

ହୋଇଥାଏ । ଦୁଇ ଲାଇନ କଣ୍ଟା ତାରର ଘେର, ତାର ଦୁଇପଟେ କଡ଼ା ପୁଲିସ ପହରା, ତା'ଛଡ଼ା ଘେର ଚାରିପଟେ ପୋଲିସ ଘୋଡ଼ାସବାର୍‌ମାନେ ବରାବର ପହଁରା ମାରୁଥାଆନ୍ତି ।

ହତା ଭିତରେ ଚାରଧେର୍ ଖୁଆଡ଼ମାନ ଥାଏ । ଖୁଆଡ଼ଗୁଡ଼ିକ ଟିଣବାଡ଼ ଦିଆ-ହୋଇଥିବା ଟିଣ ଛାଉଣୀ ଘର । ପ୍ରତ୍ୟେକ ଘରେ ୮୦।୯୦ ରାଜବନ୍ଦୀ ରହନ୍ତି । ପ୍ରତ୍ୟେକ ଖୁଆଡ଼କୁ ଗୋଟିଏ ଲେଖାଏଁ ଓ୍ୱାଡ଼ର୍ ଦିନରାତି ଜଗିରହିଥାନ୍ତି ।

ପାଟନା କ୍ୟାମ୍ପ ଜେଲଟି ସହରଠାରୁ ଟିକିଏ ଦୂର ଗୋଟିଏ ବାଲି ପଡ଼ିଆ ଉପରେ, ସେଥିରେ ପ୍ରାୟ ତିନି ଚାରି ହଜାର ବନ୍ଦୀଙ୍କୁ ରଖାଯାଇଥାଏ । ସେମାନଙ୍କ ପାଇଁ ରୋଷେଇ ଓ ଅନ୍ୟାନ୍ୟ କାର୍ଯ୍ୟ କରିବାକୁ ଆଉ ଦୁଇ ଶହ ସାଧାରଣ କଏଦୀ ଆଣି ରଖାଯାଇଥାନ୍ତି । କେବଳ ଓଡ଼ିଶାରୁ ସେଠାରେ ଏକ ହଜାରରୁ ଊର୍ଦ୍ଧ୍ୱ ରାଜନୈତିକ ବନ୍ଦୀଙ୍କୁ ରଖାଯାଇଥାଏ ।

ବନ୍ଦୀମାନଙ୍କୁ ପିନ୍ଧିବାକୁ ଖଣ୍ଡେ ହାପ୍‌ପେଣ୍ଟ, ହାତକଟା ଜାମା ଓ ଖାଇବାକୁ ଦୈନିକ ନଅ ପଇସାର ଆହାର ମିଳେ । କିନ୍ତୁ ସମସ୍ତ ହେଲେ ମଧ୍ୟ ସେ ନଅ ପଇସାର ଖାଦ୍ୟ ଅଫିସର ଓ କଣ୍ଟ୍ରାକ୍ଟରଙ୍କ ହାତଦେଇ ବନ୍ଦୀମାନଙ୍କ ନିକଟରେ ଆସି ପହଞ୍ଚିଲାବେଳକୁ ବଡ଼ ଦୀନ ଅବସ୍ଥାରେ ପହଞ୍ଚୁଥାଏ । ପୁଷ୍ଟିକାରକ ଗୁଣ ପ୍ରାୟ ହରାଇବସିଥାଏ । ସେ ଖାଦ୍ୟ ପୁଣି ଏକାପ୍ରକାର ହୋଇ ଓଡ଼ିଆ, ବିହାରୀ, ବଙ୍ଗାଳୀ ସମସ୍ତଙ୍କୁ ଯୋଗାଇଦିଆଯାଏ । ସେ ସାରହୀନ ଓ ସ୍ୱାଦୁହୀନ ଖାଦ୍ୟକୁ ରୁଚି ନଥିଲେ ମଧ୍ୟ ଜୀବନ ଧାରଣ ପାଇଁ ସମସ୍ତେ ଖାଇବାକୁ ବାଧ୍ୟ ହୁଅନ୍ତି ।

ଇଟା ପଥର ପାଚେରୀଘେରା ପୁରୁଣା ଜେଲ୍‌ମାନଙ୍କରେ ସାଧାରଣତଃ ବହୁ ସଂଖ୍ୟାରେ ଚୋର ଡକାୟତ ଥାଆନ୍ତି । କିନ୍ତୁ କେତେବେଳେ ରାଜନୈତିକ ବନ୍ଦୀ ଆସି ରହନ୍ତି । ସେମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ଓ ବ୍ୟବସ୍ଥା ଥାଏ । ପୁରୁଣା ଜେଲର କର୍ମଚାରୀ-ମାନେ ମଧ୍ୟ ଅଭିଜ୍ଞ । ସେମାନେ ଲୋକ ଦେଖି ବ୍ୟବହାର କରନ୍ତି । କ୍ୟାମ୍ପ ଜେଲ୍-ମାନଙ୍କର ପରିସ୍ଥିତି ଅଲଗା । ସେଠାରେ ଅଧିକାଂଶ ରାଜନୈତିକ ବନ୍ଦୀ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ କଥା ନଜେ ବୁଝନ୍ତି । ଜେଲ ଭିତର କଟକଣା ମଧ୍ୟ ବଡ଼ କୋହଳ । ଦିନରେ ବନ୍ଦୀଙ୍କର ଅବାଧ ମିଳାମିଶା ଓ ବୁଲାଚଲାକୁ କର୍ତ୍ତୃପକ୍ଷ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ । ଜେଲରୁ ମିଳୁଥିବା ଜିନିଷପତ୍ର ସେମାନଙ୍କ ନେତାମାନେ କର୍ତ୍ତୃପକ୍ଷଙ୍କଠାରୁ ଆଣି ନିଜ ଭିତରେ ବଣ୍ଟନ କରନ୍ତି । ରୋଷେଇ, ରୋଗୀସେବା, ପରିଷ୍କାର ପରିଚ୍ଛନ୍ନତା ପାଇଁ ବିଭିନ୍ନ କମିଟିମାନ ଗଢ଼ି ସେ ସବୁ ତଦାରଖ କରନ୍ତି । ବନ୍ଦୀମାନେ ନିଜ ନିଜ ଭିତରେ ନାନା ବିଷୟରେ ଆଲୋଚନା କରନ୍ତି । ବେଳେ ବେଳେ ଆଲୋଚନାର ତର୍କବିତର୍କ ମନ୍ତବ୍ୟରୁ ମନୋମାଳିନ୍ୟ ସୃଷ୍ଟି ହୋଇ ଗଣ୍ଡଗୋଳ ହୁଏ । ନାନା ମୁନିଙ୍କର ନାନା ମତ । ଏତେଗୁଡ଼ାଏ ଲୋକ, ତେଣୁ ମତ ପାର୍ଥକ୍ୟ ହେବା ସ୍ୱାଭାବିକ । ସମସ୍ତଙ୍କର ଭାବଧାରା, ପ୍ରକୃତି ଓ ଉଦ୍ଦେଶ୍ୟ ମଧ୍ୟ ସମାନ ନଥାଏ । ଅଧିକାଂଶ ଦେଶଭକ୍ତିରେ ସବୁ ସ୍ୱାର୍ଥ ଜଳାଞ୍ଜଳିଦେଇ କାରାବରଣ କରିଥାଆନ୍ତି ।

କୁହିଁକୁହିଁ ପ୍ରମ୍ଭୁତ ନହୋଇ କେବଳ ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଅନ୍ୟ-କେତେକ ଅସିଥାଆନ୍ତି । ସରକାରଙ୍କର ଗୁପ୍ତଚର ଖବରରେ ମଧ୍ୟ କେତେକ ଜେଲରେ ଥାଆନ୍ତି । ସେ ସବୁ ଛଡ଼ା ଦେଖଣାହାରୀ ବା ଆନ୍ଦୋଳନ ସଙ୍ଗେ କୌଣସି ସମ୍ପର୍କ ନଥିବା ଲୋକ ମଧ୍ୟ ପୋଲିସ ହାତରେ ଭିଡ଼ା ହୋଇ ମିଛ ସାକ୍ଷୀ ପ୍ରମାଣ ଫଳରେ ବନ୍ଦୀ ହୋଇଥାଆନ୍ତି ।

ଶେଷୋକ୍ତ ପ୍ରକାର ବନ୍ଦୀମାନଙ୍କ ମଧ୍ୟରେ ସୁଗତ ଦାସ ବୋଲି ଜଣେ ଲୋକ ଥାଆନ୍ତି । ସେ ଦିନରାତି କେବଳ ଘର ମନେପକାଇ କାନ୍ଦି କାନ୍ଦି ସମୟ କଟାଉଥାଆନ୍ତି । ସେ ସୈନ୍ୟ ବିଭାଗରେ ଜଣେ ସାମାନ୍ୟ ସୈନିକ ଭାବରେ କାର୍ଯ୍ୟ କରୁଥିଲେ । ତାଙ୍କର ହଠାତ୍ ବିବାହ ଠିକ୍ ହୋଇଯିବାରୁ ସେ ଦୁଇ ଶହ ଦିନ ଛୁଟିରେ ଆସି ବିବାହ କାର୍ଯ୍ୟ ସମ୍ପନ୍ନ କରି ସ୍ତ୍ରୀଙ୍କୁ ଘରେ ବାପମା'ଙ୍କ ପାଖେ ଛାଡ଼ିଦେଇ ସୈନ୍ୟ ଛାଉଣୀକୁ ଫେରିଯାଇଥିଲେ ।

ବର୍ଷକ ପରେ ବହୁ କଷ୍ଟରେ ମାସକ ପାଇଁ ଛୁଟି ନେଇ, ବନ୍ଧୁକଟିଏ କାନ୍ଧରେ ପକାଇ, ମନେ ମନେ ଗୁଣୁ ଗୁଣୁ ହୋଇ ସିନେମାର ପ୍ରେମ ଗୀତଟିଏ ବୋଲି ବୋଲି ମନରେ ନାନା ମଧୁର ସ୍ୱପ୍ନ ଧରି ଗ୍ରାମାଭିମୁଖେ ଚାଲିଥିଲେ । ବାଟରେ ଗୋଟିଏ ଗ୍ରାମର ଅନତି-ଦୂରରେ ପୋଲିସ ଗୋଟିଏ କଂଗ୍ରେସ ସଭା ଭାଙ୍ଗି ଛିନ୍ନଛତ୍ର ହୋଇ ଦଉଡ଼ି ପଳାଉଥିବା କେତେକ ଲୋକଙ୍କୁ ଲାଠି ଧରି ଗୋଡ଼ାଉଥିଲେ । ସୁଗତ ଷ୍ଟେସନରୁ ଓହ୍ଲାଇଲାବେଳେ ସୈନ୍ୟ ପୋଷାକ ରଖିଦେଇ ଲୁଗା ପଞ୍ଜାବୀ ପିନ୍ଧି ବ୍ରିଜ୍‌ଲାଟି କାନ୍ଧରେ ପକାଇ ଓ ବନ୍ଧୁକଟି ହାତରେ ଧରି ଆସୁଥିଲେ । ପୋଲିସବାଲା ବନ୍ଧୁକ ଦେଖି କିଛି ନବୁଝି ନଶୁଣି ତାଙ୍କୁ ବାଡ଼ିଏ ଦ'ବାଡ଼ି ପିଟିଦେଇ ପାରନ୍ତି ଭାବି ସେ ବ୍ରିଜ୍‌ଲାଟି ରାସ୍ତାକଡ଼ଆଡ଼କୁ ବୁଦା ଭିତରକୁ ଫୋପାଡ଼ିଦେଇ ଦଉଡ଼ିଯାଇ ଗୋଟିଏ ଗହଳିଆ ବୁଦା ପଛଆଡ଼େ ବସିପଡ଼ି ବନ୍ଧୁକଟିକୁ ଲୁଚାଇଦେଲେ । ପୋଲିସବାଲାଙ୍କ ଆଖି କିନ୍ତୁ ତାଙ୍କ ଉପରେ ପଡ଼ିସାରିଥିଲା । ସେମାନେ ଗୋଡ଼ାଉଥିବା ଲୋକକୁ ଛାଡ଼ି ବୁଦାମୂଳକୁ ଦଉଡ଼ିଯାଇ ବନ୍ଧୁକ ସହିତ ସୁଗତଙ୍କୁ ଧରିଲେ । ସୁଗତ ଯେତେ ଯାହା କହିଲେ ସେମାନେ ଶୁଣିଲେ ନାହିଁ । ଅହିଂସା ଆନ୍ଦୋଳନରେ ହିଂସା ମିଶୁଛି ବୋଲି ପ୍ରମାଣ କରି ଆନ୍ଦୋଳନକୁ ବନ୍ଦ କରାଇବା ପାଇଁ ସରକାର ସବୁବେଳେ ବାଟ ଖୋଜୁଥିଲେ । ସୁଗତ ଥାନାକୁ ଗଲାପରେ ତାଙ୍କଠାରୁ ସମସ୍ତ କାଗଜପତ୍ର ଛଡ଼ାଇ ନିଆଗଲା । ତାଙ୍କ ନାମରେ ମୋକଦ୍ଦମା ରୁଜୁ ହେଲା । ସେ ଯେତେ କାତର ହୋଇ କହିଲେ ଓ ନିଜର ନିର୍ଦ୍ଦୋଷତା ପ୍ରମାଣ କରିବାକୁ ଚେଷ୍ଟା କଲେ ସେ ସବୁକୁ ପୋଲିସ କି ହାକିମ କେହି ଗୁରୁତ୍ୱ ଦେଲେନାହିଁ, ତାଙ୍କ କାକୁତି ମିନତିର କିଛି ଫଳ ହେଲାନାହିଁ । ଅସହଯୋଗ ଆନ୍ଦୋଳନରେ ବନ୍ଧୁକ ବ୍ୟବହାର ପ୍ରମାଣ କରାଇପାରିଥିବାରୁ ଭବିଷ୍ୟତ ପ୍ରମୋସନର ଆଶା ସେମାନଙ୍କ ମନରେ ଗଜାଉଥିଲା । ସୁଗତଙ୍କୁ ଦୀର୍ଘ ସଶ୍ରମ କାରାଦଣ୍ଡ ମିଳିଲା । ସେ ଜେଲ ଭିତରେ କାଳିଦାସଙ୍କ 'ମେଘଦୂତ'ର ବିରହୀ ଯକ୍ଷ ଭଳି ହନ୍ତସନ୍ତ ହୋଇ କାଳଯାପନ କରୁଥିଲେ ।

ଦେଶୀ ପୋଲିସ ଉଚ୍ଚ କର୍ମଚାରୀମାନେ ଇଂରେଜ ସରକାରଙ୍କ ପ୍ରିୟଭାଜନ ହେବାକୁ ଆଙ୍ଗୁଠି ଦେଖାଇଲେ ବାହୁ ଗିଳି ଦେଲା ପରି କାର୍ଯ୍ୟ କରୁ କରୁ ଏପରି ଅନେକ କୌତୁହଳୋଦ୍ଦୀପକ କାର୍ଯ୍ୟ କରି ପକାଉଥିଲେ । ଦୃଷ୍ଟାନ୍ତ ସ୍ୱରୂପ—ପୁରୀର ଗୋରା କଲେକ୍ଟର ସ୍ୱାଧୀନତା ଆନ୍ଦୋଳନ ପାଇଁ ହେଉଥିବା ସଭାସମିତିମାନଙ୍କୁ ବେଆଇନ ଘୋଷଣା କରି ସେ ସବୁରେ ଯୋଗଦେଉଥିବା ସରକାରୀ କର୍ମଚାରୀ ଓ ସରକାରୀ ଅନୁଷ୍ଠାନର ଛାତ୍ରମାନଙ୍କୁ ରାଜଦ୍ରୋହୀ, ସତ୍ୟାଗ୍ରହୀ ବୋଲି ମନେକରି ସେମାନଙ୍କୁ ଚାକିରୀ ଓ ବିଦ୍ୟାନୁଷ୍ଠାନମାନଙ୍କରୁ ବହିଷ୍କୃତ କରି କଠୋର ଶାସ୍ତି ଦେବାପାଇଁ ନିର୍ଦ୍ଦେଶନାମା ଜାରିକରିଥିଲେ ।

ସେତେବେଳେ ପୁରୀ ଜିଲ୍ଲାରେ କଲେଜ ନ ଥିଲା । ପୁରୀ ଜିଲ୍ଲା ସ୍କୁଲ ଏକମାତ୍ର ସରକାରୀ ବିଦ୍ୟାନୁଷ୍ଠାନ ଥିଲା । ସେହି ସ୍କୁଲ ହତା ଆରପଟେ ସ୍ୱାଧୀନତା ଆନ୍ଦୋଳନ-କାରୀମାନଙ୍କର ଗୋଟିଏ ସଭା ହେଉଥିଲା । ସ୍କୁଲର ଖେଳଛୁଟିବେଳେ ତଳ ଶ୍ରେଣୀର କେତେଗୁଡ଼ିଏ ଗ୍ଲେଟ ଗ୍ଲେଟ ପିଲା କୌତୂହଳବଶତଃ ସେ ସଭା ଦେଖିବାକୁ ସ୍କୁଲ ପାଚେରି ଡେଇଁ ଚାଲିଗଲେ । ସେ କଥା ସ୍କୁଲର ହେଡ଼ମାଷ୍ଟରଙ୍କ କାନରେ ପଡ଼ିବାମାତ୍ରେ ସେ ସଙ୍ଗେ ସଙ୍ଗେ ରାଜଦ୍ରୋହ ଅପରାଧରେ ସେମାନଙ୍କୁ ସ୍କୁଲରୁ ବହିଷ୍କୃତ କରି ଉପସ୍ଥାନ ବହିରୁ ନାମକାଟି ଅଭିଭାବକମାନଙ୍କୁ ଜଣାଇଦେଲେ ।

ସେହିପରି ଗୋଟିଏ ପିଲାର ଅଭିଭାବକ ଅଜ୍ଞାନ ଶିଶୁଟିକୁ ଧରି କଲେକ୍ଟରଙ୍କ ସାହେବଙ୍କୁ ଭେଟିଲେ । ସାହେବ ସବୁ ଶୁଣିବାବେଳେ କନ୍‌କନ ହୋଇ ଏଣେ ତେଣେ ଚାହୁଁଥିବା କ୍ଷୁଦ୍ର ବାଳକଟିକୁ ନିରେଖି ନିରେଖି ଚାହୁଁଥିଲେ ।

ସେତେବେଳେ ପୁରୀ ସହରରେ ମାତ୍ର ପାଞ୍ଚ ଛଅଟି ମଟର ଗାଡ଼ି ଥିଲା । ଗୋରା କଲେକ୍ଟର, ପୁଲିସ ସାହେବ, ସିଭିଲ୍‌ସର୍ଜନଙ୍କ ଛଡ଼ା ଏମାର ମଠ ମହନ୍ତ ଓ ଜଣେ ଦୁଇଜଣ ଜମିଦାର ଓକିଲଙ୍କର ଖଣ୍ଡିଏ ଲେଖାଏଁ ଗାଡ଼ି ଛଡ଼ା ଆଉ ପ୍ରାୟ କାହାର ଗାଡ଼ି ନଥିଲା । ସାହେବ ପଛ ସିଟ୍‌ରେ ବାପ ପୁଅଙ୍କୁ ବସାଇ ନିଜେ ଗାଡ଼ି ଚଳାଇ ସ୍କୁଲ ଉଦ୍ଦେଶ୍ୟରେ ବାହାରି ପଡ଼ିଲେ । ସେତେବେଳେ ମୋଟର ଗାଡ଼ିରେ ରବର୍‌ର ରବର ହର୍ଣ୍ଣ ପରି ହାତଚପା ହର୍ଣ୍ଣ ବ୍ୟବହାର ହେଉଥିଲା । ସେଇଟିକି ଚିପିଲେ ପଅଁ, ପଅଁ ଶବ୍ଦ ହୁଏ । ସାହେବ ବାଟରେ, ଲୋକମାନେ ରାସ୍ତାରୁ ଘୁଞ୍ଚିବା ପାଇଁ ଥରେ ଦୁଇଥର ହର୍ଣ୍ଣ ବଜାଇଲେ । ସେ ଶବ୍ଦ ଶୁଣି ବାଳକଟି ପଛରୁ ଆଗସିଟ୍ ଆଡ଼କୁ ଉଧୁଁକି ପଡ଼ି ସାହେବଙ୍କ ଦେହରେ ହାତମାରି "ଆଉଟିକିଏ ପଅଁ, ପଅଁ, ଆଉଟିକିଏ" ବୋଲି ଅଳି କଲା । ସାହେବ ଅଳ୍ପ ହସି ଆଉ କେତେ ଥର ପଅଁ ପଅଁ କରିବା ପରେ ସ୍କୁଲରେ ଆସି ପହଞ୍ଚିଲେ ।

ସାହେବ ହେଡ଼ମାଷ୍ଟରଙ୍କୁ ଡକାଇ, ସେ ପିଲାଟିକୁ ଦେଖାଇ, ତା' ନାମ ସ୍କୁଲରୁ କାହିଁକି କଟାଗଲା ବୋଲି ପ୍ରଶ୍ନ କଲେ । ତାର ଉତ୍ତରରେ ହେଡ଼ମାଷ୍ଟର କହିଲେ, ହଁ ଆଜ୍ଞା—ସେ ଗୋଟିଏ

ଅବାଧ ବାଳକ । ସମସ୍ତ ବାରଣ ସତ୍ତ୍ୱେ ସେ ନିୟମ ନ ମାନି ପାଠେଣ୍ଟି ଛେଡ଼ି ସ୍ୱାଧୀନତା ଆନ୍ଦୋଳନକାରୀଙ୍କ ସଙ୍ଗେ ସଭାରେ ଯୋଗଦେଲେ ।

ହେଡ଼ମାଷ୍ଟରଙ୍କ କଥା ଶୁଣି ସାହେବ ହସି ହସି କହିଲେ—ଆପଣ ଗୋଟିଏ 'ମଟର ହର୍ଣ୍ଣ' ଆଣି ସ୍କୁଲରେ ରଖନ୍ତୁ । ସଭାବେଳେ ଆପଣଙ୍କ ଅଫିସରେ ବସି ସେ ହର୍ଣ୍ଣଟି ଚିପିଲେ ଏପରି ସତ୍ୟାଗ୍ରହୀମାନେ ଆଉ ସଭାକୁ ନଯାଇ ଆପଣଙ୍କ ଅଫିସରେ ଆସି ପଶିବେ । ତାହେଲେ ସେମାନଙ୍କ ନାମ କାଟିବାପରି କଷ୍ଟସାଧ୍ୟ କାର୍ଯ୍ୟ କରିବାକୁ ଆପଣଙ୍କୁ ଆଉ ପଡ଼ିବ ନାହିଁ ।

ପୂର୍ବୋକ୍ତ ବିଚିତ୍ରବନ୍ତ ହେଡ଼ମାଷ୍ଟରଙ୍କ ପରି ଅଫିସରଙ୍କ ଅନୁଗ୍ରହରୁ ସ୍କୁଲରୁ ବହିଷ୍କୃତ କେତେକ ପିଲା ବାଧ୍ୟ ହୋଇ ପିକେଟିଂ ପ୍ରଭୃତିରେ ଯୋଗଦେଇ ମଧ୍ୟ ଜେଲ ଭୋଗ କରୁଥାଆନ୍ତି ।

କେତେକ ଗୁଣ୍ଡାଶ୍ରେଣୀର ଲୋକ ମଧ୍ୟ ଆନ୍ଦୋଳନର ସୁବିଧାନେଇ ଅରାଜକତା ସୃଷ୍ଟି କରି ବିଦେଶୀ ବର୍ଜନ ନାମରେ ଦୋକାନପତ୍ର ଲୁଟକରି ନିଜର ଫାଇଦା ଉଠାଉ ଉଠାଉ ସେଥିରୁ କେତେକ ପୁଲିସ ଦ୍ୱାରା ଧରାପଡ଼ି ସତ୍ୟାଗ୍ରହୀ ଷ୍ଟାମ୍ପ ମରାହୋଇ ସତ ଦେଶପ୍ରେମୀଙ୍କ ସଙ୍ଗେ ଏକା ଭାବରେ ଜେଲରେ ଥାଆନ୍ତି ।

ହଠାତ୍ ପ୍ରବୃତ୍ତିରେ ମାତିଯାଇ ମୁହୂର୍ତ୍ତିକ ଉତ୍ତେଜନାରେ ଆନ୍ଦୋଳନରେ ଯୋଗଦେଇଥିବା ବନ୍ଦୀମାନେ ପରେ ଜେଲ ଭିତରେ ପଛକଥା ବିଚାରି ଅନୁତାପ କରୁଥାଆନ୍ତି । ଏହିସବୁ ପ୍ରକାରର ବନ୍ଦୀମାନଙ୍କ ମଧ୍ୟରେ ଶୃଙ୍ଖଳା ନଥାଏ । ସେମାନଙ୍କ ଭିତରୁ କେତେକ ରହିବା ଖାଇବା ପ୍ରଭୃତି ନେଇ ଓ ଅନ୍ୟାନ୍ୟ ଛୋଟ ଛୋଟ କଥାରେ ଜେଲ ଭିତରେ ଗଣ୍ଡଗୋଳ ସୃଷ୍ଟି କରନ୍ତି । ଏପରି ଗଣ୍ଡଗୋଳ ବେଳେ ବେଳେ ଭୀଷଣ ଆକାର ଧରି ଜେଲ କର୍ତ୍ତୃପକ୍ଷଙ୍କ ସଙ୍ଗେ ବଡ଼ ଧରଣର ଝଗଡ଼ାରେ ପରିଣତ ହୁଏ । କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶରେ ପୋଲିସ ଜେଲ ଭିତରେ ପ୍ରବେଶକରି ଲାଠିଚାଳନାଦ୍ୱାରା ଅବସ୍ଥା ଶାନ୍ତ କରନ୍ତି ।

## ପାଞ୍ଚ

କ୍ୟାମ୍ପ ଜେଲ୍‌ର ବନ୍ଦୀମାନଙ୍କ ଭିତରୁ ବଡ଼ଘରର ସୌଖୀନ ଭାବରେ ବଢ଼ିଥିବା ପିଲାସବୁ, ଜେଲ ଖାଦ୍ୟରେ ପୁଷ୍ଟିକର ପଦାର୍ଥ ଓ ଭିଟାମିନ୍ ଅଭାବ ଯୋଗୁ ଓ ସ୍ୱାଦୁହୀନ ଖାଦ୍ୟ ଖାଇବାର ଅଭ୍ୟାସ ନଥିବାରୁ, ଖାଦ୍ୟାଭାବଜନିତ ରୋଗରେ ଆକ୍ରାନ୍ତ ହେଲେ । ଜେଲଟି ଗୋଟିଏ ସନ୍ତସନ୍ତିଆ ବିଲ ମଝିରେ ହୋଇଥିବାରୁ ଓ ଭାଲ ଜର୍ଦ୍ଦମାରି ସ୍ୱାସ୍ଥ୍ୟପକ

ବ୍ୟବସ୍ଥା ନଥିବାରୁ ମଶା ମାଛି ଓ ଅନ୍ୟାନ୍ୟ କୀଟପତଙ୍ଗଙ୍କ ଉପଦ୍ରବ ଦିନକୁ ଦିନ ବଢ଼ୁଥାଏ । ଏହିସବୁ କାରଣରୁ ସଂକ୍ରାମକ ଓ କୀଟବାହିତ ରୋଗସବୁ ସେଠାରେ ନିର୍ବିଘ୍ନରେ ବ୍ୟାପୁଥାଆନ୍ତି ।

ମେଲେରିଆ ଓ ଝାଡ଼ାବାନ୍ତି ପ୍ରଭୃତି ରୋଗରେ ବହୁ ବନ୍ଦୀ ରୋଗଶଯ୍ୟାରେ ପଡ଼ିଲେ । ଜେଲ ଭିତରେ ଚିକିତ୍ସାର ବ୍ୟବସ୍ଥା ମଧ୍ୟ ବିଶେଷ ନଥାଏ । ଔଷଧ, ଡାକ୍ତର, ସେବିକା ପ୍ରଭୃତିର ଅଭାବ ଯୋଗୁ ବନ୍ଦୀଙ୍କ ଭିତରୁ ବଛାହୋଇଥିବା ସ୍ୱେଚ୍ଛାସେବକମାନେ, ଯଥୋଚିତ ଚେଷ୍ଟା କରି ରୋଗୀମାନଙ୍କର ସେବା କରନ୍ତି । ରୋଗୀଙ୍କ ଭିତରୁ ବହୁସଂଖ୍ୟାରେ ଔଷଧ ଓ ଠିକ୍ ଚିକିତ୍ସାର ଅଭାବରୁ ସ୍ୱର୍ଗାରୋହଣ କରନ୍ତି । ସେମାନଙ୍କ ପାଇଁ ଅନ୍ୟ ବନ୍ଦୀମାନେ ଶୋକସଭା କରି ଦେଶ ପାଇଁ ଜୀବନ ଦେଇ ରୋଗୀ ବନ୍ଦୀମାନେ ଅମର ହେଲେ ବୋଲି ଆତ୍ମ ସାନ୍ତ୍ୱନା ଲଭକରନ୍ତି । ଯୁବଶକ୍ତି ସବୁବେଳେ ଚଞ୍ଚଳ । ଯୁବକଙ୍କୁ ଗୋଟିଏ ସ୍ଥାନରେ କିଛି କାର୍ଯ୍ୟ ନଦେଇ କେବଳ ବାନ୍ଧିଲପରି ଘେରରେ ରଖିଲେ ତା'ମନରେ କ୍ଷୋଭ ଜାତହେବା ସ୍ୱାଭାବିକ । ସେହି ପରିସ୍ଥିତିରେ ବନ୍ଦୀତ୍ୱର ଯନ୍ତ୍ରଣା ସଙ୍ଗେ ରୋଗ ଓ ମୃତ୍ୟୁର ଭୟାବହ ଦୃଶ୍ୟ ବନ୍ଦୀମାନଙ୍କର ମନକୁ ଏକପ୍ରକାର ଦହଲାଇ ଦେଲା । ସେଥିରେ ବହୁ କର୍ମୀ ନିରାଶାବାଦୀ ହୋଇଯାଉଥିବାର ଅନୁଭବକରି ସେମାନଙ୍କୁ ଉତ୍ସାହ ଦେଇ ସେମାନଙ୍କ ମନ୍ତ ଓ ମନ ଠିକ୍‌ରଖି ନୂତନ ଆଶାର ସଞ୍ଚାର ପାଇଁ ସେଠାରେ ଥିବା ନେତୃସ୍ଥାନୀୟ ବ୍ୟକ୍ତିମାନେ କେତେଗୁଡ଼ିଏ ବହୁମୁଖୀ ଯୋଜନା ପ୍ରସ୍ତୁତ କଲେ ।

ସେ ଅନୁସାରେ ଦୈନିକ କାର୍ଯ୍ୟସୂଚୀ ପ୍ରସ୍ତୁତ କରାଯାଇ ପ୍ରାର୍ଥନା ସଭା, ସୂତାକଟା ସଙ୍ଗେ ବିଭିନ୍ନ ବିଷୟରେ ଶିକ୍ଷାକ୍ରମ, ବକ୍ତୃତା ଓ ଆଲୋଚନା ସଭା ପ୍ରଭୃତିର ଆୟୋଜନ କରାଯାଇ, କର୍ମୀମାନଙ୍କୁ କାର୍ଯ୍ୟରତ ରଖି, ଆଉ ବସି ବ୍ୟର୍ଥ ଚିନ୍ତା କରିବାକୁ ଅବସର ଦିଆଗଲା ନାହିଁ । ସେହି କାର୍ଯ୍ୟକ୍ରମରେ ବିଦ୍ୱାନ ନେତାମାନେ ଭିନ୍ନ ଭିନ୍ନ ବିଷୟରେ ବକ୍ତୃତା ଦିଅନ୍ତି । ଭାରତୀୟ ଜାତୀୟ କଂଗ୍ରେସ ଓ ସ୍ୱାଧୀନତା ସଂଗ୍ରାମର ସମ୍ୟକ ଧାରଣା ଦେବାକୁ ଜଣେ ନେତା ଭାରତ ରାଜନୀତି ଓ କଂଗ୍ରେସ ଗଠନର ଇତିହାସ ବର୍ଣ୍ଣନା କଲେ ।

ସେ କହିଲେ—କଂଗ୍ରେସ କାହିଁକି ଓ କିପରି ଗଢ଼ା ହୋଇଥିଲା ଓ ତା'ର ନେତୃତ୍ୱ ପ୍ରଥମେ କିଏ ନେଇଥିଲେ ସେକଥା ଭାବି ଏବର କଂଗ୍ରେସ ଓ ତା'ର କାର୍ଯ୍ୟ ସଙ୍ଗେ ତୁଳନା କଲେ ଆଶ୍ଚର୍ଯ୍ୟ ଲାଗେ । କଂଗ୍ରେସ ଗଢ଼ାହେବା ପୂର୍ବରୁ ଭାରତର ଅବସ୍ଥା କଅଣ ଥିଲା ସେକଥା ମଧ୍ୟ ଜାଣିବାକଥା । ଇଂଲଣ୍ଡର ଇଷ୍ଟ ଇଣ୍ଡିଆ କମ୍ପାନୀ ବାଣିଜ୍ୟ କରିବାକୁ ଆସି ସୁଶାସନ ଦେବା ବାହାନାରେ ଖଣ୍ଡ ଖଣ୍ଡ କରି ଭାରତର ସମସ୍ତ ରାଜ୍ୟକୁ ପଦାନତ କରିବା ପରେ ଦେଶୀ ଲୋକଙ୍କ ଉପରେ ଯେ ପ୍ରଚଣ୍ଡ ଅତ୍ୟାଚାର ଚଳାଇଲେ, ତା'ର ପ୍ରତିବାଦ ସ୍ୱରୂପ ସିପାହୀ ବିଦ୍ରୋହ ବିପ୍ଳବର ନିଆଁ ଜଳି ଉଠିଥିଲା । ଗୁଳି ବନ୍ଧୁକ ମୁନରେ ଦୃଢ଼ହସ୍ତରେ ଇଂରେଜ ସରକାର ସେ ବିଦ୍ରୋହ ଦମନ କରିବା ପରେ ବ୍ରିଟିଶ ପାର୍ଲିଆମେଣ୍ଟ ଇଂଲଣ୍ଡର

ନାମମାତ୍ର ରାଣୀ ମହାରାଣୀ ଭିକ୍ଟୋରିଆଙ୍କ ନାମରେ ଭାରତର ଶାସନ ଦାୟିତ୍ୱ କମ୍ପାନୀଠାରୁ କାଢ଼ି ନିଜ ହାତକୁ ନେଲେ ।

ଯୁଗଯୁଗର ରାଜଭକ୍ତ ଧର୍ମଭୀରୁ ଭାରତୀୟମାନଙ୍କୁ ମହାରାଣୀଙ୍କ ରୂପ ଦେଖାଇ, ନ୍ୟାୟ ଆଇନ କାନୁନ ଅନୁସାରେ ଶାସନ କରିବାକୁ ପ୍ରତିଶ୍ରୁତି ଦେଇ ଭିକ୍ଟୋରିଆଙ୍କ ଘୋଷଣା ପ୍ରଚାର କଲେ । ବିଦ୍ରୋହ ପରେ ଯେଉଁ ନିଆଁ ଜୁଳୁ ଜୁଳୁ ହୋଇ ଜଳୁଥିଲା, ତାହା ଇଂରେଜଙ୍କର କଠୋର ଦମନନୀତି, ଭାରତୀୟଙ୍କ ଏକତା ଅଭାବ ଓ ତା' ଉପରେ ରାଣୀଙ୍କ ଘୋଷଣାର ନ୍ୟାୟ ଶାସନ ଆଶାରେ ସେ ବିଦ୍ରୋହର ନିଆଁ ଲିଭିଆସିଲା । ଦେଶରେ ଶାନ୍ତ ବାତାବରଣ ସୃଷ୍ଟି ହେବାରୁ ଶାସକଙ୍କର ଅମଲାତନ୍ତ୍ର କାଳ ଲୋକଙ୍କୁ ଶୋଷଣ କରିବାର ଅଧିକ ସୁବିଧା ପାଇଲେ । ସାଧାରଣ ଲୋକେ ସରକାରୀ ସୁବିଧା ପାଇବାରେ, ସେମାନେ ନାନା ପ୍ରକାର ବାଧା ସୃଷ୍ଟି କଲେ । ସରକାରଙ୍କ ପ୍ରତିଶ୍ରୁତି ଅନୁସାରେ ସୁଶାସନ ପାଇଁ ଲୋକଙ୍କୁ ମିଳିଥିବା ମୁଦ୍ରଣ ସ୍ୱାଧୀନତା, ମ୍ୟୁନିସିପାଲିଟି, ବିଶ୍ୱବିଦ୍ୟାଳୟ ପ୍ରଭୃତିର ଅଧିକାର ଲୋକଙ୍କଠାରୁ କାଢ଼ିନେବାକୁ ସରକାରୀ ଅମଲାତନ୍ତ୍ର ଚେଷ୍ଟା କଲେ । ସେଥିପାଇଁ ଆସ୍ତେ ଆସ୍ତେ ଲୋକଙ୍କ ମନରେ ସରକାରଙ୍କ ପ୍ରତି ବୈରଭାବ ଜାତ ହେଉଥିଲା ।

ପୂର୍ବରୁ ଭାରତୀୟଙ୍କ ହାତରୁ ସମସ୍ତ ଅସ୍ତ୍ର ଶସ୍ତ୍ର କାଢ଼ିନିଆ ହୋଇଥିଲା । ଦେଶୀଲୋକଙ୍କୁ ଶ୍ରେଷ୍ଠ ଶ୍ରେଷ୍ଠ ଚାକିରିରେ ନିଯୁକ୍ତ ଦିଆଯାଇ ଅନୁଗତ ଭୃତ୍ୟ ଦଳ ସୃଷ୍ଟି କରାଯାଇଥିଲା । 'ମାକଲେ' ସାହେବଙ୍କ ଯୋଜନା ଅନୁସାରେ କିରାଣୀ ଓ ପଛଗୋଡ଼ାଣିଆ ବାବୁ ସବୁ ସୃଷ୍ଟି କରିବା ପାଇଁ ଗୋଟିଏ ସ୍ୱତନ୍ତ୍ର ଶିକ୍ଷାପଦ୍ଧତି ଦେଶସାରା ଚାଲୁ କରାଯାଇଥିଲା । ତଥାକଥିତ ନବ୍ୟ ଶିକ୍ଷିତମାନେ ଇଂରେଜଙ୍କୁ ଅନୁକରଣକରି ସେମାନଙ୍କ ପ୍ରଶଂସା ଗାନ ଓ ଶାସକଙ୍କୁ ଖୋସାମତ ଦ୍ୱାରା ନିଜର ସ୍ୱାର୍ଥ ସାଧନ ପାଇଁ ଚେଷ୍ଟିତ ଥିଲେ । ଇଂରେଜ ପଢ଼ୁଆ ବାବୁ ଓ ଅମଲମାନେ ନିଜକୁ ବଡ଼ ମନେକରି ସାଧାରଣ ଲୋକଙ୍କୁ ହେୟଜ୍ଞାନ କରୁଥିଲେ । ତଥାପି କେତେକ ମେଧାବୀ ଉଚ୍ଚଶିକ୍ଷିତ ବିଲାତରେ ଚାଲିଥିବା ଗଣତନ୍ତ୍ର ଶାସନରେ ଲୋକଙ୍କର ସ୍ୱାଧିକାର ଦାବି ଓ ବ୍ୟକ୍ତି ସ୍ୱାଧୀନତା ସହିତ ପରିଚିତ ହୋଇଥିଲେ । ସେମାନଙ୍କ ଭିତରୁ କେତେକଙ୍କର ଭାରତରେ ଚାଲିଥିବା ଗଣତନ୍ତ୍ର ବିରୋଧୀ ଇଂରେଜ ଶାସନ ବିରୁଦ୍ଧରେ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ବିଶେଷରେ ବଙ୍ଗଳାର ଉଚ୍ଚଶିକ୍ଷିତ ଓ ଭାରତୀୟ ସଂସ୍କୃତିରେ ଉଦ୍‌ବୁଦ୍ଧ ରାଜା ରାମମୋହନ ରାୟ, ସ୍ୱାମୀ ବିବେକାନନ୍ଦ ପ୍ରଭୃତିଙ୍କ ଦ୍ୱାରା ଜାତୀୟତା ଭାବର ଉଦ୍ରେକ ହୋଇ ଜାତି ଚଞ୍ଚଳ ହୋଇଉଠିଥିଲା ।

ସମାଜ ସଂସ୍କାର ଓ ସମାଜ ସେବା ପାଇଁ ବିଭିନ୍ନ ଅନୁଷ୍ଠାନ ଗଢ଼ା ହୋଇଥିଲା । ବଙ୍ଗଳାରେ ବ୍ରିଟିଶ ଇଣ୍ଡିଆନ ଆସୋସିଏସନ୍; ବେଙ୍ଗଲ୍ ନେସ୍‌ନାଲ୍ ଲିଗ୍ ଓ ଅନ୍ୟସ୍ଥାନରେ ବମ୍ବେ ଆସୋସିଏସନ୍, ଇଷ୍ଟଇଣ୍ଡିଆ ଆସୋସିଏସନ୍ ପରି ଦୁର୍ବଳ ନରମପନ୍ଥୀ ରାଜନୈତିକ ଅନୁଷ୍ଠାନମାନ ମୁଣ୍ଡ ଟେକୁଥିଲେ । ଇଂରେଜଙ୍କର କୂଟନୀତିଯୋଗୁ ପ୍ରକାଶ୍ୟରେ ଲୋକଙ୍କ ପ୍ରତିବାଦ ଦୃଢ଼ଭାବରେ ପ୍ରକାଶ ନ ପାଇଲେ ମଧ୍ୟ ଅତ୍ୟାଚାରୀ ଶାସନ ଓ ପୋଲିସ

ରାଜତ୍ୱର ପ୍ରତିଦ୍ୱନ୍ଦ୍ୱିତା ଦେଶକୁ ପୁଣି ବିଦ୍ରୋହଆଡ଼କୁ ଠେଲିଆଣୁଥିଲା । ଇଂରେଜ ସରକାର ବେପରୁଆ ଥିଲେ ମଧ୍ୟ କେତେକ ବୁଦ୍ଧିମାନ୍ ଇଂରେଜ ଶାସକ ଏପରି ଦୁଃଶାସନର କୁଫଳ ଅନୁମାନ କରିପାରିଥିଲେ । ସେମାନଙ୍କ ଭିତରୁ ଅକ୍ଟୋଭିଅସ ହ୍ୟୁମ୍ ନାମକ ଜଣେ ଅବସରପ୍ରାପ୍ତ ଇଂରେଜ ଶାସକ ବ୍ରିଟିଶ ସାମ୍ରାଜ୍ୟକୁ ଭବିଷ୍ୟତ ପତନରୁ ରକ୍ଷାକରିବାକୁ ଦେଶୀ ଲୋକଙ୍କ ସଙ୍ଗେ ସରକାରଙ୍କର ସାକ୍ଷାତ ସୁସମ୍ପର୍କ ସ୍ଥାପନ ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଥିଲେ ।

ହ୍ୟୁମ୍ ସିପାହୀ ବିଦ୍ରୋହବେଳେ ଜଣେ ମାଜିଷ୍ଟ୍ରେଟ୍ ଭାବରେ କାମ କରୁଥିଲେ । ସେ ବିଦ୍ରୋହ ଦମନରେ ମଧ୍ୟ ବିଶେଷ ଭାଗନେଇଥିଲେ । ସେ ଅବସର ନେବା ପରେ ଗଭୀର ଭାବରେ ଚିନ୍ତାକରି ବୁଝିଲେ ଯେ, ଶାସକମାନେ ଦେଶୀଲୋକଙ୍କଠାରୁ ଦୂରେଇରହି ସେମାନଙ୍କ ମନକଥା ବୁଝିନପାରିବାରୁ ଲୋକଙ୍କ ମନରେ ବିରୁଦ୍ଧ ଭାବ କ୍ରମଶଃ ବିଦ୍ରୋହର ରୂପ ନେଉଛି । ତେଣୁ ସେମାନଙ୍କ ମନକଥା ବୁଝି ଆପଡ଼ାଥାପଡ଼ି କରିବାପାଇଁ, ଶାସକ ଶାସିତମାନଙ୍କ ଭିତରେ ସମ୍ପର୍କ ରକ୍ଷାକାରୀ ମହାଭାରତୀୟ ଅନୁଷ୍ଠାନଟିଏ ନିତାନ୍ତ ପ୍ରୟୋଜନ ।

ସେ ଲୋକଙ୍କ ମନକଥା ଜାଣିବାପାଇଁ ବିଭିନ୍ନ ଜିଲ୍ଲା, ସବ୍‌ଡିଭିଜନ, ସହର ଓ ଗ୍ରାମମାନଙ୍କରୁ ପ୍ରମାଣମାନ ସଂଗ୍ରହକରି ଲୋକଙ୍କ ବିଦ୍ରୋହ ଭାବ ଘାଣ୍ଟି ପକାଉଥିବା କଥା ବୁଝିପାରିଥିଲେ । ଶୃଙ୍ଖଳିତ ବିଦ୍ରୋହ କରିବାପାଇଁ ଯଥେଷ୍ଟ ଶକ୍ତି ନଥିଲେହେଁ ସେମାନେ ନୈରାଶ୍ୟରେ ଜର୍ଜରିତ ହୋଇ ଗୋଟାଏ କିଛି କରିବାକୁ ଲୋଡ଼ୁଛନ୍ତି ବୋଲି ଜାଣିପାରିଲେ । ସ୍ଥାନେ ସ୍ଥାନେ ହତ୍ୟା, ବ୍ୟାଙ୍କ ବଜାର ପ୍ରଭୃତି ଲୁଟି ପ୍ରଭୃତିର ସମ୍ବାଦ ମଧ୍ୟ ମିଳିଥିଲା । ଦୁର୍ଭିକ୍ଷ ଉପରେ ଦୁର୍ଭିକ୍ଷ ପଡ଼ୁଥିଲାବେଳେ ସରକାର ଉଦାସୀନ ରହୁଥିବାରୁ 'ଡେକାନ୍' କୃଷକଙ୍କ ଗଣ୍ଡଗୋଳ ପରି ଗଣ୍ଡଗୋଳମାନ ଦେଖାଦେଉଥିଲା ଓ ସେପରି ଗଣ୍ଡଗୋଳରୁ ହିନେ ଏକ ବିରାଟ ଜାତୀୟ ବିଦ୍ରୋହ ଘଟିବାର ସୂଚନା ମଧ୍ୟ ମିଳୁଥିଲା ।

ସେ ଏସବୁ ବୁଝିବାପରେ ଏ ସମ୍ପର୍କରେ ବହୁତ ଚିଠିପତ୍ର ଲେଖାଲେଖି କରୁଥିଲେ । ସେ ବିଲାତର ଜଣେ ପୁରୁଖା ରାଜନୈତିକ ମିଷ୍ଟର ଅକାଲଣ୍ଡ କଲଭିନ୍‌ଙ୍କୁ ଲେଖି ଜଣାଇଥିଲେ—'ଭାରତର ଲୋକଙ୍କର ଘୋର ଦୁର୍ଗତି ବାହାରକୁ ପ୍ରକାଶ ନ ପାଇଲେ ମଧ୍ୟ ଦେଶକୁ ଭିତରେ ଭିତରେ ଘାଣ୍ଟୁଛି । ଶୀଘ୍ର କିଛି ବ୍ୟବସ୍ଥା ନହେଲେ ଭାରତରେ ବ୍ରିଟିଶ ଶାସନ ଭୂଷୁଡ଼ି ପଡ଼ିବ' ।

ସେ ଦୁର୍ଗତିର ପ୍ରଧାନ କାରଣ—

୧—ସାଭିଯ୍ଞ ଅତ୍ୟାଚାରୀ ପୋଲିସ

୨—ଅନୁପଯୋଗୀ ବ୍ୟୟଶୀଳ ଅଦାଲତ ବା ବିଚାରାଳୟ

୩—ଅଜାଡ଼ୀ କରପ୍ରଥା

୪—ଅସ୍ତ୍ର ଓ ଜଙ୍ଗଲ ଆଇନରେ ପକ୍ଷପାତିତା

ହ୍ୟୁମ୍ କେବଳ ଇଂରେଜ ବନ୍ଧୁମାନଙ୍କୁ ଲେଖିବାରେ ସନ୍ତୁଷ୍ଟ ନଥିଲେ। ଭାରତର ଶିକ୍ଷିତ ଯୁବକମାନଙ୍କୁ ନିଜ ଉଦ୍ଦେଶ୍ୟରେ ଲଗାଇବା ପାଇଁ ଭାରତର ଶିକ୍ଷିତ ଯୁବସମାଜକୁ ଆଶୁ ବିଦ୍ରୋହ ଦମନ ପାଇଁ ଦେଶରେ ଶାନ୍ତି ସ୍ଥାପନ କରିବାକୁ ଆହ୍ୱାନ ଦେଇଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ଏକ ପ୍ରାଣସ୍ପର୍ଶୀ ପତ୍ରରେ ଲେଖିଥିଲେ, 'ଯଦି ତୁମ ଭିତରୁ ପଚାଶଟି ସାଧୁ ନିସ୍ବାପର ଯୁବକ ବାହାରନ୍ତି, ତେବେ ସେମାନଙ୍କୁ ଦେଇ ଲୋକଙ୍କର ସୁଖସୁବିଧା ପାଇଁ ଜାତୀୟ କାର୍ଯ୍ୟର ଭିତ୍ତି ସ୍ଥାପନ କରାଯାଇପାରେ। ତେଣିକି ତା'ର ବିକାଶର ପନ୍ଥା ସୁଗମ ହେବ। ବ୍ୟକ୍ତିଗତ ସୁଖ ସୌଖୀନତା ଛାଡ଼ି ଜାତୀୟ କାର୍ଯ୍ୟ କରିବାକୁ ଯୁବକମାନେ ଯଦି ପ୍ରସ୍ତୁତ ନହୁଅନ୍ତି, ତେବେ ବୁଝିବାକୁ ହେବ ଭାରତବାସୀଙ୍କର ଭଲ ଶାସନ ପାଇବାର ଇଚ୍ଛା ନାହିଁ, କିମ୍ବା ସେମାନେ ସେଥିପାଇଁ ଉପଯୁକ୍ତ ନୁହନ୍ତି।'

୧୮୮୫ ମସିହା ପ୍ରଥମ ଭାଗରେ ସେତେବେଳର ବଡ଼ଲାଟ ଡଫରିନ୍‌ଙ୍କ ସଙ୍ଗେ ହ୍ୟୁମ୍ ଆଲୋଚନା କରିବା ପରେ ଗୋଟିଏ ମହାଭାରତୀୟ ରାଜନୈତିକ ଅନୁଷ୍ଠାନ ଗଢ଼ିବା ପାଇଁ ବଡ଼ଲାଟ ତାଙ୍କୁ ଗୋପନ ପରାମର୍ଶ ଦେଲେ । ଏପରି ଗୋଟିଏ ଅନୁଷ୍ଠାନ ଗଢ଼ାହେଲେ ତା'ର ସଦସ୍ୟମାନେ ସରକାରଙ୍କର ହାତବାରେସୀ ପରି କାର୍ଯ୍ୟକରି ସରକାରଙ୍କର ହାତମୁଠା ଟାଣ କରିପାରିବେ ବୋଲି ବଡ଼ଲାଟଙ୍କର ବିଶ୍ୱାସ ଥିଲା ।

ବଡ଼ଲାଟଙ୍କଠାରୁ ଆଶୀର୍ବାଦ ଲଭିକଲାପରେ ହ୍ୟୁମ୍ ବିଲାତ ଯାଇ ଲର୍ଡ଼ ରିପନ୍ ଲର୍ଡ଼ ଡେଲହାଉସି, ଜେମସ୍ କେଆର୍ଡ, ଜନ୍ ବ୍ରାଇଟ, ରିଡ଼, ସ୍ଲାଗ୍ ପ୍ରଭୃତି ପୂର୍ବତନ ବଡ଼ଲାଟ ଓ ବିଶିଷ୍ଟ ରାଜନୀତିଜ୍ଞମାନଙ୍କ ସଙ୍ଗେ ପରାମର୍ଶ କଲେ। ସେଠାରେ ତାଙ୍କ ଉଦ୍ୟମରେ ଭାରତ ପାଇଁ ରାଜନୈତିକ କମିଟିଟିଏ ଗଢ଼ାହେଲା। ସେହି କମିଟି ପରେ ଭାରତୀୟ ପାର୍ଲିଆମେଣ୍ଟାରୀ କମିଟିରେ ପରିଣତ ହୋଇଥିଲା ।

ହ୍ୟୁମ୍ ଭାରତକୁ ଫେରିଆସି ମହାଭାରତୀୟ ସଂଗଠନ ପାଇଁ ଭାରତର ସମସ୍ତ ପ୍ରାଦେଶିକ ଅନୁଷ୍ଠାନମାନଙ୍କୁ ଏକ ମହାଭାରତୀୟ ମିଳନ ପାଇଁ ନିମନ୍ତ୍ରଣ କଲେ। ସେଥିରେ କେବଳ ଇଂରେଜୀ ପଢ଼ୁଆ ଲୋକମାନଙ୍କୁ ସଦସ୍ୟ ଭାବରେ ପଠାଇବା ପାଇଁ ଅନୁରୋଧ କରାଯାଇଥିଲା। ସେ ଭାବିଥିଲେ ସେହି ମହାଭାରତୀୟ ସଭାଟି କେବଳ ସାମାଜିକ ସମସ୍ୟାରେ ମନଦେବ ।

ବମ୍ବେର ଗୋକୁଳ ଦାସ ତେଜପାଲ ସଂସ୍କୃତ କଲେଜ ଓ ଛାତ୍ରାବାସର ସୁସଜ୍ଜିତ କୋଠାରେ ୧୮୮୫ ମସିହା ଡିସେମ୍ବର ୨୭ ତାରିଖ ଦିନ ସେହି ଜାତୀୟ ମିଳନ ବା ଜାତୀୟ କଂଗ୍ରେସ ମହାସଭା ଜନ୍ମ ନେଲା । ହ୍ୟୁମଙ୍କ ପ୍ରସ୍ତାବରେ ଡବ୍ଲ୍ୟୁ ସି ବାନାର୍ଜି କଂଗ୍ରେସର ପ୍ରଥମ ସଭାପତି ଆସନ ଅଳଂକୃତ କଲେ।

କଂଗ୍ରେସ ସଭାପତି ତାଙ୍କ ଭାଷଣରେ ସେ ସଭାର ଚାରୋଟି ଉଦ୍ଦେଶ୍ୟ ବର୍ଣ୍ଣନା କଲେ।

୧—ସର୍ବାଞ୍ଚଳର ନିସ୍ବାପର ଦେଶସେବକମାନଙ୍କ ଭିତରେ ମିଳାମିଶା ।

୨—ସାକ୍ଷାତ, ସୌହାର୍ଦ୍ଦ୍ୟ ଓ ବ୍ୟକ୍ତିଗତ ଭାବର ଆଦାନ ପ୍ରଦାନ ଯୋଗେ ଯଥା ସମ୍ଭବ ଜାତି, ଧର୍ମ ଓ ପ୍ରାଦେଶିକ ଭ୍ରାନ୍ତ ଧାରଣା ଦଳ ମଧ୍ୟରୁ ଦୂର କରି ଦେଶସେବୀଙ୍କ ଭିତରେ ଲୋକପ୍ରିୟ ମହାମାନ୍ୟ ବଡ଼ଲାଟ ରିପନ୍‌ଙ୍କ ଶାସନରେ ଆରମ୍ଭ ହୋଇଥିବା ଜାତୀୟ ଏକତ୍ୱ ଭାବର ଭୂୟୋବିକାଶ ଓ ଦୃଢ଼ୀକରଣ ।

୩—ପ୍ରଧାନ ପ୍ରଧାନ ସାମାଜିକ ସମସ୍ୟାମାନଙ୍କ ସମ୍ବନ୍ଧରେ ପୂର୍ଣ୍ଣ ଆଲୋଚନା ପରେ ଶିକ୍ଷିତମାନଙ୍କର ପରୋପେକ୍ଷ ମତ ସଂଗ୍ରହ କରିବା ।

୪—ଆସନ୍ତା ବାର ମାସ ଭିତରେ ଦେଶୀ ରାଜନୀତିଜ୍ଞମାନେ କି ରୀତି ଓ ପ୍ରଣାଳୀରେ ଜନସେବା କରିବା ବାଞ୍ଛନୀୟ ତାହା ସ୍ଥିର କରିବା ।

ବ୍ରିଟିଶ ସାମ୍ରାଜ୍ୟକୁ ଦୃଢ଼କରି ଧରି ରଖିବା ପାଇଁ ଜଣେ ଇଂରେଜ ଶାସକଙ୍କ ଉଦ୍ୟମରେ ପ୍ରଥମେ କଂଗ୍ରେସ ଅନୁଷ୍ଠାନଟି ରୂପ ନେଇଥିଲା; କିନ୍ତୁ ପରେ ସେହି କ୍ଷୁଦ୍ର ମଞ୍ଜିଟି ଏ ଦେଶର ପାଣି ପବନରେ ଗଜୁରି ଶାଖା ପ୍ରଶାଖା ମେଲାଇ ଏକ ବିରାଟ ବୃକ୍ଷରେ ପରିଣତ ହୋଇ ବ୍ରିଟିଶ ସାମ୍ରାଜ୍ୟର ମୂଳୋତ୍ପାଟନର କାରଣ ହେଲା ।

ଇଂରେଜ ସରକାର ଜାତୀୟ କଂଗ୍ରେସକୁ ନଜର ରଖି ତା'ର କାର୍ଯ୍ୟ ପ୍ରତି ବିଶେଷ ଗୁରୁତ୍ୱ ଦେଉନଥିଲେ ମଧ୍ୟ ବଡ଼ଲାଟ କର୍ଜନ ଇଂରେଜ ସରକାର ବିରୁଦ୍ଧରେ ଜନମତ ଓ ଅନ୍ୟାନ୍ୟ ଜାତୀୟ ସଙ୍ଗଠନ ଦେଶର ନାନାସ୍ଥାନରେ ବିଶେଷତଃ ବଙ୍ଗଦେଶରେ ଗଢ଼ିଉଠୁଥିବାର ଉପଲବ୍ଧି କଲେ ।

ପ୍ରଥମ ଅବସ୍ଥାରେ ଯେଉଁ ଯେଉଁ ସ୍ଥାନରେ ଇଂରେଜମାନେ ରାଜ୍ୟ ସ୍ଥାପନ କରିଥିଲେ, ସେଥିରୁ ବଙ୍ଗଳା ଅନ୍ୟତମ । ଇଷ୍ଟଇଣ୍ଡିଆ କମ୍ପାନୀ ଅମଳରୁ ଇଂରେଜଙ୍କ ରାଜଧାନୀ କଲିକତାରେ ସ୍ଥାପିତ ହୋଇଥିଲା । ଇଂରେଜଙ୍କ ସଙ୍ଗେ ବିଶେଷ ଭାବରେ ସମ୍ପୃକ୍ତ ଓ ଶାସକମାନଙ୍କର ଦୋଷ ଦୁର୍ବଳତା ବିଷୟରେ ବଙ୍ଗାଳିମାନେ ପରିଚିତ ଥିଲେ । ସେମାନେ ଇଂରେଜ ଶାସନ ବିରୁଦ୍ଧରେ ସଙ୍ଗଠିତ ହୋଇ ଆନ୍ଦୋଳନ କରିବା ସୁନିଶ୍ଚିତ ଭାବି ବଙ୍ଗଳାର ଟାଣ ଭାଙ୍ଗିଦେବାକୁ ବିରାଟ ବଙ୍ଗଳା ପ୍ରେସିଡେନ୍‌ସି ବା ପ୍ରଦେଶକୁ ୧୯୦୫ରେ ଦୁଇଭାଗ କରିବାକୁ ଲର୍ଡ଼ କର୍ଜନ ଆଇନ ପ୍ରଣୟନ କଲେ । ସେଥିରେ ସରକାରଙ୍କ ପାଇଁ ଭଲ ଫଳ ପରିବର୍ତ୍ତେ ମନ୍ଦ ଫଳ ଫଳିଲା । ଇଂରେଜ ଶାସକଙ୍କ ଚକ୍ରାନ୍ତ ଧରାପଡ଼ିଲା । ଆନ୍ଦୋଳନ କେବଳ ବଙ୍ଗଳାରେ ଆବଦ୍ଧ ନରହି ଦେଶସାରା ହିଂସାତ୍ମକ ବିପ୍ଳବ ଓ ଆନ୍ଦୋଳନ ଆରମ୍ଭ ହୋଇଗଲା । ବଙ୍ଗଭଙ୍ଗ ଆନ୍ଦୋଳନ 'ସ୍ୱଦେଶୀ' ଆନ୍ଦୋଳନରେ ପରିଣତ ହେଲା । ସ୍ୱଦେଶୀ ଆନ୍ଦୋଳନରେ ବିଲାତି ଜିନିଷ ବର୍ଜନ କରିବା ଓ ଭାରତ ଗୋଟିଏ ଜାତି ଓ ଗୋଟିଏ ଦେଶ ଉପଲବ୍ଧି କରି ଭାରତର କୌଣସି ଅଙ୍ଗରେ ଆଘାତ ହେଲେ ଅନ୍ୟ ଅଙ୍ଗ ଗୁଡ଼ିକ ଚେଇଁଉଠି ଆନ୍ଦୋଳନ କରିବା ପ୍ରଭୃତିର କାର୍ଯ୍ୟକ୍ରମ ଦ୍ରୁତଗତିରେ ଦେଶସାରା ପ୍ରସାର ଲାଭକଲା । ଏହି ଆନ୍ଦୋଳନ ଫଳରେ କଂଗ୍ରେସର

ମାନ୍ଦା ନୀତି ଓ ଆତ୍ମମୁକ୍ତ୍ୟ ବଦଳିଲା । ୧୯୦୬ କଲିକତା କଂଗ୍ରେସର ଅଧିବେଶନରେ ସଭାପତି ଦାଦାଭାଇ ନାରୋଜି ଭାରତ ପାଇଁ 'ସ୍ୱରାଜ୍ୟ' ପ୍ରସ୍ତାବ ଘୋଷଣା କଲେ ।

ସ୍ୱଦେଶୀ ଆନ୍ଦୋଳନ ଫଳରେ ସାରା ଦେଶରେ ଖଜଣାଖାନା ଓ ଅସ୍ତ୍ରଶସ୍ତ୍ର ଭଣ୍ଡାର ଲୁଟ୍, ଗୋରା ଶାସକଙ୍କ ହତ୍ୟା ପ୍ରଭୃତି ହିଂସାତ୍ମକ ଦ୍ୱାରା ବ୍ରିଟିଶ ଶାସନ ଚହଲିଗଲା । ୧୯୧୦ରେ ଦେଶୀ ଲୋକଙ୍କ ହାତରେ କିଛି କ୍ଷମତା ଦେଇ ଆପୁଡ଼ା ଆପୁଡ଼ି କରିବାକୁ ସରକାର ମିଣ୍ଟୋ-ମର୍ଲୋ ଶାସନ ଖସଡ଼ା ପ୍ରଣୟନ କଲେ । ୧୯୧୨ ରେ ବଙ୍ଗଳା ପୁଣି ଏକ ପ୍ରଦେଶ ହୋଇ ରହିବାର ଘୋଷଣା କରାଗଲା; କିନ୍ତୁ ସେଥିରୁ ବିହାର ଓ ଓଡ଼ିଶାକୁ କାଢ଼ିନେଇ ବିହାର-ଓଡ଼ିଶା ପ୍ରଦେଶ ଓ ଆସାମକୁ ନେଇ ସ୍ୱତନ୍ତ୍ର ଆସାମ ପ୍ରଦେଶ ଗଠନ କରାଗଲା । ବଙ୍ଗଳାର ଗର୍ବ ଭାଙ୍ଗିବା ପାଇଁ କଲିକତାରୁ ଦିଲ୍ଲୀକୁ ରାଜଧାନୀ ଉଠାଇ ନିଆଯାଇଥିଲା ।

ଦେଶରେ ସିପାହୀ ବିଦ୍ରୋହ ପରି ଏକ ବିରାଟ ବିପ୍ଳବ ନହୋଇ ପାରିଲେ ମଧ୍ୟ ଦେଶର ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ନାନା ସ୍ଥାନରେ ଭଙ୍ଗାରୁଜା ଓ ବିପ୍ଳବାତ୍ମକ କାର୍ଯ୍ୟ ଲାଗିରହିଲା । ଦେଶରେ ନୂଆ ଉଗ୍ରପନ୍ଥୀ ଯୁବନେତାମାନେ ଜନତାର ନେତୃତ୍ୱ ନେବାକୁ ଆଗେଇ ଆସିଲେ ।

୧୯୧୪ ମସିହାରେ ପ୍ରଥମ ପୃଥିବୀ ମହାସମର ଆରମ୍ଭ ହେଲା । ସେଥିରେ ବ୍ରିଟିଶ ସରକାର ଯୋଗଦେଇଥିବାରୁ ଇଂରେଜମାନେ ଭାରତବାସୀଙ୍କ ସାହାଯ୍ୟ ଲୋଡ଼ିଲେ । ଏହି ସମୟରେ ମହାତ୍ମାଗାନ୍ଧି ଦକ୍ଷିଣଆଫ୍ରିକାରୁ ଅହିଂସା ମନ୍ତ୍ର ସାଙ୍ଗରେ ଧରି ଭାରତର ରାଜନୀତି କ୍ଷେତ୍ରରେ ଆବିର୍ଭୂତ ହେଲେ; ଶତ୍ରୁ ହେଉ ମିତ୍ର ହେଉ ବିପଦ ସମୟରେ ତାହାକୁ ସାହାଯ୍ୟ କରିବା ଉଚିତ ବୋଲି ଯୁକ୍ତି ଦେଖାଇ ପୃଥିବୀ ମହାସମର ପରି ବିପଦରେ ଇଂରେଜଙ୍କୁ ସାହାଯ୍ୟ କରିବାକୁ ଦେଶବାସୀଙ୍କୁ ଉପଦେଶ ଦେଲେ ଓ ଏ ସମୟରେ ସରକାରଙ୍କ ବିରୁଦ୍ଧରେ କୌଣସି ଆନ୍ଦୋଳନ ନକରିବାକୁ ଅନୁରୋଧ କଲେ ।

ତାଙ୍କର ଅହିଂସା ନୀତି ଅନେକଙ୍କୁ ଭଲଲାଗିଲା ନାହିଁ । ଦୁର୍ବଳର ଅହିଂସା ଅହିଂସା ନୁହେଁ ତାହା କାପୁରୁଷତା ବୋଲି ଉଗ୍ରପନ୍ଥୀମାନେ ଭାବିଲେ । ଗାନ୍ଧିଙ୍କ କଥାରେ କେତେକ ନେତା ଓ ବିପ୍ଳବୀ ଏକମତ ନହୋଇ "ଲଇଁପଡ଼ିଥିବ ଯେତିକି ବେଳେ, ବାଧାଏ ମାରିବ ସେତିକିବେଳେ" ନୀତିକୁ ପସନ୍ଦ କଲେ । ଦେଶର ନାନା ସ୍ଥାନରେ ଇଂରେଜ ବିରୋଧୀ ଷଡ଼ଯନ୍ତ୍ର ଚାଲିଲା । ଭାରତର ବିପ୍ଳବୀମାନଙ୍କୁ ସାହାଯ୍ୟ କରି ଭାରତରୁ ଇଂରେଜଙ୍କୁ ବିତାଡ଼ିତକରିବାକୁ ଜର୍ମାନୀ ଏକ ଅସ୍ତ୍ରବୋଝାଇ ଜାହାଜ ପଠାଇଥିଲା । ତାହା କଲିକତାଠାରେ ଧରାପଡ଼ିଲା । ସରକାରଙ୍କ ତତ୍ପରତା ଯୋଗୁ ବନାରସ ଓ ଲାହୋରଠାରେ ସରକାର ବିରୋଧୀ ଷଡ଼ଯନ୍ତ୍ର ସବୁ ଧରି ସେ ସମ୍ବନ୍ଧରେ ମୋକଦ୍ଦମା ଚାଲିଲା । ଯୁଦ୍ଧ ନିରାପତ୍ତା ଆଇନ ଫଳରେ ସରକାର ଲୋକଙ୍କ ଉପରେ ଅକଥନୀୟ ଦମନ ନୀତି ଓ ଅତ୍ୟାଚାର ଚଳାଇଲେ ।

୧୯୧୯ ନଭେମ୍ବର ୧୧ ତାରିଖରେ ଜର୍ମାନମାନେ ବିଶ୍ୱ ଯୁଦ୍ଧରେ ହାରିଯାଇ ଆତ୍ମସମର୍ପଣ କଲେ; ଇଂରେଜ ବିଜୟୀ ହେଲେ । କିନ୍ତୁ ଗାନ୍ଧୀଙ୍କ ଆଶା ବିଫଳ ହେଲା । ଇଂରେଜମାନେ ଭାରତକୁ ସ୍ୱରାଜ୍ୟ ଦେବା ପରିବର୍ତ୍ତେ ବିଜୟ ମଦରେ ବୃଦ୍ଧିପ୍ରାପ୍ତ ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆହୁରି କଠୋର ନୀତି ଧରିଲେ । ଯୁଦ୍ଧ ସରିଯିବାରୁ ଯୁଦ୍ଧ କାଳୀନ ପରିସ୍ଥିତିର ତମାଦି ହୋଇଗଲା,ସରକାର ରାଜନୈତିକ ଲୋକଙ୍କୁ ଜବତ କରି ରଖିବାକୁ ଓ ଦମନ ନୀତିକୁ ଚାଲୁ ରଖିବାପାଇଁ 'ରାଓଲେଟ ଆକ୍ଟ' ନାମକ ଆଇନ ପ୍ରଣୟନ କଲେ । ଇଂରେଜ ସରକାରଙ୍କ ବିପରୀତ ମତିଗତି ଦେଖି ୧୯୧୯ ଏପ୍ରିଲ ୬ ତାରିଖ ଦିନ ମହାତ୍ମା ଗାନ୍ଧି ରାଓଲେଟ୍ ଆକ୍ଟ ବିରୁଦ୍ଧରେ ଅହିଂସ ସତ୍ୟାଗ୍ରହ ପାଇଁ ଦେଶକୁ ଆହ୍ୱାନ ଦେଲେ । ଅମୃତସରର ଜାଲିଆନାବାଗଠାରେ ଲକ୍ଷ ଲକ୍ଷ ବିକ୍ଷୋଭକାରୀ ଅହିଂସ ଜନତା ଉପରେ ସରକାର ଗୁଳି ଚଳାଇ 'ଜାଲିଆନାବାଗ ହତ୍ୟାକାଣ୍ଡ' ସୃଷ୍ଟି କଲେ । ସେହି ହତ୍ୟାକାଣ୍ଡ ପରେ ଭାରତରେ ସବୁଆଡ଼େ ବିଦ୍ରୋହର ନିଆଁ ଜଳିଉଠିଲା । ଗାନ୍ଧିଙ୍କ ଅହିଂସ ଆନ୍ଦୋଳନ ଆପେ ଆପେ ଏକ ବିରାଟ ହିଂସା ଆନ୍ଦୋଳନରେ ପରିଣତ ହେଲା । ଅହିଂସାବାଦୀ ଗାନ୍ଧି ହିଂସା ଆନ୍ଦୋଳନକୁ ପସନ୍ଦ ନକରି ସେ ଆନ୍ଦୋଳନ ସ୍ଥଗିତ ରଖିବାକୁ ନିର୍ଦ୍ଦେଶ ଦେଲେ । ଏହା ଫଳରେ ଜନତାର ଉତ୍ସାହ ଓ ଉଦ୍ଦୀପନାରେ ପୂର୍ଣ୍ଣଚ୍ଛେଦ ପଡ଼ି ଦେଶସାରା ନିରାଶା ଓ ନିଷ୍କ୍ରିୟତାର ବାତାବରଣ ସୃଷ୍ଟି ହେଲା ।

୧୯୨୧ରେ ମଣ୍ଟେଗୁ ଚେମସଫୋର୍ଡ଼ ଶାସନ ଖସଡ଼ା ପ୍ରକାଶ ପାଇଲା । ସେଥିରେ ଦେଶର ଏକତା ଭାଙ୍ଗିବାକୁ ହିନ୍ଦୁ ମୁସଲମାନଙ୍କ ଭିତରେ ବିଭେଦ ସୃଷ୍ଟି କରି ଜାତୀୟତା ଭାବକୁ ସମୂଳେ ନଷ୍ଟ କରିବାର ଉପାୟ ଖଞ୍ଜାଯାଇଥିଲା । ନାଗପୁର କଂଗ୍ରେସରେ ମହାତ୍ମାଗାନ୍ଧି ସେ ଶାସନ ଖସଡ଼ାକୁ ବିରୋଧ କରି ଦେଶସାରା ଅହିଂସ ଅସହଯୋଗ ଆନ୍ଦୋଳନ ପାଇଁ ପ୍ରସ୍ତାବ ପାଶ୍ କରାଇଲେ । ବିଦେଶୀ ପଦାର୍ଥ ବର୍ଜନ, ସ୍କୁଲ କଲେଜ ଓ୍ୱାକଆଉଟ ପ୍ରଭୃତି ବର୍ଜନ ଓ ସରକାରଙ୍କୁ ଖଜଣା ଟିକସ ପ୍ରଭୃତି ନଦେବା ସେ ଆନ୍ଦୋଳନର ମୂଳମନ୍ତ୍ର ଥିଲା । ଖଜଣା ଟିକସ ଦେବାର ବିରୋଧ କରୁ କରୁ ଆନ୍ଦୋଳନରେ ହିଂସାକାଣ୍ଡ ଦେଖାଗଲା । ଅହିଂସାବାଦୀ ଗାନ୍ଧି ଆନ୍ଦୋଳନ ହିଂସାପଥରେ ଗତିକରୁଥିବାର ଦେଖି ମର୍ମାହତ ହୋଇ ୧୯୨୨ ମାର୍ଚ୍ଚ ମାସରେ ସେ ଆନ୍ଦୋଳନ ସ୍ଥଗିତ ରଖିବାକୁ ନିର୍ଦ୍ଦେଶ ଦେଲେ ।

ଜାତୀୟ ଆନ୍ଦୋଳନକୁ ଥରକୁଥର ଏପରି ବନ୍ଦ କରୁଥିବାରୁ କଂଗ୍ରେସ ଭିତରେ ଗାନ୍ଧିନୀତି ଉପରେ ଗୁରୁତର ମତଭେଦ ଉପୁଜିଲା । ସୁଭାଷଙ୍କ ପରି ସଂଗ୍ରାମୀ ଉଗ୍ରପନ୍ଥୀ ଯୁବକମାନେ ସେ ନୀତିର ତୀବ୍ର ସମାଲୋଚନା କଲେ । କଂଗ୍ରେସ ନେତାଙ୍କ ଭିତରୁ ମୋତିଲାଲ ନେହେରୁ ଓ ଚିତ୍ତରଞ୍ଜନ ଦାସ ପ୍ରଭୃତି ତୁଙ୍ଗ ନେତାମାନେ ପ୍ରଶାସନିକ ଭିତ୍ତିରେ ବିଧାନସଭାମାନଙ୍କରେ ପଶି ସରକାରଙ୍କର ବିରୋଧ କରିବାପାଇଁ ସ୍ୱରାଜ ଦଳ ନାମକ ଗୋଟିଏ ନୂଆ ଦଳ ଗଢ଼ିଲେ ।

ମହାତ୍ମାଗାନ୍ଧି ଅସହଯୋଗ ଆନ୍ଦୋଳନର ପ୍ରଥମରୁ କାରାବରଣ କରିଥିଲେ । ତାଙ୍କୁ ଛଅ ବର୍ଷ କାରାଦଣ୍ଡ ଭୋଗ ପାଇଁ ଆଦେଶ ହୋଇଥିଲା । ଗାନ୍ଧିଙ୍କ ମତ ଓ ମତବାଦ ଯୋଗୁ କଂଗ୍ରେସ ଭିତରେ ଭେଦଭାବ ଉପୁଜିବା ଓ ଆନ୍ଦୋଳନ ନିଷ୍ପ୍ରଭ ହେବା ଦେଖି ସରକାର ବୃଥାରେ ଗାନ୍ଧିଙ୍କୁ ଜେଲରେ ରଖିବା ଉଚିତ ମନେ ନକରି ଦୁଇ ବର୍ଷ କାରାଦଣ୍ଡ ଭୋଗ ପରେ ତାଙ୍କୁ ଖଲାସ କରିଦେଲେ ।

୧୯୨୪ ବେଲଗାମ କଂଗ୍ରେସ ଅଧିବେଶନରେ ଗାନ୍ଧି ସଭାପତି ହୋଇ କଂଗ୍ରେସର ଦୁଇ ଦଳ ଭିତରେ ମିଳାମିଶା ପାଇଁ 'ସ୍ୱରାଜ ଦଳ' ହାତରେ କଂଗ୍ରେସ ରାଜନୀତିର ନେତୃତ୍ୱ ଛାଡ଼ିଦେଇ 'ବର୍ଦ୍ଦୋଲି ଯୋଜନା' କରି ସାବରମତି ଆଶ୍ରମକୁ ଚାଲିଗଲେ । ବର୍ଦ୍ଦୋଲି ଯୋଜନା ଅନୁସାରେ ସମ୍ପ୍ରଦାୟିକତା, ହିନ୍ଦୁ ମୁସଲମାନ ଏକତା, ଅସ୍ପୃଶ୍ୟତା ଦୂରୀକରଣ, ଖଦଡ଼ ପ୍ରଚାର ପ୍ରଭୃତିରେ ଗାନ୍ଧି ଗୋଷ୍ଠୀ ମନୋନିବେଶ କଲେ ।

୧୯୨୯ ମସିହା ଲାହୋର କଂଗ୍ରେସ ଅଧିବେଶନରେ ଯୁବକ ଜବାହରଲାଲ ନେହେରୁ ସଭାପତି ହୋଇ ପୂର୍ଣ୍ଣ ସ୍ୱାଧୀନତା ଦାବି ପ୍ରସ୍ତାବଟି ପାଶ୍ କରାଇଲେ । ୧୯୩୦ ଜାନୁୟାରୀ ଛବିଶ ତାରିଖକୁ ସ୍ୱାଧୀନତା ଦିବସ ରୂପେ ପାଳନ କରି ଦେଶବ୍ୟାପୀ ସ୍ୱାଧୀନତା ଶପଥ ଗ୍ରହଣ କରିବାର ସ୍ଥିର ହେଲା । ମହାତ୍ମାଗାନ୍ଧି ସାବରମତି ଆଶ୍ରମରୁ ଆଇନ ଅମାନ୍ୟ ଆନ୍ଦୋଳନର ଡାକରା ଦେଇ ଡାଣ୍ଡିଠାରେ ଲୁଣ ମାରିବା ପାଇଁ ୧୯୩୦ ଏପ୍ରିଲରେ ପଦଯାତ୍ରା ଆରମ୍ଭ କଲେ ।

ଏସବୁ ବର୍ଣ୍ଣନା କଲାପରେ ବକ୍ତା ମନ୍ତବ୍ୟ ଦେଇ କହିଲେ, "ପରିସ୍ଥିତି ଅନୁଯାୟୀ 'କଂଗ୍ରେସ'ର ରୂପ କିପରି ତାହା ତୁମେମାନେ ବୁଝିପାରୁଥିବ । ଯେଉଁ କଂଗ୍ରେସର ସଦସ୍ୟ ହେବାପାଇଁ ଇଂରେଜି ଜାଣିବା ବାଧ୍ୟତାମୂଳକ ଥିଲା ସେଇ ଅନୁଷ୍ଠାନର ସଦସ୍ୟ ପଦ ପାଇଁ ସୂତା କାଟିବା ଓ ଖଦଡ଼ ପିନ୍ଧିବା ଦରକାର ପଡ଼ିଲା । ସରକାରଙ୍କୁ ଖୋସାମତ କରିବାପାଇଁ ବଡ଼ଲାଟଙ୍କ କାର୍ଯ୍ୟର ପ୍ରଶଂସା କରି ଯେଉଁ କଂଗ୍ରେସର ବାର୍ଷିକ ଅଧିବେଶନରେ ପ୍ରସ୍ତାବ ପାଶ୍ କରାଯାଉଥିଲା, ସେଥିରେ ପୂର୍ଣ୍ଣ ସ୍ୱାଧୀନତା ଦାବି ପ୍ରସ୍ତାବ ପାଶ୍‌ହେଲା । ସ୍ୱାଧୀନତା ଦାବି ଓ ଲବଣ ଆନ୍ଦୋଳନ ଫଳରେ ଆମେମାନେ ସମସ୍ତେ ଏବେ ବନ୍ଦୀଶାଳାରେ । ଏହାପରେ କଅଣ ହେବ କଂଗ୍ରେସ କି ନେତୃତ୍ୱ ଦେବ କେଉଁଦିନ ଏ ଦେଶ ସ୍ୱାଧୀନ ହେବ ତାହା ଭବିଷ୍ୟତ ହିଁ କହିବ । ବନ୍ଦେ ମାତରଂ ।" ଏହା କହି ବକ୍ତା ବକ୍ତବ୍ୟ ଶେଷକଲେ ।

ତା'ପରେ ବନ୍ଦୀମାନେ ପ୍ରଶ୍ନ ପଚରାପଚରି ଓ ନିଜ ନିଜ ଭିତରେ ଆଲୋଚନା କରିବାପରେ ସେଦିନ ପାଇଁ ସଭାଭଙ୍ଗ ହୋଇଥିଲା ।

ଏହିପରି ଦେଶର ବିଭିନ୍ନ ସମସ୍ୟା, ସଂସ୍କୃତି, ସାହିତ୍ୟ, ଅର୍ଥନୀତି, ସମାଜ ସଂସ୍କାର ପ୍ରଭୃତି ବିଷୟରେ ବିଜ୍ଞ ନେତାମାନେ ଦିନେ ଦିନେ ବକ୍ତୃତା ଦିଅନ୍ତି । ସମୟ ସମୟରେ ସେ ସବୁ ସମ୍ବନ୍ଧରେ ମଧ୍ୟ ବିଶେଷ ଭାବରେ ଆଲୋଚନା ହୁଏ ।

# ଛଅ

ଭିକାରୀ ବାବୁ ହଜାରୀବାଗ୍ ଜେଲରେ ଥିଲେ । ସେଠାରେ ସୀମାନ୍ତଗାନ୍ଧି, ରାଜେନ୍ଦ୍ର ପ୍ରସାଦ, ଶ୍ରୀକୃଷ୍ଣ ସିହ୍ନା ଓ ପଣ୍ଡିତ ନୀଳକଣ୍ଠଙ୍କ ପରି ବଡ଼ ବଡ଼ ଜ୍ଞାନୀ ଓ ପଣ୍ଡିତଙ୍କ ସମ୍ପର୍କରେ ଆସିଲେ । ବହୁ ଉପଦେଶ ଶୁଣିଲେ, ଆଲୋଚନାମାନଙ୍କରେ ଭାଗନେଲେ । ସେଠାର ଉଚ୍ଚ ଚିନ୍ତା ଓ ଭାବଧାରାରେ ସେ ମୁଗ୍ଧ ହେଲେ । ସୁଶୃଙ୍ଖଳ କାରାଜୀବନ ତାଙ୍କୁ ଭଲଲାଗିଲା । ସେ ନିୟମିତ ଭାବରେ ଧର୍ମ ଓ ରାଜନୀତି ଚର୍ଚ୍ଚା କରିବା ସଙ୍ଗେ ସଙ୍ଗେ ପ୍ରତିଦିନ ଗୀତାପାଠ କରନ୍ତି । ଗାନ୍ଧିଙ୍କ ସତ୍ୟ ଓ ଅହିଂସା ନୀତିକୁ ଭଲଭାବରେ ବୁଝି ସେଇ ବାଟରେ ନିଜ ଜୀବନକୁ ଶେଷ ପର୍ଯ୍ୟନ୍ତ ଚଳାଇବାକୁ ପ୍ରତିଜ୍ଞାବଦ୍ଧ ହେଲେ ।

ଦିନେ ସେ ବସି ଗୀତାପାଠ କରୁଛନ୍ତି, ରୋଗ ଶଯ୍ୟାରେ ପଡ଼ି ପଡ଼ି ତାଙ୍କର ସହଧର୍ମିଣୀ ଶେଷରେ ସ୍ୱର୍ଗାରୋହଣ କରିଥିବା ସମ୍ବାଦ ତାଙ୍କ ନିକଟରେ ପହଞ୍ଚିଲା । ସେ ପ୍ରଥମେ ବିଚଳିତ ହୋଇପଡ଼ିଲେ । ରୁଗ୍‌ଣା ପତ୍ନୀର ସେବା କରିପାରିଲେ ନାହିଁ । ଔଷଧ ଠିକ୍‌ଏର ବ୍ୟବସ୍ଥା କରିପାରିଲେ ନାହିଁ, ନିଜ କର୍ତ୍ତବ୍ୟରେ ହେଲାକରିଛନ୍ତି ବୋଲି ମନରେ ଦୁଃଖ ଆସିଲା; କିନ୍ତୁ ଗୀତା ପଢ଼ି ସୁଖ ବା ଦୁଃଖ ଆସୁ ଯାହା ବହିବ ଧୀର ଚିତ୍ତେ ତାହା, ଜୀବନ ଅଳୀକ, ଜନସ୍ୱାର୍ଥ ପାଇଁ ନିଜ ସ୍ୱାର୍ଥକୁ ବଳିଦେବା ପୁରୁଷର ଧର୍ମ, ଏପରି ସବୁ ଭାବ ନିଜକୁ ସମ୍ଭାଳି ନେଲେ ।

ଜେଲରେ ଥିବା ତାଙ୍କ ବନ୍ଧୁମାନେ ସେ ସମ୍ବାଦ ଶୁଣି ସମବେଦନା ଜଣାଇ ଦୁଃଖ ପ୍ରକାଶ କରିବାକୁ ଆସିବାରୁ, ସେ ପ୍ରସନ୍ନ ବଦନରେ ସମସ୍ତଙ୍କୁ କହିଲେ—"ଯେ ଯେତିକ ଦିନକୁ ଆସିଥାଏ ସେ ଦୁନିଆଁରେ ସେତିକ ଦିନ ଭୋଗକରି ଚାଲିଯାଏ । ନିୟତିକୁ କିଏ ବାଧା ଦେଇ ପାରିବ ? ସବୁ ସେଇ ମଙ୍ଗଳମୟ ବିଭୁଙ୍କ ଇଚ୍ଛା ।

ସେଇଦିନଠାରୁ ତାଙ୍କର ସଂସାର ପ୍ରତି ନିର୍ଲିପ୍ତତା ବୃଦ୍ଧି ପାଇଲା । ସେ ଆଗେ ଯେଉଁକଥା ଶୁଣି ତୁନି ହୋଇ ରହିଯାଉଥିଲେ ସେ ସବୁରେ ନିର୍ଭୀକ ଭାବରେ ପ୍ରତିବାଦ କରିବାକୁ ଛାଡ଼ିଲେ ନାହିଁ । କେତେକ ଘଟଣାରେ ସେ ଜେଲର କର୍ମକର୍ତ୍ତାମାନଙ୍କୁ ସେମାନଙ୍କ ସାମନାରେ ସମାଲୋଚନା କରିବାକୁ ପଛେଇଲେ ନାହିଁ । ତାଙ୍କର ନମ୍ର ଓ ଭଦ୍ର ବ୍ୟବହାର ଯୋଗୁ ତାଙ୍କୁ 'ଖ' ଶ୍ରେଣୀ ବନ୍ଦୀରୂପେ ରଖାଯାଇଥିଲା । କର୍ତ୍ତୃପକ୍ଷଙ୍କ କୋପ ଦୃଷ୍ଟି ପଡ଼ିବାରୁ ତାଙ୍କୁ 'ଗ' ଶ୍ରେଣୀକୁ ଖସାଇ ଦିଆଗଲା । କେତେଦିନ ପରେ ସେଠାରୁ ତାଙ୍କୁ ସ୍ଥାନାନ୍ତରିତ କରି ପାଟନା କ୍ୟାମ୍ପ ଜେଲକୁ ପଠାଇଦେବାପାଇଁ ଆଦେଶ ଆସିଲା । ସେ ଆଦେଶ ଦଣ୍ଡ ପରିବର୍ତ୍ତେ ତାଙ୍କୁ ଆଶୀର୍ବାଦ ପରି ଲାଗିଲା । ସେଠାରେ ଦୁଇ ପୁଅଙ୍କୁ ଦେଖିପାରିବେ ବୋଲି ସେ ମନେ ମନେ ଖୁସିହେଲେ ।

ପାଟନା କ୍ୟାମ୍ପ ଜେଲ୍ ଭିତରର କଟକଣା ହୀନଜୀବନ ଦେଖି ସେ ଆଶ୍ଚର୍ଯ୍ୟ ହେଲେ । ତାହା ତାଙ୍କୁ ଗୋଟିଏ ବଡ଼ ମେଳାରେ ରୁଣ୍ଡହୋଇଥିବା ଗୁଡ଼ାଏ ବିଭିନ୍ନ ପ୍ରକୃତିର ଲୋକଙ୍କ ସମାବେଶ ପରି ଲାଗିଲା । ସବୁବେଳେ ପାଟିତୁଣ୍ଡ ଓ 'ହୋ' 'ହୋ' ଶବ୍ଦରେ ସେ ସ୍ଥାନ କମ୍ପୁଛି,

ଛେଳିପଲ ପରି ଲୋକଗୁଡ଼ାକ ତା' ଭିତରେ ଏଣେ ତେଣେ ମନଇଚ୍ଛା ବୁଲୁଛନ୍ତି । ଠେଙ୍ଗାଧରି ଛେଳି ଜଗୁଆଳମାନେ ଦୂର୍‌ରେ ବୁଲୁଥିଲା ପରି ବନ୍ଧୁକଧାରୀ ପୋଲିସଗୁଡ଼ାକ ତାରବାଡ଼ ଚାରିପଟେ ପହରା ମାରୁଛନ୍ତି । ବ୍ରିଟିଶ ସାମ୍ରାଜ୍ୟର ତଥାକଥିତ ସୂର୍ଯ୍ୟ ଅସ୍ତମିତ ନହୋଇ ସାମ୍ରାଜ୍ୟକୁ ଲକ୍ଷ୍ୟକରି ରହିଥିଲା ପରି ଶହ ଶହ ବିଜୁଳିବତୀ ଦିନ ସଙ୍ଗେ ତାଳଦେଇ ଦିନରାତି ସମାନକରି ବନ୍ଦୀମାନଙ୍କୁ ଲକ୍ଷ୍ୟକରି ଚାହିଁ ରହିଛନ୍ତି । ଜେଲ ଭିତରୁ ବାହାରର ପଡ଼ିଆ ଓ ରାସ୍ତା ସବୁ ଦିଶୁଛି—କିନ୍ତୁ ସେ ତାରର ଘେର ଡେଇଁ ବାହାରକୁ ପଳାଇଯିବାର କୌଣସି ଉପାୟ ନାହିଁ । ଅହିଂସ ବନ୍ଦୀମାନେ ବି ବାହାରକୁ ଆସି ପଳାଇବାକୁ ଚେଷ୍ଟାକରିବା ବ୍ୟକ୍ତି ନୁହନ୍ତି । ତଥାପି ତାଙ୍କ ଭିତରୁ ଜଣେ ଅଧେ ତାରକାଟି ପଳାଇବାର ଉଦ୍ୟମ କରିଥିବାରୁ କଡ଼ା ପହରାର ବ୍ୟବସ୍ଥା ହୋଇଥିଲା ।

ହିଂସା ଅହିଂସା ନମାନି ଛଳେ ବଳେ କୌଶଳେ ଭାରତକୁ ସ୍ୱାଧୀନ କରାଇବା ମତାବଲମ୍ବୀ ଲୋକ ବି ସତ୍ୟାଗ୍ରହୀଙ୍କ ଭିତରେ ଥାଆନ୍ତି । ସେମାନଙ୍କ ଭିତରେ ସେପରି ଶପଥ ନେଇଥିବା ବ୍ୟକ୍ତିଙ୍କ ଭିତରେ ଭୀମ ସିଂହ ବୋଲି ଜଣେ ଉଗ୍ରପନ୍ଥୀ ଯୁବକ ଥିବାର ଭିକାରି ବାବୁ ଜାଣିପାରିଲେ । ଭୀମସିଂହଙ୍କ ବ୍ୟବହାର ଅତି ମଧୁର, ସେ ବାହାରକୁ ବଡ଼ ଶାନ୍ତଶିଷ୍ଟ; କିନ୍ତୁ ତାଙ୍କ ମନ ଭିତରେ ସବୁବେଳେ ବିଦ୍ରୋହ ନିଆଁ ଜଳୁଥାଏ । ସେ ବାଛି ବାଛି କେତେ ଯୁବକଙ୍କ ସଙ୍ଗେ ମିଳାମିଶା ଓ ଚୁପ୍‌ଚାପ କଥାବାର୍ତ୍ତା କରନ୍ତି । ଏକୁଟିଆ ବସିରହିଲାବେଳେ ଆଖିକୁ ବଡ଼ ବଡ଼ କରି ଆକାଶକୁ ଚାହିଁ କ'ଣ ଭାବୁଥାଆନ୍ତି । ତାଙ୍କ ମୁହଁରୁ ତେଜ ବାହାରୁଥାଏ । ଆଖିରୁ ଅଗ୍ନି ସ୍ଫୁଲିଙ୍ଗ ବାହାରିଲା ପରି ମନେହୁଏ । କପାଳରୁ ମୁକ୍ତା ବିନ୍ଦୁ ପରି ଟୋପା ଟୋପା ଝାଳ ଗଡ଼ିପଡ଼ୁଥାଏ ଓ ସମୟ ସମୟରେ ମୁହଁ କାନ ଲାଲ ହୋଇଯାଏ ।

ତାଙ୍କର ପ୍ରକୃତ ନାମ ଓ ଠିକଣା ପ୍ରାୟ କେହି ଜାଣନ୍ତିନାହିଁ । ଜେଲ ରେକର୍ଡ଼ ଅନୁସାରେ ତାଙ୍କୁ ଭୀମସିଂହ ବୋଲି ଡକାଯାଏ । ସତ୍ୟାଗ୍ରହୀମାନେ ତାଙ୍କ ବିଚାରବେଳେ ନିଜର ନାମ ଧାମ ବା ବାପ ମା'ଙ୍କ ନାମ ନକହି ଘର ଭାରତବର୍ଷ, ନାମ ଅନାମ, ପିତାଙ୍କ ନାମ ମହାତ୍ମାଗାନ୍ଧି, ମାତାଙ୍କ ନାମ ଭାରତମାତା ଇତ୍ୟାଦି କହୁଥାଆନ୍ତି । ପୋଲିସଙ୍କ ମିଛ ସାକ୍ଷୀମାନେ ତାଙ୍କ ନାମ ଓ ଠିକଣା ଯାହା ବୋଲି କହନ୍ତି, ହାକିମ ସେଇଆ ଲେଖି ତାଙ୍କୁ ଦଣ୍ଡ ଦିଅନ୍ତି ।

ଭୀମସିଂହ ପ୍ରକୃତରେ ମେଦିନୀପୁରର ଜଣେ ବିଖ୍ୟାତ ବିପ୍ଳବୀ । ତାଙ୍କ ନାମ ରାମଶଙ୍କର ଦାସ । ସେଠାର ପୋଲିସ ସାହେବଙ୍କ ହତ୍ୟା ଓ ଥାନାର ଅସ୍ତ୍ର ଶସ୍ତ୍ର ଲୁଟ ଘଟଣା ସହିତ ସେ ସଂପୃକ୍ତ । ସେଠାର ପୋଲିସ କବଳରୁ ସେ ଖସି ଆସି, ବାଲେଶ୍ୱରରେ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀଙ୍କ ଲୁଣମରା ଆନ୍ଦୋଳନରେ ଯୋଗଦେଇ ସତ୍ୟାଗ୍ରହୀଭାବେ ଧରାହୋଇ ପାଟନା କ୍ୟାମ୍ପ ଜେଲକୁ ଆସିଥାଆନ୍ତି । ସେ ବାହାରେ ରହିବା ଅପେକ୍ଷା ସତ୍ୟାଗ୍ରହୀଙ୍କ ସଙ୍ଗେ ଜେଲରେ ରହିବାକୁ ନିରାପଦ ମଣୁଥାଆନ୍ତି ।

ତାଙ୍କର ମରଣକୁ ଡର ନଥାଏ; କିନ୍ତୁ ନିଜେ ଫାଶୀ ପାଇବା ପୂର୍ବରୁ ବିପ୍ଳବକୁ ବଞ୍ଚାଇ ରଖିବାପାଇଁ ଆଉ କେତେଜଣଙ୍କୁ ସେଥିରେ ଉଦ୍‌ବୁଦ୍ଧ ଓ ତାଲିମ ଦେବା ପାଇଁ କିଛି ସମୟ ପାଇବାକୁ ଓ ଯୁବକମାନଙ୍କ ସଙ୍ଗେ ମିଶିବାର ସୁବିଧା ମିଳିବା ଆଶାରେ ସେ ଜେଲକୁ ଆସିଥାଆନ୍ତି । ଜେଲର ଏତେବେଗୁଡ଼ିଏ କୋମଳମତି ଭାବପ୍ରବଣ ଯୁବକଙ୍କ ଭିତରୁ ଅସଲ ଲୋକ କେତୋଟି ବାଛି ତାଙ୍କ ଭାବଧାରାରେ ତାଲିମ ଦେବାପାଇଁ କଷ୍ଟକର ହେବନାହିଁ ବୋଲି ସେ ମନେକରୁଥାଆନ୍ତି ।

ଭୀମସିଂହ ବଡ଼ ସ୍ୱାସ୍ଥ୍ୟବାନ । ପହିଲିମାନ ପରି ଚେହେରା । ସେ ଯୁବକମାନଙ୍କୁ ବାଛି କୁସ୍ତି କସରତ ଶିଖାଉଥାନ୍ତି । ସେ ରୋଗୀସେବା ଓ ଅନ୍ୟାନ୍ୟ ଲୋକହିତକର କାର୍ଯ୍ୟ କରିବାକୁ ଆଗଭର ହୋଇଥିବାରୁ ସମସ୍ତେ ତାଙ୍କୁ ଆଦର କରନ୍ତି । ସେ ସ୍ୱଳ୍ପଭାଷୀ ହେଲେ ମଧ୍ୟ ହସି ହସି ସବୁ କାର୍ଯ୍ୟ କରୁଥିବାରୁ ଅଧିକାଂଶ ଯୁବକ ତାଙ୍କୁ ନିଜର ବଡ଼ଭାଇ ପରି ମନେକରି ଭୀମଦାଦା ବା ଭୀମଦା ବୋଲି ଡାକନ୍ତି ।

ନବକୁମାର ଓ ସୂର୍ଯ୍ୟକୁମାର ଦୁଇଭାଇଯାକ ଏହା ମଧ୍ୟରେ ତାଙ୍କ ଆଡ଼କୁ ଆକୃଷ୍ଟ ହୋଇଥିଲେ । ଭୀମଦା ସେମାନଙ୍କ ଭିତରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ କରିବାପାଇଁ ସେମାନଙ୍କୁ ଆଦରକରି ପାଖରେ ବସାଇ ଗପସପ କରନ୍ତି । ସେଇ ଗଳ୍ପର ମାଧ୍ୟମରେ ସେମାନଙ୍କ ମଧ୍ୟରେ ବୈପ୍ଳବିକ ଭାବ ସୃଷ୍ଟି କରନ୍ତି ।

ସେ ଥରେ 'ଆଜି ଭାଲୁଗପ କହିବି' ବୋଲି ଗପଟି ଆରମ୍ଭ କଲେ—

ଜଣେ ଭଦ୍ରଲୋକ ଜଙ୍ଗଲ ଆରପଟର ଗୋଟିଏ ସ୍ଥାନକୁ ଯିବା ପାଇଁ ଜଣେ ଆଦିବାସୀକୁ ସଙ୍ଗରେ ନେଇ ମୁଣ୍ଡିଆ ପାହାଡ଼ ଜଙ୍ଗଲଟି ପାରିହେଉଥିଲେ । ସେ ସ୍ଥାନ ବିଷଧର ସର୍ପରେ ପୂର୍ଣ୍ଣ । ବାଟରେ ପଥର ସନ୍ଧିମାନଙ୍କରେ ସାପମାନେ ଶୋଇରହିଥାଆନ୍ତି । ତଳକୁ ଚାହିଁ ଚାହିଁ ସାବଧାନତା ସହିତ ସେମାନଙ୍କୁ ଡେଇଁ ଡେଇଁ ସେ ବାଟ ଚାଲିବାକୁ ହୁଏ । ତଳକୁ ମୁହଁ ପୋତି ଚାଲୁ ଚାଲୁ ସେମାନେ ହଠାତ୍ ଆଗକୁ ଚାହିଁ ଗୋଟେ ଭାଲୁ ତାଙ୍କୁ ପଚାକରି ରାସ୍ତା ମଝିରେ ଶୋଇଥିବାର ଦେଖିଲେ । ଭଦ୍ରଲୋକ ଭାଲୁର ସାମନାସାମନି କେବେଁ ହୋଇନାହାନ୍ତି । ଭାଲୁ ଗୋଟିଏ ଭୀଷଣ ହିଂସ୍ରଜନ୍ତୁବୋଲି କେବଳ ଶୁଣିଛନ୍ତି । ତା' ଆଗରେ ପଡ଼ିଗଲେ ସେ ନାକ କାନ ଆଖି ସବୁ ଚିରି ମୁହଁର ହାଡ଼ ବାହାର କରିଦିଏ । ତା'ର ତୀକ୍ଷ୍ଣ ନଖରେ ଶରୀରକୁ ଚିରି କ୍ଷତବିକ୍ଷତ କରିଦିଏ । ତେଣୁ ଭାଲୁଦେଖି ଡରିଯିବା ତାଙ୍କ ପକ୍ଷରେ ସ୍ୱାଭାବିକ । ଅଉ ନ ଆଗେଇ ଫେରିଯିବା ପାଇଁ ସେ ଆଦିବାସୀଟିକୁ କହିଲେ ।

ଆଦିବାସୀ ତାଙ୍କୁ ଚୁପ୍‌ହୋଇ ଠିଆହୋଇ ରହିବାକୁ ନିର୍ଦ୍ଦେଶ ଦେଲା । ତା'ର କାନ୍ଧରୁ ଭାରଟି ଓହ୍ଲାଇ ସେଥିରୁ ମୂଳ ବାଉଁଶର ବାଡ଼ିଙ୍କାଟି ହାତରେ ଧରି ଛପି ଛପି ଭାଲୁ ପାଖକୁ ଗଲା । ପଛଆଡ଼ୁ ଭାଲୁ ଅଣ୍ଟାକୁ ଶକ୍ତକରି ପାହାରେ ବସାଇଲା । କ'ଣହେଲା କିଛି ନଜାଣିପାରି ଆଉ ପଛକୁ ନଚାହିଁ ବିକଳରେ ଭାଲୁଟି ନାକସିଧା ଦଉଡ଼ିପଳାଇଲା ।

ସେହିପରି ସ୍ୱାଧୀନତାର ପଥ ରୋଧକରି ଗୋରିଭାଲୁ ଶୋଇଛି । ତାକୁ ହିଂସା ହେଉ ଅହିଂସା ହେଉ ସମ୍ମୁଖ ଯୁଦ୍ଧରେ ପାରିହେବନାହିଁ । ତାକୁ ଲୁଚିଛପି ଠିକ୍ ଜାଗାରେ ପାହାର ଦେଲେ ସେ ପ୍ରାଣବିକଳରେ ଏ ଦେଶ ଛାଡ଼ି ଚାଲିଯିବ । ସତ୍ୟ ଅହିଂସା ସବୁ ସାମୟିକ ଅସ୍ତ୍ର । ସେଥିରେ ଜନଜାଗରଣ ଅଣାଯାଇପାରିବ; କିନ୍ତୁ ତାହା ପୂରି କାମଦେଇ ଲକ୍ଷ୍ୟ-ହାସଲ କରିପାରିବ ନାହିଁ । ତାହା ପାଇଁକି ଇଂରେଜ ସରକାରକୁ ଭୟଭୀତ କଲାଭଳି ଗୁପ୍ତ ଆନ୍ଦୋଳନ ଦରକାର ।

ଆଉ ଗୋଟିଏ ଥରରେ ସେ କହିଲେ—"ତୁମେ ଦୁଇବନ୍ଧୁ ଓ ଭାଲୁ ଉପାଖ୍ୟାନ ଶୁଣିଥିବ । ଦୁଇଟି ବନ୍ଧୁ ଜଙ୍ଗଲରେ ଯାଉଥିବାବେଳେ ଦୂରରୁ ତାଙ୍କଆଡ଼କୁ ଆସୁଥିବା ଗୋଟିଏ ଭାଲୁ ଦେଖିଲେ । ଜଣେ ଗଛଚଢ଼ା ଜାଣେ । ସେ ଗଛ ଉପରକୁ ଉଠିଯାଇ ଲୁଚିକରି ବସିଲା । ଅନ୍ୟଜଣକ ଗଛ ଚଢ଼ା ଜାଣେନାହିଁ । ସେ ଆଉ ଉପାୟ ନଦେଖି ନିଃଶ୍ୱାସ ବନ୍ଦ କରି ନିର୍ଜୀବ ଭଳି ଗଛମୂଳେ ଶୋଇରହିଲା । ଭାଲୁ ତା' ନିକଟକୁ ଆସି ତାକୁ ଶୁଙ୍ଘା ଶୁଙ୍ଘି କରି ସେ ହଲଚଲ ନହେବାରୁ ତା'ଠାରୁ ବିପଦ ଆଶଙ୍କା ନକରି ତାକୁ ଛାଡ଼ି ଚାଲିଗଲା । ମନୁଷ୍ୟ ଭାଲୁର ଖାଦ୍ୟ ନୁହେଁ । ଆତ୍ମରକ୍ଷାପାଇଁ ଭାଲୁ ମଣିଷକୁ ଆକ୍ରମଣ କରେ । ତେଣୁ ସେ ଚାଲିଗଲା । କିନ୍ତୁ ବାଘସାମନାରେ ଯଦି ହରିଣଟାଏ ନିର୍ଜୀବ ପରି ପଡ଼ିରହନ୍ତା ତାହେଲେ ବାଘ କଅଣ ତାକୁ ନ ଖାଇ ଛାଡ଼ି ଚାଲିଯାଇ ଥାଆନ୍ତା !

ବ୍ରିଟିଶ ଭାଲୁ ଶହ ଶହ ବର୍ଷ ଧରି ଆମ ଭାରତୀୟଙ୍କ ରକ୍ତ ଶୋଷୁଚି, ଆମେ ତା'ର ଖାଦ୍ୟହାଣ୍ଡି । ଆମେ ଯଥେଷ୍ଟ ଭୟ ନଦେଖାଇଲେ ଖାଲି ସତ୍ୟ ଅହିଂସା ବୋଲି ପାଟିତୁଣ୍ଡ କଲେ ସେ ଏ ଦେଶ ଛାଡ଼ିଯିବ ନାହିଁକି, ଓଲଟି କୂଟନୀତି ଖେଳି ଆମ ଭିତରେ ବିଭେଦ ସୃଷ୍ଟିକରି ଆମ ଆନ୍ଦୋଳନ ଓ ଏକତାକୁ ପଣ୍ଡ କରିଦେବ ।

ଗାନ୍ଧିଙ୍କ ଅହିଂସା ସତ୍ୟାଗ୍ରହ ଏଦେଶ ଲୋକଙ୍କୁ ଏକାଠି କରିଛି, ଭାରତରେ ଜାତୀୟ ଚେତନା ସୃଷ୍ଟି କରିଛି । ଲୋକେ ସଂଗ୍ରାମର ଅନ୍ୟ ପନ୍ଥା ନ ଦେଖି ତାଙ୍କ ପଛେ ପଛେ ଚାଲିଛନ୍ତି; କିନ୍ତୁ ଗାନ୍ଧି ଯେପରି ଆନ୍ଦୋଳନ ଜୋର ସୋରରେ ଚାଲିଥିଲାବେଳେ, କେଉଁଠି ଗୋଟାଏ ଦୁଇଟା ହିଂସାକାଣ୍ଡ ଘଟିଗଲା ବୋଲି ଶୁଣି ଆନ୍ଦୋଳନ ରାସ୍ତା ଉପରେ ସତ୍ୟ ଅହିଂସା ଠେଙ୍ଗାପୋପାଡ଼ି ଆନ୍ଦୋଳନର ପଥରୋଧ କରିଦେଉଛନ୍ତି, ସେଥିରେ ଆନ୍ଦୋଳନ ନିସ୍ତେଜ ହୋଇଯାଉଛି, ଲୋକଙ୍କ ଭିତରେ ନିରାଶାର ଛାୟା ଖେଳିଯାଉଛି, ଏପରି ସତ୍ୟ ଅହିଂସାକୁ ଜାବୋଡ଼ିଧରିଲେ ସେ ପନ୍ଥାରେ 'ସ୍ୱରାଜ' ମିଳିପାରିବ ବୋଲି ମୁଁ ତାଙ୍କ କଥାରେ ଏକମତ ହୋଇପାରୁନାହିଁ । ଦେଶର ଏଇ ଜନଜାଗରଣ ଓ ଏକତାର ସୁବିଧାନେଇ ବିପ୍ଳବାତ୍ମକ ଆନ୍ଦୋଳନ ବା ଲୁଚିଛପା ଆକ୍ରମଣ କରି ଏ ଦେଶରେ ଇଂରେଜମାନଙ୍କୁ ଇତସ୍ତତ ଓ ଭୟଭୀତ କରାଇବା ପାଇଁ ନିର୍ଭୀକ ଯୁବକମାନେ ଶପଥ ନେବା ଉଚିତ୍ । ନିଜ ରକ୍ତରେ ଲେଖି ମାତୃଭୂମି ପାଇଁ ଶପଥ ନେବାକୁ ପଡ଼ିବ ।"

ଦୁଇ ଭାଇ ତନ୍ମୟ ହୋଇ ଭୀମସିଂହ କଥା ଶୁଣନ୍ତି, ନିଜ ନିଜ ଭିତରେ ଯୁକ୍ତିତର୍କକରି ଭୀମସିଂହର ପନ୍ଥା ସ୍ୱାଧୀନତା ପ୍ରାପ୍ତିର ଉପଯୁକ୍ତ ପନ୍ଥାବୋଲି ଏକମତ ହୁଅନ୍ତି । ସାନଭାଇ ବୟସର ସ୍ୱଳ୍ପତା ଦୃଷ୍ଟିରୁ ବେଶି ଭାବପ୍ରବଣ । ଜେଲକୁ ଗୋରା ସୁପରିଣ୍ଟେଣ୍ଡେଣ୍ଟ ବୁଲିଆସିଲେ ତାଙ୍କୁ ଦେଖି ସେ ଦାନ୍ତ କଡ଼ମଡ଼ କରେ । ହାତରେ ଛୁରୀ କି ବନ୍ଧୁକଟାଏ ଥିଲେ ହୁଏତ ତାଙ୍କୁ ସାଙ୍ଗେ ସାଙ୍ଗେ ହତ୍ୟାକରି ଗଡ଼ାଇ ପକାନ୍ତା ।

ଦିନେ ସୂର୍ଯ୍ୟକୁମାର ଭୀମସିଂହଙ୍କୁ ପଚାରିଲେ—"ଭୀମଦା, ତୁମର ଗୁପ୍ତ ଆନ୍ଦୋଳନ ପାଇଁ ଗୋଳା, ବନ୍ଧୁକ, ବୋମା ପ୍ରଭୃତି ଦରକାର । ସେଗୁଡ଼ିକ ତୁମର ବିପ୍ଲବୀମାନଙ୍କୁ କେଉଁଠୁ ମିଳେ ?" ସେ ଉତ୍ତର ଦେଲି—ବିପ୍ଲବୀମାନଙ୍କର ବେଶିଗୁଡ଼ାଏ ଅସ୍ତ୍ର ଶସ୍ତ୍ର ଦରକାର ହୁଏନାହିଁ । ମଝିରେ ମଝିରେ ମଫସଲର ପୋଲିସଥାନା ଆକ୍ରମଣ କରି ବନ୍ଧୁକ ଗୋଳା ପ୍ରଭୃତି ସଂଗ୍ରହ କରାଯାଏ । ହାତବୋମା ପ୍ରଭୃତି ସହରର କୌଣସି ନିଭୃତ ସ୍ଥାନରେ ବା ବଣଜଙ୍ଗଲର ଗୁମ୍ଫା ଭିତରେ ବଜାରରୁ ସତର୍କତାର ସହିତ ସଂଗ୍ରହ କରାଯାଇଥିବା ଉପାଦାନ ସବୁରେ ପ୍ରସ୍ତୁତ କରାଯାଏ ।

ସୂର୍ଯ୍ୟକୁମାର କହିଲି—ଜଙ୍ଗଲରେ ତ ଖାଲି ବାଘ ଭାଲୁ ସାଲୁ ସାଲୁ, ସେଠି କିପରି ବୋମା ତିଆରି କରିହୁଏ ? ସେଠାରେ ଖାଇବା ପିଇବାକୁ ବା କ'ଣ ମିଳେ ?

ଭୀମସିଂହ ଉତ୍ତର ଦେଲି—ବିପ୍ଲବୀ ହିଂସ୍ରଜନ୍ତୁଙ୍କୁ ଡରେନାହିଁ । ତା'ର ତେଜରେ ସେମାନେ ଆଡ଼େଇ ହୋଇଯାଆନ୍ତି । ଖାଇବାପିଇବା ପାଇଁ ତା'ର ଚିନ୍ତା ନଥାଏ । ବଣରେ ଫଳମୂଳ ଝରଣାର ପାଣି ତା'ର କ୍ଷୁଧା ନିବାରଣ ପାଇଁ ଯଥେଷ୍ଟ । ବିପ୍ଲବୀ ଦେଶସେବୀର ଉଦ୍ଦେଶ୍ୟ ମହାନ, ତା'ର ଦିନରାତି ଗୋଟିଏ ଚିନ୍ତା । ହିଂସ୍ରଜନ୍ତୁଙ୍କ ପ୍ରତି ତା'ର ବୈରିଭାବ ନଥାଏ । ଭଗବାନଙ୍କ ନିର୍ଦ୍ଦେଶରେ ହିଂସ୍ରଜନ୍ତୁମାନେ ଋଷି ଆଶ୍ରମର ଅନ୍ତେବାସୀଙ୍କୁ ଶାନ୍ତ ବ୍ୟବହାର କଲାଭଳି ବିପ୍ଲବୀ ନିକଟରେ ନିରୀହ ପୋଷା ଜନ୍ତୁପରି ଆଚରଣ ଦେଖାନ୍ତି ।

ଏ ସମ୍ବନ୍ଧରେ ମୁଁ ବହୁତ କଥା ଜାଣେ । କିଛି କିଛି ବି ଅଙ୍ଗେ ଲିଭେଇଛି । ମୁଁ ଶୁଣିଛି ବଙ୍ଗଳାର ପ୍ରସିଦ୍ଧ ବିପ୍ଲବୀ ନେତା ଅମରେନ୍ଦ୍ରନାଥ ଚଟାର୍ଜୀ ଉଚ୍ଚଶିକ୍ଷିତ ଓ ଧନୀ ଥିଲେ ମଧ୍ୟ ଦେଶମାତୃକା ପାଇଁ ସେସବୁ ଜଳାଞ୍ଜଳି ଦେଇ ସୁନ୍ଦରବନରେ ରହି ବିପ୍ଲବୀମାନଙ୍କୁ ତାଲିମ ଦେଉଥିଲେ । ସେଇଠାରେ ରହି ସେ ନିର୍ଦ୍ଦେଶଦେଇ ନାନାସ୍ଥାନରେ ଘଟୁଥିବା ସନ୍ତ୍ରାସବାଦ କାର୍ଯ୍ୟର ପରିଚାଳନା କରୁଥିଲେ । ଇଂରେଜ ସରକାର ତାଙ୍କୁ ବ୍ରିଟିଶ ସାମ୍ରାଜ୍ୟର ଜଣେ ବଡ଼ ଶତ୍ରୁ ବୋଲି ଜାଣି ଦେଶସାରା ଖୋଜି ଖୋଜି ପାଉନଥିଲେ । ତାଙ୍କର ସମସ୍ତ ଧନସମ୍ପତ୍ତି ବାଜ୍ୟାପ୍ତ କରି ତାଙ୍କର ପିତା ମାତା ଓ ସହଧର୍ମିଣୀଙ୍କୁ ବଡ଼ ହଇରାଣ କରୁଥିଲେ । ତାଙ୍କୁ ଜୀବନ୍ତ ବା ମୃତ ଅବସ୍ଥାରେ ଧରି ଆଣିଲେ ବଡ଼ ପୁରସ୍କାର ମିଳିବାର ଘୋଷଣା ମଧ୍ୟ କରିଥିଲେ । ବହୁ ଗୁପ୍ତଚର ତାଙ୍କୁ ଖୋଜୁଥାଆନ୍ତି; କିନ୍ତୁ ସେ ସ୍ଥାନ ଓ ବେଶ ବଦଳାଇ ସତର୍କତାର ସହିତ ଗୋପନରେ ବୁଲୁଥିବାରୁ ତାଙ୍କ ସମ୍ବନ୍ଧରେ ସଠିକ ସମ୍ବାଦ ପାଇ ପାରୁନଥାନ୍ତି ।

ଥରେ ଶିକାର କରିବାକୁ ବୁଲୁବୁଲୁ କେତେକ ଆଦିବାସୀ ତାଙ୍କର ଗୁପ୍ତସ୍ଥାନ ଦେଖିପକାଇଲେ । ଦୂରରୁ ତାଙ୍କ ଉପରେ ଜଣକର ଆଖି ପଡ଼ିବାପରେ ସେମାନେ ସେଠାରୁ ଦଉଡ଼ି ଚାଲିଗଲେ । ସେଦିନ ସେମାନଙ୍କ ଗ୍ରାମରେ ଜଣେ ଗୁପ୍ତଚର ଆସି ରହିଥିଲେ । ସେ ଆଦିବାସୀଙ୍କଠାରୁ ସନ୍ଧାନପାଇ ପୋଲିସକୁ ଖବର ଦେବାରେ ପରଦିନ ସକାଳୁ ଏକ ଗୁପ୍ତ ପୋଲିସ ଫୌଜ ସେ ସ୍ଥାନ ଘେରିଉନେଇ ତାଙ୍କୁ ଧରିବାକୁ ସଜବାଜ ହୋଇ ବାହାରିପଡ଼ିଲେ ।

ଅମରବାବୁଙ୍କ ଆଖିରେ ନିଦ ନଥିଲା । ବୋମାତିଆରି ସରଞ୍ଜାମ ସବୁ କ୍ୟାନଭାସ ଘୁଡ଼ିଆରେ ଭର୍ତ୍ତିକରି ଟିକିଏ ଦୂରରେ ଥିବା ପାଣି ଗାଡ଼ିଆର ପଙ୍କ ଭିତରେ ଲୁଚାଇ ପୋତିଦେଲେ । କ୍ୟାମ୍ପର ସହକର୍ମୀମାନଙ୍କୁ ମୁସଲମାନ ଦାଢ଼ି ଟୋପି ଛୁଞ୍ଚି ଦିଆଇ ଭୋରଭୋରରୁ ଅଣ୍ଡା ସଂଗ୍ରହ କରିଯାଉଥିବା ଲୋକଙ୍କ ପରି ଆଦିବାସୀ ଗାଁମାନଙ୍କରୁ ଅଣ୍ଡା ଯୋଗାଡ଼ ବାହାନା ଦେଖାଇ ସହରକୁ ଚାଲିଯିବାପାଇଁ ପଠାଇଦେଲେ । ନିଜେ ଗୋଟିଏ ବଡ଼ ଗଛ ଉପରେ ଚଢ଼ି ଅନୁସନ୍ଧାନ ଚଳାଇବାବେଳେ ପୋଲିସ ଫୌଜକୁ ନିକଟତର ହେଉଥିବାର ଦେଖିଲେ । ସେ ଗଛରୁ ଓହ୍ଲାଇ କଣ୍ଟା ଝଣ୍ଟା ନମାନି ଜଙ୍ଗଲ ଭିତରେ ପଶି ଦଉଡ଼ିବାକୁ ଲାଗିଲେ । ପ୍ରାୟ ଦୁଇଘଣ୍ଟା କାଳ ଦଉଡ଼ି ଦଉଡ଼ି ପୋଲିସଙ୍କ କବଳରୁ ରକ୍ଷାପାଇବା ନିଶ୍ଚିତ ଜାଣି ଅଗନାଅଗନି ବନସ୍ତ ଭିତରେ ଗୋଟିଏ ବଡ଼ ହରିଡ଼ାଗଛ ମୂଳେ ଠିଆହୋଇଗଲେ । କିଛି ସମୟ ପରେ ମୁହଁରୁ ଦେହରୁ ହାତରେ ଝାଳପୋଛି ସେ ଗଛଟିକୁ ଆଉଜିଗଲେ । ସେଇ ଠିଆହେବା ଅବସ୍ଥାରେ ତାଙ୍କୁ ନିଦ ଲାଗିଗଲା । ଖଡ଼ ଖଡ଼ ଶବ୍ଦରେ କିଛି ସମୟ ପରେ ତାଙ୍କ ନିଦ ଭାଙ୍ଗିଗଲା । ସେ ଆଖି ମେଲିକରି ଆଗକୁ ଚାହିଁ ଦେଖିଲେ ତାଙ୍କ ସାମନାରେ ଅଳ୍ପଦୂରରେ ଏକ ବିରାଟ ମହାବଳ ବାଘ ପଞ୍ଝା ପକାଇ ବସିରହି ତାଙ୍କ ଆଡ଼କୁ ଚାହିଁ ତା'ର ପାଟିମେଲିକରି ହାଇମାରୁଛି ।

ସେ ପୁଣି ଆଖିମୁଦିଦେଇ ନିଶ୍ଚଳଭାବରେ ଠିଆହୋଇ ରହିଲେ । ସେ ମନେ ମନେ ଭାବିଲେ—ମୋର ବିପ୍ଳବୀ ଦେଶପ୍ରେମୀ ଶରୀର କଅଣ ଏହି ବାଘର ପେଟରେ ପଡ଼ିବ ? ମୋର ଦେଶମାତୃକାର ସେବା କଅଣ ଏତିକିରେ ସମାପ୍ତ ହେବ ? ହଉ ଯାହା ଭାରତମାତାର ଇଚ୍ଛା, ଯାହା ଭଗବାନଙ୍କର ନିର୍ଦ୍ଦେଶ ସେଇଆ ହେଉ ।

କିଛିକ୍ଷଣ ପରେ ପୁଣି ପତ୍ରର ଖଡ଼ ଖଡ଼ ଶବ୍ଦ ଶୁଭିଲା । ସେ ଆଖି ଖୋଲି ଦେଖିଲେ ବାଘଟା ମୁହଁ ବୁଲାଇଦେଇ ତାଙ୍କଆଡ଼କୁ ପଛକରି ଶାନ୍ତ ଭାବରେ ପାଦୁଣ୍ଡ ପକାଇ ପକାଇ ଧୀର ମନ୍ଥର ଗତିରେ ଦୂରକୁ ଚାଲିଯାଉଛି । ତାଙ୍କ ପାଟିରୁ ଅଜାଣତରେ ବାହାରି ପଡ଼ିଲା—'ଜୟ ଭାରତ ମାତାକି ଜୟ' ।

ଏହିପରି ସବୁ ବିପ୍ଳବୀମାନଙ୍କର ବୀରତ୍ୱ କାହାଣୀ ଶୁଣି ଶୁଣି ଦୁଇଭାଇଙ୍କ ରକ୍ତ ଗରମ ହୋଇଉଠିଲା । ଭିକାରୀବାବୁ ପାଟନା ଜେଲକୁ ବଦଳିହୋଇ ଆସିବା ପରେ ଦୁଇ ପୁଅଙ୍କୁ ଦେଖି ଖୁବ୍ ଖୁସିହୋଇଥିଲେ । ତାଙ୍କ ସଙ୍ଗେ କଥାବାର୍ତ୍ତା ଓ ମିଳାମିଶା କଲାପରେ ସେମାନଙ୍କ କଥା ଓ ଚିନ୍ତାରେ ବୈପ୍ଳବାତ୍ମକ ପରିବର୍ତ୍ତନ ଦେଖି ଚମକିପଡ଼ିଲେ । ସେମାନଙ୍କ

ମନରେ କିପରି ହିଂସାତ୍ମକ ବିଦ୍ରୋହ ଭାବର ଉଦ୍ରେକ ହେଲା ତାହା ଜାଣିବାପାଇଁ ଅନୁସନ୍ଧାନ କରୁ କରୁ ଗୋପନରେ ରହି ଭୀମସିଂହ ସଙ୍ଗେ ପିଲାଙ୍କର ଆଳାପରୁ ତା'ର ଆଭାସ ପାଇଲେ । ପରେ ଭୀମସିଂହକୁ ଡାକି ତାଙ୍କ ସଙ୍ଗେ କଥାବାର୍ତ୍ତା କରୁ କରୁ ତାଙ୍କ ଅଗ୍ନିବର୍ଷୀ ହିଂସ୍ର ପ୍ରକୃତିର ସୂଚନା ପାଇଲେ ।

ସେ ଦିନ ଦୁହିଁଙ୍କୁ ଡାକି ବହୁତ ବୁଝାଇଲେ । ଭୀମସିଂହ ସଙ୍ଗେ ଅବାଧ ମିଳାମିଶା କରିବାପାଇଁ ବାରଣ କଲେ । ସେମାନଙ୍କ ମନରେ ପୁଣି ଅହିଂସା ଓ ସତ୍ୟର ଭାବ ଉଦ୍ରେକ କରିବାକୁ ଚେଷ୍ଟାକଲେ ।

ଯୁବକର ମନ ସବୁବେଳେ ନୂଆ କିଛି ଚାହେଁ । ପୁରୁଣା ଗତାନୁଗତିକ ଶାନ୍ତ ବାତାବରଣ ତାକୁ ଭଲଲାଗେ ନାହିଁ । ସେ ସେଥିପାଇଁ ପତଙ୍ଗପରି ଅଜାଣତରେ ନିଆଁ ଭିତରକୁ ଡେଇଁପଡ଼ିବାକୁ ପଶ୍ଚାତ୍‌ପଦ ହୁଏନାହିଁ । ଯୁକ୍ତିବିଚାର ବିଗୃହିବୁଦ୍ଧି ଓ ଆଗପଛକୁ ଚାହିଁ ଭଲମନ୍ଦ ଠିକ୍ କରି ପଥ ନିରୂପଣ କରି ପାରିବାର ଧୈର୍ଯ୍ୟ ଯୁବକଠାରେ ନଥାଏ । ଯୁବଶକ୍ତି ସବୁବେଳେ ଭାବପ୍ରବଣ ।

ସାନପୁଅ ଯୁକ୍ତିଛଳରେ କହିଲା, "ଅହିଂସା ନୀତିକୁ ସୁବିଧା ଅନୁସାରେ ପ୍ରୟୋଗ କରାଯାଇପାରେ; କିନ୍ତୁ ଆତ୍ମରକ୍ଷା ନକରି ପୂର୍ଣ୍ଣ ଅହିଂସହେଲେ ଯେକୌଣସି ପ୍ରାଣୀ ଏ ଜୀବ ଜଗତରେ ଜୀବନଧାରଣ କରି କିପରି ରହିପାରିବ ? ବାଘଭାଲୁ ଅହିଂସ ହେଲେତ ତାଙ୍କ ବଂଶ ପୂରା ଲୋପ ହୋଇଯିବ ! ତା'ପରେ ସବଳର ଦୁର୍ବଳ ପ୍ରତି ଅହିଂସାଭାବ ଦେଖାଇବାର ଅର୍ଥ ଅଛି; କିନ୍ତୁ ଦୁର୍ବଳ ସବଳ ଆଗରେ ଅହିଂସଭାବ ଦେଖାଇ ହରିଣ ବାଘ ସାମନାରେ ଯାଇ ଶୋଇପଡ଼ିବା ସାଙ୍ଗେ ସମାନ । ଇଂରେଜମାନେ ଆମଠାରୁ ସବଳ । ସେମାନେ ତ ଅହିଂସଭାବ ନଦେଖାଇ ଆମପରି ଦୁର୍ବଳଙ୍କୁ ଗୁଳିକରି ମାରୁଛନ୍ତି, ଗାନ୍ଧି ଆଗ ତାଙ୍କୁ ଅହିଂସା ଶିଖାନ୍ତୁ, ତା'ପରେ ଆମକୁ ଅହିଂସ ହେବାକୁ କହିବେ ।"

ବଡ଼ପୁଅ କହିଲା—"ଜୈନମାନେ କୀଟପତଙ୍ଗ ପଶି ମରିଯିବେ ବୋଲି ନାକ ଓ ପାଟିରେ କନା ବାନ୍ଧି ବୁଲି ଅହିଂସା ପ୍ରଚାର କରନ୍ତି; କିନ୍ତୁ ତାଙ୍କ ଶରୀରରେ ପ୍ରବେଶ କରୁଥିବା କୋଟି-କୋଟି ରୋଗ ଜୀବାଣୁ ଓ ଜୁଆଁ ପ୍ରଭୃତିଙ୍କୁ ଔଷଧ ଦେଇ ମାରୁନଥିଲେ ସେମାନେ ଅକାଳରେ ମରନ୍ତେ ନାହିଁକି ? ବର୍ତ୍ତମାନ ପରିସ୍ଥିତିରେ ଭାରତବାସୀଙ୍କର ପୂର୍ଣ୍ଣ ଅହିଂସ ଆଚରଣ ମୂକ ପ୍ରପୀଡ଼ିତ ଲୋକର ଅତ୍ୟାଚାରୀ ହାକିମର ବିଚାରାଳୟରେ ନୀରବ ରହିବା ସଙ୍ଗେ ସମାନ । ଅହିଂସା ନୀତିକୁ ସ୍ଥାନ କାଳ ପାତ୍ର ଦେଖି ବ୍ୟବହାର କରାଯାଇ-ପାରେ; କିନ୍ତୁ ସେ ନୀତିକୁ ସବୁଥିରେ ପ୍ରୟୋଗ କରିବାପାଇଁ ଜାବୁଡ଼ିକରି ଧରି ବସିଲେ ସର୍ବନାଶ ହେବା ସୁନିଶ୍ଚିତ ।"

ସେ ପୁଅ ଦୁହିଁଙ୍କ ମନରେ ସତ୍ୟ ଓ ଅହିଂସା ଭାବ ଉଦ୍ରେକ କରିବାକୁ ଚେଷ୍ଟାକରି ସେମାନଙ୍କଠାରୁ ଏପରି ଯୁକ୍ତି ସବୁ ଶୁଣି ଅବାକ୍ ହେଲେ । ଏଇ କେତେଦିନ କେଲ ଭିତରେ

ରହି ସେମାନଙ୍କ ଜ୍ଞାନର ପରିସର ଏତେ ବୃଦ୍ଧି ପାଇଛି ଓ ସେମାନେ ତାଙ୍କ ସାମନାରେ ବି ଅକାଟ୍ୟ ଯୁକ୍ତିମାନ ଦର୍ଶାଇପାରୁଛନ୍ତି ଦେଖି ସେ ମନେ ମନେ ଗୌରବ ଅନୁଭବ କଲେ ।

ଶତ ଚେଷ୍ଟା ସତ୍ତ୍ୱେ ସେମାନଙ୍କୁ ଭୀମସିଂହଙ୍କଠାରୁ ଅଲଗା କରି ରଖିପାରିଲେ ନାହିଁ । ସବୁ ଉଦ୍ୟମ ସତ୍ତ୍ୱେ ସେମାନଙ୍କ ମନରେ ଗାନ୍ଧିନୀତି ଓ ଅହିଂସା ନୀତିର ଭାବଧାରା ଉଜ୍ଜୀବିତ କରିବାରେ ସମ୍ପୂର୍ଣ୍ଣ ବିଫଳ ହେଲେ । ପୁଅମାନଙ୍କ ସଙ୍ଗେ ଆଉ ଯୁକ୍ତିତର୍କ ନକରି, ନିଜର ଗୀତାପାଠ ଓ ସନ୍ଧ୍ୟାବନ୍ଦନା କାର୍ଯ୍ୟକ୍ରମ ପ୍ରଭୃତିରେ ମନୋନିବେଶ କଲେ ।

ଗ୍ରୀଷ୍ମ ଗ୍ରୀଷ୍ମ ଜେଲ ଭିତରେ ସାଂଘାତିକ ମେଲେରିଆ ବ୍ୟାଧି ବ୍ୟାପିବାକୁ ଲାଗିଲା । ବହୁତଲୋକ ସେଥିରେ ଆକ୍ରାନ୍ତ ହୋଇ ଫାଙ୍କା ହରାଇ ଅକାଳରେ ମୃତ୍ୟୁ ବରଣ କଲେ ।

ବାପ ପୁଅ ଭିନ୍ନ ଭିନ୍ନ ଖୁଆଡ଼ରେ ବନ୍ଦୀ ହୋଇ ଥାଆନ୍ତି । ଦିନେ ବଡ଼ପୁଅ ନବକୁମାର ଆସି ବାପାଙ୍କୁ କହିଲା—"ସାନଭାଇ ହଠାତ୍ ସେ ରୋଗରେ ପଡ଼ି ତାହାର ଦେହର ତାପ ବହୁତ ବଢ଼ିଯାଇଛି ଓ ସେ ଆଖି ଫିଟାଉନାହିଁ କି ଉଁ ଚୁଁ କରି କଥାବାର୍ତ୍ତା ମଧ୍ୟ କହୁନାହିଁ ।"

ବାପା ସଙ୍ଗେ ସଙ୍ଗେ ସାନପୁଅକୁ ଦେଖିବାକୁ ଦଉଡ଼ିଲେ । ଏହାଭିତରେ ଭୀମସିଂହ ପ୍ରଭୃତି ସୂର୍ଯ୍ୟକୁମାରଙ୍କୁ ଜେଲର ଡାକ୍ତରଖାନାକୁ ନେଇଯାଇଥିଲେ । ପିଲାଙ୍କ ଖୁଆଡ଼ରୁ ସେ ଡାକ୍ତରଖାନା ଗଲେ ।

ଭିକାରିବାବୁ ଦେଖିଲେ ଗୋଟିଏ ଦଉଡ଼ି ଖଟିଆ ଉପରେ ପୁଅ ନିର୍ଜୀବ ପରି ପଡ଼ିରହିଛି । ଭୀମସିଂହ ତା' ଗୋଡ଼ ପାଖରେ ବସି ତା' ଦେହରେ ହାତ ବୁଲାଉଛି । ତା'ଆଖି ଛଳ ଛଳ ହେଉଛି । ଡାକ୍ତର ଆସି ପାଖରେ ଠିଆହେଲେ । ସମସ୍ତେ ଡାକ୍ତରଙ୍କ ମୁହଁକୁ ଚାହିଁଲେ । ଡାକ୍ତରଙ୍କର ମୁହଁ ଗମ୍ଭୀର । ସେ କହିଲେ—ମେଲେରିଆ ହଠାତ୍ ମୁଣ୍ଡକୁ ଧରିଦେଲା । ଏଥିରୁ ବର୍ତ୍ତିବା ଆଶା କମ୍ ; ତଥାପି ଚେଷ୍ଟା କରାଯିବ । ଭାଗ୍ୟରେ ଥିଲେ ରୋଗୀ ବଞ୍ଚିଯାଇପାରେ । ଏହା ଶୁଣି ଭିକାରିବାବୁ ଅକ୍ଳାନ୍ତମାରି ବସିପଡ଼ିଲେ ।

ଦିନେ ଦୁଇଦିନ ଅଜ୍ଞାନ ଅବସ୍ଥାରେ ପଡ଼ିରହିବା ପରେ ସୂର୍ଯ୍ୟକୁମାର ଟିକିଏ ଆଖି ମିଟି ମିଟି କଲା । ବୋଉ, ଭାଇ, ଭୀମଦା ଏପରି ଅସ୍ପଷ୍ଟ ଉଚ୍ଚାରଣ କରି ଦୁଇ ଚାରିଥର ବାଇବାଇଲେଇଲା ପରି ଡାକିଲା । ତା'ପରେ ବାପାଙ୍କ ମୁହଁକୁ ଆଖି ମେଲାକରି ଚାହିଁରହିଲା । ଆଖିପତା ଆଉ ପଡ଼ିଲା ନାହିଁ । ଆଖିବାଟେ ପ୍ରାଣବାୟୁ ଉଡ଼ିଗଲା ।

ସ୍ତ୍ରୀର ମୃତ୍ୟୁସମ୍ବାଦ ହଜାରିବାଗ ଜେଲରେ ଶୁଣିଥିଲେ । ଏବେ ପାଟନା ଜେଲରେ ତାଙ୍କର ଆଦରର କୋଳପୋଛା ପୁଅ ତାଙ୍କରି ସାମନାରେ ଚାଲିଗଲା ।

ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇନଥିଲେ ହୁଏତ ସେମାନଙ୍କୁ ହରାଇବାକୁ ପଡ଼ିନଥାନ୍ତା । ଆଜି ଦେଶମାତୃକାର ସେବା କରିବାକୁଯାଇ ତାଙ୍କ ଜୀବନର ଅମୂଲ୍ୟ ରତ୍ନ ଦୁଇଟି ହରାଇବାକୁ ପଡ଼ିଲା ।

ସେକଥା ଭାବି ଯେପରି ତାଙ୍କୁ ଅନୁସନ୍ତୋଷ ମିଳିଲା । ଦେଶସେବକ ଭାବରେ ହୁଏତ ଭଗବାନ ତାଙ୍କଠାରୁ ଏହି ଦାନ ଆଶା କରନ୍ତି ଓ ତାଙ୍କର ପରୀକ୍ଷା କରୁଛନ୍ତି ।

ଭଗବାନଙ୍କର ଇଚ୍ଛା ପୂରଣ ହେଉ । ସେ ମଙ୍ଗଳମୟ । ଏହା ହୁଏତ ଦେଶର ମଙ୍ଗଳ ପାଇଁ ଅଭିପ୍ରେତ । ହଉ, ଏଇଥିପାଇଁ ତାଙ୍କୁ ଏସବୁ ଦୁଃଖ ସହିବାକୁ ହେଉଛି । ତାହାର ସିଦ୍ଧି ହେଉ । ଭାରତ ସ୍ୱାଧୀନ ହେଉ । ସେ ଏଣିକି ଯୋଗୀପରି ବସି ଦିନରାତି ଗୀତା ପଢ଼ିବାକୁ ଲାଗିଲେ ।

ନବକୁମାର ଭାଇର ମୃତ୍ୟୁରେ ଅଧୀର ହୋଇଉଠିଲା । ସରକାର ଓ ଜେଲ କର୍ତ୍ତୃପକ୍ଷଙ୍କ ଉପରେ ତା'ର କ୍ରୋଧ ବଢ଼ିଲା । ସରକାର ସେଠାରେ ସେମାନଙ୍କୁ ଗାଈ ଘୁଷୁରିଠାରୁ ହୀନ ଅସ୍ୱାସ୍ଥ୍ୟକର ପରିସ୍ଥିତିରେ ରଖି ତିଳ ତିଳ କରି ମାରୁଛନ୍ତି ବୋଲି ତା'ର ଦୃଢ଼ଧାରଣା ହେଲା । ଭଲ ଔଷଧ, ଇଞ୍ଜେକ୍‌ସନ ଓ ଚିକିତ୍ସାର ବ୍ୟବସ୍ଥା ହୋଇଥିଲେ ହୁଏତ ତା'ର ଭାଇ ମରିନଥାନ୍ତା । ଔଷଧପତ୍ରର ଚିକିତ୍ସାର ବ୍ୟବସ୍ଥା ନାହିଁ, ଇଂରେଜ ସରକାରଙ୍କ ମୃତ୍ୟୁହେଲେ ହିଁ ତା'ର ଭାଇର ଆତ୍ମା ସନ୍ତୋଷ ଲାଭ କରିବ । ସେ ସରକାରଙ୍କ ମୃତ୍ୟୁକଥା ଭାବି ପାଗଳପରି ବୁଲି ଗୁଣୁ ଗୁଣୁ ହୋଇ ଗୀତ ଗାଏ—

ବନ୍ଧୁ ସେଇ ଚିନ୍ତା, ବନ୍ଧୁ ସେଇ ଚିନ୍ତା, ସରକାର ଶବଦାହ ହେବ କେବେ
ଦେଖିବି ମୁଁ ତା'ର ଶେଷ ଚିତା ।
କେତେ ଲୋକଙ୍କୁ ସେ ଦିଏ ଫାଶୀ, ମାରୁଛି ବନ୍ଦୀଙ୍କୁ ଘଷି ଘଷି
ଗର୍ଭିଣୀ ସ୍ତ୍ରୀଙ୍କୁ ଗୋଇଠା ପ୍ରହାର
ନଭୁଲିବି ବନ୍ଧୁ ସେଇ କଥା ।
ବନ୍ଧୁ ସେଇ ଚିନ୍ତା, ବନ୍ଧୁ ସେଇ ଚିନ୍ତା, ସରକାର ଶବ ଦାହ ହେବ କେବେ
ଦେଖିବି ମୁଁ ତାର ଶେଷ ଚିତା ।

ଭୀମ ସିଂହ ହିଁ କେବଳ ତାକୁ ସାନ୍ତ୍ୱନା ଦେଇପାରନ୍ତି । ତାଙ୍କ ସଙ୍ଗେ ଗୁପ୍ତ ମନ୍ତ୍ରଣାରେ ବିପ୍ଳବ ପାଇଁ ତା'ର ମନ ଆଗଭର ହୋଇଉଠେ । ଏଥର ଜେଲରୁ ଖଲାସ ହୋଇଗଲେ ସେ ଆଉ ସତ୍ୟାଗ୍ରହୀ ନହୋଇ ସନ୍ତ୍ରାସବାଦୀ ଦଳରେ ଯୋଗଦେବାପାଇଁ ସଙ୍କଳ୍ପ କଲା ।

ରାମଶଙ୍କର ଦାଦା ସତ୍ୟାଗ୍ରହୀଙ୍କ ଭିତରେ ଭୀମସିଂହ ହୋଇ ଜେଲରେ ଲୁଚିରହିଥିଲେ ମଧ୍ୟ ସେ ବେଶିଦିନ ସରକାରଙ୍କ ଆଖିରେ ଧୂଳି ଦେଇପାରିଲେନାହିଁ । ତାଙ୍କୁ ଧରିଦେଲେ ପୁରସ୍କାର ମିଳିବ ବୋଲି ସରକାର ଘୋଷଣା କରିଥିଲେ । ଜେଲ ଭିତରର ଜଣେ ଗୋଇନ୍ଦା ସତ୍ୟାଗ୍ରହୀ ସେ ପୁରସ୍କାର ଲାଭ କଲା । ସଶସ୍ତ୍ର ପୋଲିସ ଆସି ହାତକଡ଼ା ପିନ୍ଧାଇ ତାଙ୍କୁ ସେଠାରୁ ଅନ୍ୟତ୍ର ନେଇଗଲାବେଳେ ସେ ବନ୍ଦେ ମାତରଂ ଧ୍ୱନିଦେଇ ହସି ହସି ଚାଲିଗଲେ । ସେ ଗଲାବେଳେ ନବକୁମାରଙ୍କ ଉପରେ ତାଙ୍କ ଆଖି ପଡ଼ିଲା । ସେ ତାକୁ ଚେଇଁଲେଇ ଗୁହିଁ କଅଣ ଇଙ୍ଗିତ ଦେଇଗଲେ । କିଛିଦିନ ପରେ ଭୀମସିଂହଙ୍କର ବିଚାର ହୋଇ ତାଙ୍କୁ ଫାସିଖୁଣ୍ଟରେ ଝୁଲାଇ ଦିଆଯାଇଥିବାର ସମ୍ବାଦ କେଉଁବାଟେ ଆସି ସେ ଜେଲ୍‌ରେ ପହଞ୍ଚିଲା ।

ତାଙ୍କର ଫାଶୀର ପ୍ରତିବାଦ କରି ତାଙ୍କ ପାଇଁ ଶୋକସଭା କରିବାକୁ ନବକୁମାର ନେତାମାନଙ୍କୁ କହିଲେ । କିନ୍ତୁ ହିଂସାକାଣ୍ଡ କାର୍ଯ୍ୟକୁ କଂଗ୍ରେସ ସତ୍ୟାଗ୍ରହୀ ପସନ୍ଦ କରେନାହିଁ

ବୋଲି ନେତାମାନେ ତାଙ୍କର ପ୍ରସ୍ତାବକୁ ପ୍ରତ୍ୟାଖାନ କଲେ । ମା' ଯାଇଥିଲେ, ଲକ୍ଷ୍ମଣ ପରି ସ୍ନେହୀ ଡେଙ୍ଗସ୍ଥାନ୍ ଛାଡ଼ି ଯାଇଥିଲା । ଏବେ ତା'ର ରାଜନୈତିକ ଗୁରୁ ମଧ୍ୟ ଚାଲିଗଲେ । ତା'ର ପ୍ରାଣ ହାହାକାର କରିଉଠିଲା ।

ଜେଲ୍ ଭିତରେ ରୁଷ୍ ବିପ୍ଳବର କମ୍ୟୁନିଜମ୍ ବାତ୍ତ୍ୟା ଖେଳିବା ଆରମ୍ଭ କରୁଥିଲା । ଜବାହରଲାଲ ପ୍ରଭୃତି କେତେକ ତରୁଣନେତା ସାମ୍ୟବାଦ ପନ୍ଥାକୁ ପସନ୍ଦ କରୁଥିବାରୁ କେତେକ କର୍ମୀ ସେ ଆଡ଼କୁ ଆକୃଷ୍ଟ ହୋଇଥିଲେ । ସଂଗ୍ରାମୀ ମନ ସବୁବେଳେ ମନକୁ ପାଇଲା ଭଳି ଗୋଟିଏ ଆଦର୍ଶ ଚାହେଁ ଓ ସେଇ ଆଦର୍ଶ ପଛରେ ଦିନାକେତେ ଅନ୍ଧ ଭାବରେ ଗୋଡ଼ାଏ । ଅହିଂସା ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେଇ ନିଜର ମନ ଓ ବିବେକକୁ ବେଶିଦିନ ସଂଯମ ଦଉଡ଼ିରେ ବାନ୍ଧିରଖିବା ଯୁବକ ପକ୍ଷରେ କଷ୍ଟ । ତା' ତୁଳନାରେ ସଙ୍ଗିହିଙ୍କ ପାଇଁ କାର୍ଯ୍ୟ କରିବାକୁ କମ୍ୟୁନିଷ୍ଟ ବା ଲଗାମଛଡ଼ା ସାମ୍ୟବାଦୀ ଆନ୍ଦୋଳନରେ ଝାସଦେବାକୁ ପସନ୍ଦ କରିବା ଯେକୌଣସି ଭାବପ୍ରବଣ ତ୍ୟାଗୀ ଯୁବକ ପକ୍ଷରେ ସ୍ୱାଭାବିକ । ସତ୍ୟାଗ୍ରହ ଆନ୍ଦୋଳନରେ କେବଳ ସରକାରଙ୍କ ବିରୁଦ୍ଧରେ ଲଢିବାକୁ ପଡ଼ୁଥିଲା; କିନ୍ତୁ ସାମ୍ୟବାଦୀ ଆନ୍ଦୋଳନରେ କଳା ଗୋରା ସମସ୍ତ ଧନୀ ସମାଜ ବିରୁଦ୍ଧରେ ସଂଗ୍ରାମ ଚଳାଇବାକୁ ପଡ଼ିବ; ସମାଜର ଶୋଷଣକୁ ପରାଧୀନତାଠାରୁ ଅଧିକ ଗୁରୁତ୍ୱ ଦେବାକୁ ପଡ଼ିବ ।

ନବକୁମାରଙ୍କ ମନକୁ ସେ ଭାବଧାରା କିଞ୍ଚିତ ସାନ୍ତ୍ୱନା ଦେଲା । କେତେଗୁଡ଼ିଏ ସମବୟସ୍କ ଯୁବକଙ୍କ ସହିତ ଆଲୋଚନା ହେଲା । ଜେଲରୁ ମୁକ୍ତ ହେଲେ ଓଡ଼ିଶାରେ ସାମ୍ୟବାଦ ଆନ୍ଦୋଳନ ଆରମ୍ଭ କରିବାକୁ ସେମାନେ ସ୍ଥିର କଲେ ।

ଚାହୁଁ ଚାହୁଁ ସମୟ ଗଡ଼ିଗଲା । ନବକୁମାରଙ୍କର ଜେଲକାଳ ପୂରିଗଲା । ସେ ବାପାଙ୍କୁ ମୁଣ୍ଡିଆ ମାରି ତାଙ୍କଠାରୁ ଆଶୀର୍ବାଦ ଗ୍ରହଣ କଲେ । ତାଙ୍କ ସଙ୍ଗେ ଖଲାସ ହେବାକୁ ଥିବା ଆଉକେତେ ଓଡ଼ିଆ ବନ୍ଧୁଙ୍କୁ ନେଇ ଜେଲରୁ ମୁକ୍ତିଲାଭ କଲେ ।

## ସାତ

ଦୀର୍ଘଦିନ ଜେଲ୍ ଜୀବନ ଯାପନ ପରେ ମୁକ୍ତି । ସେମାନେ ପାଟନା ସହରଯାକ ଏଣେ ତେଣେ ଦଉଡ଼ାଦଉଡ଼ି କରି ବୁଲିବାକୁ ଲାଗିଲେ । ପୋଷା ଶୁଆ ପଞ୍ଜୁରୀରୁ ଉଡ଼ିଯାଇ ନିଜକୁ ଅସହାୟ ମନେକରି ଏପଟ ସେପଟ ହୋଇ ଘର ପାଖେ ପାଖେ ଉଡ଼ି ବୁଲିଲା ପରି ତାଙ୍କ ମନ ସେ ଜେଲ ପାଖେ ପାଖେ ଉଡ଼ିବୁଲୁଥିଲା । ଜେଲରୁ ମିଳିଥିବା ପଇସାରେ ସେ ହୋଟେଲମାନଙ୍କରେ ମନଇଚ୍ଛା ନାନା ସୁସ୍ୱାଦୁ ଖାଦ୍ୟ ପଦାର୍ଥ ଖାଇବାକୁ ଲାଗିଲେ ।

ହୋଟେଲରେ ବସି ଖାଇଲାବେଳେ କ ବାଟରେ ଚାଲିଲାବେଳେ 'ଏଇ ଓ୍ୟାଡର ଅ.ସିଗଲ' ବୋଲି କାହାକୁ ଦେଖି ଚମକପଡ଼ି ପରମୁହୂର୍ତ୍ତରେ ସେମାନେ ମନେ ମନେ ନିଜକୁ ହସନ୍ତି ।

ସେମାନେ ଦେଖିଲେ, ସେ ସହରରେ ସ୍ୱାଭାବିକ ଧାରାରେ ଜୀବନଯାତ୍ରା ଚାଲିଛି । ସେମାନେ ଜେଲକୁ ଗଲାବେଳର ଉତ୍ତେଜନା ଆଉ କେଉଁଠି ଦେଖାଯାଉନାହିଁ । ସତ୍ୟାଗ୍ରହ ଆନ୍ଦୋଳନ ପୂରା ଧମେଇଯାଇଛି । କାଁ ଭାଁ ଗାନ୍ଧିଟୋପି ପିନ୍ଧା ଗୋଟାଏ ଦୁଇଟା ଲୋକ ନୀରବରେ ଚାଲିଛନ୍ତି । ଶୋଭାଯାତ୍ରା ନାହିଁ କି ସ୍ଲୋଗାନ ଧ୍ୱନି ନାହିଁ ।

ଦିନଯାକ ବୁଲି ବୁଲି ସେମାନେ ସନ୍ଧ୍ୟାରେ ଗାଡ଼ିରେ ଚଢ଼ିଲେ । ଗାଡ଼ି ଛୁଟିବା-ମାତ୍ରେ ଫୁଲୁଫୁଲିଆ ପବନରେ ସେମାନଙ୍କୁ ନିଦ ଲାଗିଲା । ସକାଳେ କଲିକତାରେ ଗାଡ଼ି ଲାଗିଲା । ସେମାନେ ଗାଡ଼ିରୁ ଓହ୍ଲାଇ ଷ୍ଟେସନରେ ଏପଟ ସେପଟ ହେବାପରେ, ଟ୍ରାମରେ ଚଢ଼ି କଲିକତା ସହର ଭିତରକୁ ଗଲେ । କଲିକତା କେଡ଼େ ବଡ଼ ସହର । ସେଠାରେ କେଡ଼େ ବଡ଼ ବଡ଼ କୋଠା । ଲୋକଗୁଡ଼ାକ ଦଉଡ଼ାଦଉଡ଼ି କରୁଛନ୍ତି । ସେମାନଙ୍କ ଡର ନଥିଲା ପରି ଠେଲାଠେଲି ହୋଇ ଟ୍ରାମରେ ଓଠିକି କିଛିବାଟ ଯିବାପରେ, ତାଙ୍କ କିଏ ପଛରୁ ଗୋଡ଼ାଇଲା ପରି ଏଣିକି କେଣିକି ଚାହିଁ, ଗାଡ଼ି ଧମେଇଲା କ୍ଷଣି ଝପ୍‌ଝାପ୍ ଓହ୍ଲାଇପଡ଼ୁଛନ୍ତି । ନିଜ ନିଜ ଭିତରେ କଥାବାର୍ତ୍ତା ହେବାକୁ ମଧ୍ୟ କାହାର ସମୟ ନାହିଁ । ସେମାନେ ସମସ୍ତେ ମଫସଲିଆ ଓଡ଼ିଆ ପିଲା । ସେମାନେ ମାନବ ସ୍ରୋତରେ ଭାସିଗଲା ପରି ଭାସିଯାଇ 'ଚଉରଙ୍ଗି'ରେ ପହଞ୍ଚିଗଲେ । ଦିନରେ ଆଲୁଅ ଜଳୁଚି । ସାହେବ ସାହେବାଣୀ ଗୁଡ଼ାକ ପଲପଲ ହେଉଛନ୍ତି । ସେମାନଙ୍କୁ ଦେଖିଲେ ଲୋକଗୁଡ଼ାକ ସନ୍ତର୍ପଣରେ ଅଡ଼େଇ ହୋଇ ଚାଲିଯାଉଛନ୍ତି ।

ରାସ୍ତାକଡ଼ରେ ବସିଥିବା ଗୋଟିଏ ଓଡ଼ିଆ ପାନ ଦୋକାନ ପାଖରେ ସେମାନେ ଯାଇ ଠିଆହେଲେ । ଲୋକଟି ପୂରା ଓଡ଼ିଆ ପରି ଦିଶୁଛି । ଓଡ଼ିଆ ଖିଲିପାନ ଭାଙ୍ଗୁଛି । ସେମାନେ ତା' ସଙ୍ଗେ ଓଡ଼ିଆରେ ଅ.ଲାପ କରିବାକୁ ଆରମ୍ଭ କଲେ; କିନ୍ତୁ ସେ ଓଡ଼ିଆରେ ନ କହି ଅଶୁଦ୍ଧ ବଙ୍ଗଳା ଭାଷାରେ ଉତ୍ତର ଦେଲା । ସେତେବେଳେ ବଙ୍ଗାଳିମାନେ ଓଡ଼ିଆଙ୍କୁ ହେୟଜ୍ଞାନ କରୁଥାଆନ୍ତି । ତେଣୁ ଓଡ଼ିଆମାନେ ନିଜର ପରିଚୟ ନଦେଇ ବଙ୍ଗଳା ଭାଷାରେ କହିବାକୁ ଚେଷ୍ଟାକରନ୍ତି । ସେ ଦୋକାନୀଟି ଓଡ଼ିଆ ଭାଷା କହି ନିଜକୁ ଓଡ଼ିଆ ବୋଲି ପରିଚୟ ଦେବା ପାଇଁ ସଙ୍କୋଚବୋଧ କରୁଥିଲା । ଓଡ଼ିଆ ବୋଲି ଜାଣିଲେ ବୋଧହୁଏ ତା'ର ଖିଲିର ଦାମ୍ କମିଯିବାର ବା ବଙ୍ଗାଳି ଗ୍ରାହକ କମିଯିବାର ସମ୍ଭାବନା ଥିଲା ।

ଯାହାହେଉ ନିଜ ଭାଷାଭାଷୀ ଲୋକ ଦେଖି ତା'ର ମନ ନିଶ୍ଚୟ ଅ.ନନ୍ଦ ହୋଇଥିବ । ସେ ବଡ଼ ଯତ୍ନରେ ସେମାନଙ୍କ ପାଇଁ ପାନ ଖିଲି ସଜାଉଥିଲା । ସେ ଦେଖିଲା, ସେମାନଙ୍କ ଭିତରୁ ଜଣକ ଦେହରେ ଅଜାଣିଆ ଭାବରେ ଘଷିହୋଇ ଜଣେ ଅପରିଚିତ ଲୋକ ଦଉଡ଼ି ପଳାଇଲା । ସେତିକିବେଳେ ତା' ପାଟିରୁ ଓଡ଼ିଆ ବାହାରିପଡ଼ିଲା । ସେ ପାଟିକରି କହିଲା "ଗୁରୁ, ଗୁରୁ, ପକେଟମାରଟାଏ କଅଣ ନେଇ ଚାଲିଗଲା । ବାବୁ ସାବଧାନ ହେଲ ନାହିଁ । ଏ କଲିକତାଟା ଗୋଟାଏ ଡାକୁଙ୍କ ସହର । ଏବେ ପକେଟ ଦେଖ ।" ପିଲାଟି ଚମକିପଡ଼ି ତା'ର

ପକେଟରେ ହାତ ପୂରାଇ ଦେଖିଲ ପକେଟ ଖାଲି—ମନିବ୍ୟାଗ୍‌ଟି ଗ୍ରଲିଯାଇଛି । କଲିକତାରେ ଚୋର ପକେଟମାର ପ୍ରଭୃତିଙ୍କ ପ୍ରତି ସାବଧାନ ହୋଇ ଚଳାଚଳ ହେବାକୁ କହି ପାନବାଲା ତାଙ୍କୁ ପାନଖିଲ ବଢ଼ାଇ ବିଦାୟ ଦେଲ ।

ସେମାନେ ସେଠାରୁ ଯାଇ ଷ୍ଟ୍ରେଟ ଗଳିରେ ପଶି, ଶସ୍ତା ହୋଟେଲର ସନ୍ଧାନ ନେଲେ । ସେ ହୋଟେଲରେ ଛିଆଦିଆ କଟୋରି ଦୋକାନୀକୁ ପଇସା ଦେଇ ରାସ୍ତାକୁ ଗଡ଼ିଲାବେଳକୁ ପଛରୁ ଦୋକାନୀ ପାଟି କଲ, "ବାବୁ ପଇସା ନ ଦେଇ କୁଆଡ଼େ ପଳାଉଛ ?" ସେ ପାଟି କରୁ କରୁ ଦୁଇ ଚାରିଟା ଗୁଣ୍ଡାଶ୍ରେଣୀୟ ଲୋକ ଆସି ତାଙ୍କୁ ଘେରିଯାଇ ପଇସା ଦେଇ ଯିବାକୁ ଦାବିକଲେ । ସେମାନେ ପଇସା ଦେଇଯାଇଛନ୍ତି ବୋଲି ଯେତେ କହିଲେ ଗୁଣ୍ଡାମାନେ ତାହା ନଶୁଣି ତାଙ୍କୁ ଧମକାଧମକି କରିବା ଆରମ୍ଭ କରିଦେଲେ, 'ଠକ' 'ଠକ' ବୋଲି ପାଟିକଲେ । ତାଙ୍କ ଚାରିପଟେ ଆଉ ଗୁଡ଼ାଏ ଲୋକ ଜମାହେବାକୁ ଲାଗିଲେ । ପୋଲିସ କନେଷ୍ଟବଲଟିଏ ଦୂରରେଇହୋଇ ଠିଆହୋଇ ସେ ଦୃଶ୍ୟ ଦେଖୁଥିଲ; କିନ୍ତୁ ତାଙ୍କୁ ସାହାଯ୍ୟ କରିବାକୁ ଆସିଲ ନାହିଁ । ଗୁଣ୍ଡା ଓ ଠକମାନଙ୍କ ପାଖରେ ଭଲଲୋକ ଠକ । ସେମାନେ ତରତରରେ ଦୋହରି ପଇସା ଦେଇ ସେଠୁ ପ୍ରାଣପଣେ ପଳାଇଆସି ରେଳ ଷ୍ଟେସନରେ ପହଞ୍ଚିଲେ ।

ଏ ଘଟଣାରେ କଲିକତା ସହରର ଆବହାଓ୍ୱା ବିଷୟରେ ତାଙ୍କର ସମ୍ୟକ୍ ଧାରଣା ହେଲ । ସେଠାରେ ସରକାରଙ୍କ ଅଇନ-ଶୃଙ୍ଖଳାରକ୍ଷାକାରୀ ପୋଲିସଙ୍କ ବ୍ୟବହାର ମଧ୍ଯ ଦେଖିଲେ । ପୋଲିସ ଯେ ଗୁଣ୍ଡାମାନଙ୍କଠାରୁ ଭାଗ ନିଅନ୍ତି ଓ ସେମାନଙ୍କ ସହିତ ତାଙ୍କର ସଲ୍ଲ ଥାଏ, ସେ ବିଷୟରେ ତାଙ୍କର ସନ୍ଦେହ ରହିଲନାହିଁ । ସେମାନଙ୍କ ଭିତରେ ଏସବୁ ବିଷୟରେ ବହୁ ସମୟ ଧରି ଆଲୋଚନା ଚାଲିଲ । ସାମ୍ୟବାଦର ଶ୍ରେଣୀସଂଘର୍ଷରେ ନିଃସମ୍ବଳ ଓ ସମ୍ବଳବାନ୍ ଦୁହିଁଙ୍କ ମଝିରେ ଏ ଶ୍ରେଣୀୟ ଲୋକଙ୍କର ସ୍ଥାନ କେଉଁଠି ନିରୂପଣ କରାଯିବ, ସେ ସମ୍ବନ୍ଧରେ ମଧ୍ଯ ଯୁକ୍ତିତର୍କ ହେଲ ।

ସନ୍ଧ୍ୟାରେ ଏକ୍‌ସପ୍ରେସ୍ ଗାଡ଼ିରେ ବସି ସେମାନେ 'ପୁରୀ' ଅଭିମୁଖେ ଯାତ୍ରାକଲେ । ଦିନଯାକ ବୁଲି ବୁଲି ତାଙ୍କୁ ନିଦ ଲାଗୁଥିଲ । ଗାଡ଼ି ଗୁଡ଼୍ ଗୁଡ଼୍ ସେମାନେ ଢୋଳେଇବାକୁ ଆରମ୍ଭ କଲେ; କିନ୍ତୁ ପ୍ରତ୍ୟେକ ଷ୍ଟେସନରେ ଗାଡ଼ି ରହିବା ସଙ୍ଗେ ସଙ୍ଗେ "ହେ ରାମାଭାଇ କୁଆଡ଼େ ଗଲୁ ? ହେ ଶାମାଭାଇ କୁଆଡ଼େ ଗଲୁ ?" ଚିତ୍କାରରେ ସେମାନଙ୍କ ନିଦ ଭାଙ୍ଗି-ଯାଉଥାଏ । ଓଡ଼ିଆ କୁଲିମାନେ ପଞ୍ଝା ପଞ୍ଝା ହୋଇ ମେଣ୍ଢା ପଲପରି ଗୋଟିଏ ଡବାରେ ପଶିବା ପାଇଁ ଚେଷ୍ଟା କରନ୍ତି; କିନ୍ତୁ ଯାତ୍ରୀ ଭିଡ଼ ଯୋଗୁ ଗାଡ଼ି ଛାଡ଼ିଲବେଳକୁ କେତେକ ସେ ଡବାରେ ପଶିନପାରି ବିକଳରେ ଅନ୍ୟ ଡବାରେ ପଶିଯାଆନ୍ତି । ଆଉ ଷ୍ଟେସନରେ ଗାଡ଼ି ରହିଲବେଳକୁ ଖୋଜାଖୋଜି ଚାଲେ । ଗୁଡ଼ାଏ ଷ୍ଟେସନ ଅତିକ୍ରମ ହେଲପରେ ବୋଧହୁଏ ସେମାନେ ସମସ୍ତେ ଏକାଠି ହୋଇ ପାରିଲେ, ସେମାନଙ୍କ ଚିତ୍କାର ବନ୍ଦହୋଇଗଲ । କେଲ ଫେରନ୍ତା ସାଥୀମାନେ ନିର୍ବିଘ୍ନରେ ଢୁଲାଇବାର ସୁବିଧା ପାଇଲେ ।

ଭୋର ସକାଳବେଳକୁ ପୁରୀ ଏକ୍‌ସ୍‌ପ୍ରେସ ପୁରୀ ଷ୍ଟେସନରେ ଲାଗିଲା । ବନ୍ଦୀମାନେ ଆନନ୍ଦରେ ଗାଡ଼ିରୁ ତଳକୁ ଓହ୍ଲାଇପଡ଼ିଲେ । ସେମାନଙ୍କ ଭିତରୁ କେତେକଙ୍କର ଭାଇବନ୍ଧୁ ଷ୍ଟେସନକୁ ଆସିଥିଲେ । ସେମାନଙ୍କୁ ଯୁଦ୍ଧଫେରନ୍ତା ବିଜୟୀ ବୀରର ସମ୍ମାନ ଦେଇ ଜୟଧ୍ୱନିକରି ପାଛୋଟିନେଲେ । ଷ୍ଟେସନ ଲୋକାରଣ୍ୟ ହୋଇଥିଲେ ମଧ ଅନ୍ୟମାନେ ତାଙ୍କର ଜେଲରୁ ଫେରିବାକୁ ମାମୁଲି ଘଟଣା ପରି ମନେକରି ସେମାନଙ୍କ ପ୍ରତି ଦୃଷ୍ଟିପାତ ନକରି ଯେ ଯୁଆଡ଼େ ଚାଲିଗଲେ । ସେ ଜୟଧ୍ୱନି ଆଉ ପ୍ରତିଧ୍ୱନିତ ହେଲା ନାହିଁ ।

ଯେଉଁମାନଙ୍କର ଭାଇବନ୍ଧୁ ଆସିଥିଲେ, ସେମାନେ ତାଙ୍କୁ ସାଙ୍ଗରେ ନେଇ ଚାଲିଗଲେ । ନବକୁମାର ଓ ତା'ର ଅନ୍ୟ ସାଥୀମାନେ ଷ୍ଟେସନରୁ ବାହାରି ଗୋଡ଼ରେ ବାଲି ଆଡ଼େଇ ଆଡ଼େଇ ଧର୍ମଶାଳାଆଡ଼କୁ ଚାଲିଲେ । ଚାଲିବା ବାଟରେ କେହି ତାଙ୍କ ପ୍ରତି ଦୃଷ୍ଟି ଦେଉନଥାନ୍ତି । ଗଲାବେଳ ଅବସ୍ଥା କଥା ଭାବି ତାଙ୍କୁ ଲାଗିଲା ଦେଶଟାରେ ଆଉ ଯେପରି ଜୀବନ ନାହିଁ, ଦେଶଟା ଯେପରିକି ଗୋଟାଏ ଶ୍ମଶାନ ପାଲଟିଯାଇଛି । ଜଗନ୍ନାଥେ ବୋଧହୁଏ ଦେଉଳ ଛାଡ଼ି କୁଆଡ଼େ ପଳାଇଯାଇଛନ୍ତି ।

ଧର୍ମଶାଳାରେ ରହିବାପରେ ଭବିଷ୍ୟତ କର୍ମପନ୍ଥା ବିଷୟରେ ଆଲୋଚନା ଚାଲିଲା । ପୂର୍ବ ଯୋଜନା ଅନୁସାରେ ସାମ୍ୟବାଦ ଆନ୍ଦୋଳନ ଆରମ୍ଭ କରିବାପାଇଁ ପୁରୀ ସହର ସେମାନଙ୍କର କାର୍ଯ୍ୟସ୍ଥଳୀ ରୂପେ ବଛାଯାଇଥିଲା । ସାମ୍ୟବାଦ ଆନ୍ଦୋଳନ ଦୁନିଆରେ ଶ୍ରମିକ ଆନ୍ଦୋଳନରୁ ଆରମ୍ଭ ହୋଇଥିଲା । ଓଡ଼ିଶାରେ ତ ସେତେବେଳେ କୌଣସି ବଡ଼ କଳକାରଖାନା ନଥିଲା, ତେଣୁ ସେମାନେ ଶ୍ରମିକଗୁଡ଼ିଏ ବା ପାଇବେ କୁଆଡୁ ? ଶ୍ରମିକଙ୍କଠାରୁ ମେହେନ୍ତରମାନେ ବେଶି ଗରିବ ଓ ଦଳିତ । ତେଣୁ ସେହି ସର୍ବହରା ହରିଜନମାନଙ୍କୁ ଧରି ଆନ୍ଦୋଳନ ଆରମ୍ଭ କରିବା ସ୍ଥିର ହୋଇଥିଲା ।

ଧର୍ମଶାଳାରେ ତ ଦିନେ ଦୁଇଦିନରୁ ବେଶି ରହିହେବ ନାହିଁ । ଜେଲରୁ ମିଳିଥିବା ପଇସା ବି ସରିଆସିଥାଏ । ରହିବାପାଇଁ ଘର ଦରକାର । ନିଜର ଜୀବନ ଧାରଣ ଛଡ଼ା ଆନ୍ଦୋଳନ, ଶୋଭାଯାତ୍ରା, ପ୍ରଚାରପତ୍ର ପ୍ରଭୃତି ପାଇଁ ବି ପଇସା ଦରକାର । ଏସବୁ ବିଷୟରେ ବହୁତ ବିଚାର ପରେ ଧର୍ମଶାଳାରୁ ଯାଇ ଗୋଟିଏ ମଠରେ ଆଶ୍ରୟ ନେବା ସ୍ଥିର ହେଲା ।

ପୁରୀରେ ବହୁତ ଗୁଡ଼ିଏ ଧର୍ମାନୁଷ୍ଠାନ ବା ମଠ ରହିଛି । ସେଥିରେ ଆଗନ୍ତୁକ ବାବାଜୀ ଓ ଭକ୍ତଙ୍କ ପାଇଁ ଦୁଆର ଝରକା ନଥିବା କୋଠରିଗୁଡ଼ିଏ ଥାଏ । ସତ୍ୟାଗ୍ରହ ସମୟରେ ଜଣେ ଅଧେ ମଠ ମହନ୍ତ କଂଗ୍ରେସ ଆଡ଼କୁ ଆକୃଷ୍ଟ ହୋଇ ବେଳେ ବେଳେ ସତ୍ୟାଗ୍ରହୀମାନଙ୍କୁ ସେପରି ଘରେ ଆଶ୍ରୟ ଦେଉଥିଲେ ।

ସେମାନେ ବୁଝାବୁଝି କରି ସେପରି ଜଣେ ମହନ୍ତଙ୍କ ମଠର ଖୋଲା ଘରଟିରେ ଆଶ୍ରୟ ନେଲେ । ମଠମାନଙ୍କରେ ପ୍ରତିଦିନ ଜଗନ୍ନାଥଙ୍କ ଭୋଗ ଅବଢ଼ା ଗରିବ ବାବାଜୀ ଓ ଅତିଥିମାନଙ୍କୁ ବଣ୍ଟାଯାଏ । ସେମାନେ ସେଇ ସଦାବର୍ତ୍ତି ଅବଢ଼ା ବଣ୍ଟନର ସୁବିଧା ନେଇ

ବେଳେ ବେଳେ ଉଦର ପୂରଣ କଲେ । ତାଙ୍କ ଭିତରୁ କେହି କେହି ପାଠପଢ଼ୁଆ ପିଲା ଟିଉସନ ଯୋଗାଡ଼ କରି କିଛି ପଇସା ରୋଜଗାର କରି ଆଣିବାର ପନ୍ଥା ଠିକ୍ କଲେ ।

ପ୍ରତ୍ୟେପନ୍ଥ ଛପାଗଲା । ମେହେନ୍ଦ୍ରର ସାହି କ୍ଲବ୍ ସଙ୍ଗଠନ ସବୁ ଗଢ଼ାଗଲା । ମେହେନ୍ଦ୍ରର ମେହେନ୍ଦ୍ରାଣୀମାନଙ୍କୁ ଶୋଭାଯାତ୍ରାରେ ନେଇ ସେମାନଙ୍କ ମଜୁରି ବଢ଼ାଇବା ପାଇଁ ଓ ପୋଷାକପତ୍ର ଯୋଗାଇବାପାଇଁ ମ୍ୟୁନିସପାଲିଟି ପାଖରେ ଦାବି କରାଗଲା ।

ସେମାନଙ୍କର ଏପରି ଆଚରଣ ମହନ୍ତ ମହାରାଜଙ୍କ କାନକୁ ଗଲା । ସେମାନଙ୍କର ଭଗ୍ନ ଭାବଧାରା ଓ ମେହେନ୍ତର ପ୍ରଭୃତି ଗ୍ରେଷ୍ଠଜାତିଙ୍କ ସଙ୍ଗେ ମିଳାମିଶା ସେ ପସନ୍ଦ ନକରି ସେମାନଙ୍କୁ ମଠ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଲେ ।

ନବକୁମାରଙ୍କୁ ଟିଉସନରୁ କିଛି ପଇସା ମିଳୁଥିଲା । ସେତେବେଳେ ଟିଉସନ ମିଳିବା କଷ୍ଟ ଥିଲା, କାରଣ ସ୍କୁଲମାନଙ୍କର ମାଷ୍ଟରମାନେ ଟିଉସନ ନକରି ସ୍କୁଲ ପାଠପଢ଼ାରେ ମନୋନିବେଶ କରି ଖୁବ୍ ଭଲଭାବରେ ପଢ଼ାଉଥିଲେ । ଭଲ ପିଲେ ସ୍କୁଲ ପାଠରେ ସନ୍ତୁଷ୍ଟ ରହି ଟିଉସନ ଦରକାର କରୁନଥିଲେ । ପାଠରେ ମନନଥିବା ଗେହ୍ଲାପିଲା ବା ବୁଦ୍ଧିନଥିବା ଘୋଷା ବଳଦ ପିଲାଙ୍କ ପାଇଁ କେବଳ ଥିଲାବାଲା ଅଭିଭାବକମାନେ ଟିଉସନ ମାଷ୍ଟ୍ର ରଖୁଥିଲେ ।

ନବକୁମାର ଦୁଇଟି ଭାଇଙ୍କୁ ପଢ଼ାଉଥିଲେ । ପିଲା ଦୁଇଟି ବଡ଼ ମାନ୍ଦା ଓ ନିଦ୍ରାଳୁ । ଜଣେ ତୃତୀୟବର୍ଷର ପାଇଁ ଓ ଅନ୍ୟ ଜଣକ ଦ୍ୱିତୀୟବର୍ଷର ପାଇଁ ମାଟ୍ରିକ ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହେଉଥିଲେ । ସନ୍ଧ୍ୟା ହେଉ ହେଉ ପବନରେ ବାଙ୍କ ନଡ଼ିଆଗଛ ପରି ତାଙ୍କ ମୁଣ୍ଡ ଏପଟୁ ସେପଟକୁ ଭାଙ୍ଗିପଡ଼ୁଥାଏ । ସେମାନଙ୍କ ଆଖିରେ ପାଣିମାରି ଲଙ୍କାମରିଚ ଘଷି ଯେତେ ଚେଷ୍ଟା କଲେ ମଧ୍ୟ ଆଖି ସହଜରେ ମେଲା ହୁଏନାହିଁ । ତେଣୁ ସନ୍ଧ୍ୟାରେ ପାଠ ପଢ଼ାଇବାକୁ ନଯାଇ ନବକୁମାର ସକାଳୁ ଯିବା ଆରମ୍ଭ କଲେ । ସକାଳୁ ବହୁତ ଭିଡ଼ାଭିଡ଼ିକରି ପାଣି ମରାମରି କଲାପରେ ସେମାନେ କଷ୍ଟେ ମଷ୍ଟେ ଉଠି ନିତ୍ୟକର୍ମ ଶେଷ କରିବାକୁ ଯାଆନ୍ତି । ଶୀଘ୍ର ଗଲେ ଯାହା ଡେରିକରି ଗଲେ ମଧ୍ୟ ସେଇଆ । ନବକୁମାର ତାଙ୍କୁ ଉଠାଇବାର ପ୍ରାୟ ଘଣ୍ଟାକ ପରେ ସେମାନେ ପଢ଼ା ଘରକୁ ଆସନ୍ତି । ପୂର୍ବ ଦିନର ପାଠ କିଛି କହିନେଆନ୍ତି, ପଛ ପାଠ ଭୁଲିବାରେ ସେମାନେ ଧୁରନ୍ଧର ।

ନବକୁମାର ତାଙ୍କ ବାପାଙ୍କୁ କହି ତାଗିଦ୍ କରିବାରୁ ସେମାନେ ସନ୍ଧ୍ୟାରେ ସକାଳେ ଦିଆହୋଇଥିବା ପାଠସବୁ କରିବାକୁ ସ୍ଥିର କଲେ, କିନ୍ତୁ ନିଦ ତାହା କରାଇଦେଲା ନାହିଁ । ତାହା ନହୋଇ ପାରିବାରୁ ଆଲାର୍ମ ଘଣ୍ଟାରେ ଚାବିଦେଇ ଭୋରରୁ ଉଠି ପାଠ କରିବାକୁ ସ୍ଥିର କଲେ । ଆଲାର୍ମ ବାଜି ବାଜି ବନ୍ଦହୋଇଗଲା, କିନ୍ତୁ ନିଦ ଭାଙ୍ଗିଲାନାହିଁ । ଶେଷରେ ଖଟରେ ନଶୋଇ ଗୋଟିଏ ଟେବୁଲ ଉପରେ ଦୁହେଁ ପରସ୍ପରର ଗୋଟିଏ ଲେଖାଏଁ ଗୋଡ଼ର ପାଦକୁ ଭଲକରି ବାନ୍ଧି ଶୋଇଲେ । ଜଣେ ଶୋଇବା ଅବସ୍ଥାରେ ତଳକୁ

ଗଡ଼ିପଡ଼ିଲେ ଅନ୍ୟ ଜଣଙ୍କ ଗୋଡ଼ ଭିଡ଼ିହୋଇ ଦୁହେଁ ନିଶ୍ଚୟ ନଦରୁ ଉଠିଯିବେ ବୋଲି ବିଚାରିଲେ ।

ତା'ର ପରଦିନ ସକାଳୁ ନବକୁମାର ତାଙ୍କ ଘରକୁ ଯାଇ ଦେଖିଲେ, ଗୋଟିଏ ଭାଇ ତଳେ ଗଡ଼ୁଛି, ତା'ର ଗୋଟେ ଗୋଡ଼ ଉପରକୁ ଟେକାହୋଇଛି । ଅନ୍ୟ ଭାଇଟି ଟେବୁଲ ଉପରେ ଶୋଇଛି, ତା'ର ବନ୍ଧାହୋଇଥିବା ଗୋଡ଼ଟି ତଳକୁ ଓହଳିଛି; କିନ୍ତୁ ଦୁଇ ଭାଇଯାକ ନଦରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି ।

ତାଙ୍କ ବାପା ସବୁ ଜାଣିଲେ; କିନ୍ତୁ ସେମାନଙ୍କ ପାଠରେ କିଛି ଉନ୍ନତି ହେବାର ନଦେଖି ମାଷ୍ଟ୍ର ତାଙ୍କୁ ପଢ଼ାଇ ପାରୁନାହାନ୍ତି ବୋଲି ଦୋଷଦେଇ ଟିଉସନ ବନ୍ଦ କରିଦେଲେ । ନବକୁମାରଙ୍କର ରହିବାକୁ ସ୍ଥାନ ନାହିଁ କି ଚଳିବାକୁ ଟିଉସନ ନାହିଁ । ଅନ୍ୟମାନଙ୍କର ଅବସ୍ଥା ବି ଠିକ୍ ସେହିପରି ହେଲା । ସେମାନେ କଅଣ କରିବେ ବୋଲି ଭାବିହେଲେ । ସେତିକିବେଳେ ପୁଣ୍ଣା ବଡ଼ଦାଣ୍ଡର ଗୋଟିଏ ଶ୍ରେଷ୍ଠ ହୋଟେଲର ମାଲିକ ବ୍ୟାଧିଗ୍ରସ୍ତ ହୋଇ ନିଜେ ହୋଟେଲ ବୁଝାବୁଝି କରିବାକୁ ଅସମର୍ଥ ହୋଇପଡ଼ିଥିଲେ । ସେ କିଛିଦିନ ଗାଁକୁ ଯାଇ ବିଶ୍ରାମ କରିବାକୁ ଇଚ୍ଛା କରୁଥିଲେ । ସେ ଜଣେ ଜାତୀୟବାଦୀ ଲୋକ । ତାଙ୍କ ସଙ୍ଗରେ ସେ ସାମ୍ୟବାଦୀ କର୍ମୀମାନଙ୍କ ଭିତରୁ ଜଣଙ୍କର ଭଲ ଘନିଷ୍ଠତା ଥିଲା । ସେଇ କର୍ମୀଙ୍କ ପ୍ରସ୍ତାବରେ ସେ ହୋଟେଲଟି ତାଙ୍କ ଅନୁପସ୍ଥିତିରେ ବୁଝିସୁଝି କରି ଚଳାଇବାକୁ ସେ କର୍ମୀମାନଙ୍କ ହାତରେ ହୋଟେଲଟି ଛାଡ଼ିଦେଇ, ମାଲିକ ନିଜ ଗ୍ରାମକୁ ଚାଲିଗଲେ ।

ସାମ୍ୟବାଦୀ ବନ୍ଧୁମାନେ ହୋଟେଲଟି ପାଇ ସେମାନଙ୍କ ଦୁଃଖ କଟିଗଲା ବୋଲି ମନେକଲେ । ସମସ୍ତେ ଲାଗିପଡ଼ି ହୋଟେଲଟି ଚଳାଇଲେ, ଦିନକୁଦିନ କର୍ମୀଙ୍କ ସଂଖ୍ୟା ବଢ଼ିଲା । ସମସ୍ତଙ୍କର ହୋଟେଲରେ ଖାଇବା ପିଇବା ଶୋଇବାର ସୁବିଧାହେଲା । ହୋଟେଲ ପଛପଟ ଖାଲିସ୍ଥାନରେ କୁସ୍ତି କସରତ, ଯୁଯୁତ୍ସୁ, ବାଡ଼ିଖେଳ ପ୍ରଭୃତି ଶିକ୍ଷା ଦିଆଗଲା । ପହେଲମାନ ଶିକ୍ଷକ ମଧ୍ୟ ସାମ୍ୟବାଦୀ କର୍ମୀଙ୍କ ଭିତରେ ସାମିଲ ହୋଇଗଲେ । ସେ ଅବୈତନିକ ମ୍ୟାନେଜର ଦାୟିତ୍ୱ ନେଲେ । ତାଙ୍କ ହାତ ଓ ବେକର ମାଂସପେଶୀ ଖୁବ୍ ମୋଟା ଓ ଟାଣ । ହୋଟେଲ ଅଫିସରେ ଗୋଟିଏ ବଡ଼ ଦର୍ପଣ ଟଙ୍ଗାଯାଇଥାଏ । ଅଭ୍ୟାସବଶତଃ ସବୁବେଳେ ସେ ହାତକୁ ଭାଙ୍ଗି ଓ ବେକକୁ ବାଙ୍କେଇ ତାଙ୍କ ମାଂସପେଶୀ ଦେଖୁଥାଆନ୍ତି ।

ସେ ଏପରି ଦେଖୁଥିଲାବେଳେ ଥରେ ଗୋଟିଏ କଉତୁକିଆ ଘଟଣା ଘଟିଲା । ସାମ୍ୟବାଦୀଙ୍କ ଭିତରୁ ଜଣଙ୍କର କଟକରେ ଜଣେ ଓକିଲ ବନ୍ଧୁ ଥିଲେ । ତାଙ୍କର ପୁରୀ ଆସିବାକୁ ପଡ଼ିବାରୁ ସେ ବନ୍ଧୁଙ୍କୁ ଆଗରୁ ଚିଠିଲେଖି ସେ ହୋଟେଲରେ ରହିବାର ବ୍ୟବସ୍ଥା କରି ଷ୍ଟେସନରୁ ଆସି ହୋଟେଲ ସାମନାରେ ପହଞ୍ଚିଲେ । ସେ ତାଙ୍କ ବନ୍ଧୁଙ୍କ ବିଷୟ ପଚାରିବା ସଙ୍ଗେ ସଙ୍ଗେ ମ୍ୟାନେଜର ବାବୁ ତାଙ୍କଆଡ଼କୁ ନଚାହିଁ ତାଙ୍କ ହାତର ମାଂସପେଶୀ ପରୀକ୍ଷା କରିବାରେ ବ୍ୟସ୍ତ ରହି ଗତାନୁଗତିକ ଭାବରେ ସେ କଏ, କାହାକୁ ଚାହାଁନ୍ତି, ସେଠାରେ

କାଅଣ ରହିବେ, ସେଠାରେ ଖାଇବେ, ପ୍ରଭୃତି ପ୍ରଶ୍ନ ପଚାରିବା ସଙ୍ଗେ ସଙ୍ଗେ ନିଜର ହାତ ଓ ବେକର ମାଂସପେଶୀକୁ ଜୋର୍ ଜୋର୍ ଚପେଟାଘାତ କରିବାକୁ ଲାଗିଲେ ।

ବିଚରା ଓକିଲ ବଡ଼ ଦୁର୍ବଳିଆ ଲୋକ । ସାମନାରେ ଏପରି ଗୁଣ୍ଡା ଆଚରଣ ଦେଖି ପଛେଇ ପଛେଇ ପ୍ରାଣଘେନି ସେଠାରୁ ପଳାଇ ଧର୍ମଶାଳାରେ ଆଶ୍ରୟ ନେଲେ । ପରଦିନ ସମୁଦ୍ର କୂଳରେ ବନ୍ଧୁଙ୍କ ସଙ୍ଗେ ଦେଖାହେଲା । ସେ ତାଙ୍କଠାରୁ ସବୁ ଶୁଣି କହିଲେ, "ଓକିଲ ହୋଇ ଡରିଗଲ, ସେ ଆମ ମ୍ୟାନେଜର । ସବୁବେଳେ ସେ ସେଇପରି କରୁଥାଏ, ବଡ଼ ସରୁଳିଆ ଟିକେ ।" ଓକିଲ ଉତ୍ତର ଦେଲେ, "ତୁମ ସାମ୍ୟବାଦୀମାନଙ୍କୁ ନମସ୍କାର, ତୁମ ସରୁଳିଆ ଟିକେକୁ ନମସ୍କାର । ତୁମେ ଯେତେ ଡାକିଲେ ବି ମୁଁ କଦାପି ସେଠାକୁ ଯିବନାହିଁ ।"

ହୋଟେଲରେ ଆଗରୁ ପ୍ଲେଟ-ସିଷ୍ଟମ୍ ଥିଲା । ଖାଦ୍ୟପୂର୍ଣ୍ଣ ଥାଳିର ଦାମ୍ ଥିଲା, ଯେ ଯେତେ ଥାଳି ଖାଇବ, ସେ ସେଇ ଅନୁସାରେ ପଇସା ଦେବ । ସେଠାରେ ରହୁଥିବା ସାମ୍ୟବାଦୀ କର୍ମୀଙ୍କ ଭିତରେ କେତେକ ଟାଉକା ଯୁବକ ବି ଜୁଟିଥିଲେ । ସେମାନେ ମ୍ୟାନେଜରଙ୍କ ଜାଣତ ବା ଅଜାଣତରେ ପୁଜାରୀଙ୍କୁ ହାତକରି ମାଛ, ମାଂସ ଓ ଅନ୍ୟାନ୍ୟ ସ୍ୱାଦୁ ଖାଦ୍ୟସବୁ ଥାଳିମାନଙ୍କରୁ ଲୁଚାଇକରି ନେଇଯାଇ ଉଦରସାତ୍ କରୁଥିଲେ ।

ବନ୍ଧାଗ୍ରାହକମାନେ ଦାମ୍ ନ କମି ଖାଦ୍ୟ କମିବାର ଦେଖି ଅସନ୍ତୁଷ୍ଟ ହେବାରୁ, ସେମାନଙ୍କ ସଂଖ୍ୟା କମିବାରେ ଲାଗିଲା । ଦୋକାନର କର୍ମୀମାନଙ୍କ ଯୋଗୁ ଖର୍ଚ୍ଚ ବଢୁଥିଲା, ଲାଭ କମିବାରେ ଲାଗିଲା । ମ୍ୟାନେଜର ବ୍ୟସ୍ତ ହୋଇ ଥାଳି ବା ପ୍ଲେଟ ସିଷ୍ଟମ୍ ଉଠାଇଦେଇ ମିଲ୍ ପ୍ରଥା ଚାଲୁକଲେ ।

ସବୁ ଗ୍ରାହକ ସମାନ ନଥାନ୍ତି । ଗ୍ରାହକଙ୍କ ଭିତରେ ମଧ୍ୟ ବହୁତ ଛେଉଁକା ଲୋକ ଥିଲେ । ସେମାନଙ୍କ ଭିତରୁ କେତେକ ଧାର ମନା ଥିଲେ ମଧ୍ୟ କଲେ ବଳେ କୌଶଳେ ଧାରରେ ଖାଇବାକୁ ଲାଗିଲେ । ଧାର୍ ଶୁଝିବା ନାଁ ନଧରି ବେଶିଗୁଡ଼ାଏ ବାକି ହୋଇଗଲେ ସେ ହୋଟେଲ ଛାଡ଼ି ଅନ୍ୟତ୍ର ଯିବାର ବ୍ୟବସ୍ଥା କଲେ । ମୋହମତରେ କର୍ମୀମାନେ ସେମାନଙ୍କୁ କିଛି କହିପାରନ୍ତି ନାହିଁ, ବରଂ ସେମାନେ ଚାଲିଯାଇ ସେ ହୋଟେଲ ନାମରେ ଅପପ୍ରଚାର କରନ୍ତି ।

ଥରେ ଜଣେ ଧୂର୍ତ୍ତ ଜମିଦାରଶ୍ରେଣୀୟ ଗ୍ରାହକ ସେ ହୋଟେଲରେ ଖାଇବାପରେ, ସେ କମ୍ ଖାଆନ୍ତି, ତେଣୁ ତାଙ୍କ ପାଇଁ ମିଲ୍ ଦର କମାଇ ଦେବାକୁ ଦାବି କଲେ । ମ୍ୟାନେଜର ତାଙ୍କୁ କହିଲେ, "ଆପଣ ପେଟପୂରାଇ ଖାଉନାହାଁନ୍ତି, ଆମେ କଅଣ ମନା କରୁଛୁ ? ମିଲ୍ ଦର କାହିଁକି କମିବ ?"

ଏହାର କିଛିଦିନ ପରେ ସେହି ଜମିଦାର ଚିଲିକା କୂଳର ଜୋଡ଼ିଏ ଟୋକା କେଉଟଙ୍କ ସହିତ ଆସି ଖାଇବା ପାଇଁ ବନ୍ଦୋବସ୍ତ ଦେଲେ । ସେମାନଙ୍କ ପାଇଁ ଖାଦ୍ୟ ବଢ଼ାହେବା ସଙ୍ଗେ ସଙ୍ଗେ ସବୁ ଖାଲି ହୋଇଗଲା । ସେମାନେ ତଗଡ଼ା ତଗଡ଼ା ପରିଶ୍ରମୀ ଲୋକ । ଜଣେ ଥରକେ

ବେଡ଼ରୁ ଦୁଇ କଳେ ଚାଉଳର ଭାତ ଚଳୁ କରିଦେବାବାଲା । ସମୁଦ୍ରକୁ ଶଙ୍ଖେ ପାଣି ପରି ବଡ଼ାହୋଇଥିବା ମିଲ୍ ତାଙ୍କର ବିରାଟ ପେଟର କେଉଁ କଣରେ ପଡ଼ିଗଲା । ସେମାନଙ୍କୁ ପେଟପୂରା ଖାଇବାକୁ ଦେବାକୁ ଜମିଦାର ଜିଦ୍ ଧରିଲେ । ମ୍ୟାନେଜର ତାଙ୍କର ପୂର୍ବକଥା ଅନୁସାରେ ଗୋଟିଏ ମିଲ୍‌ର ପଇସା ପାଇଁ ଯିଏ ଯେତେ ଖାଇବ ତାକୁ ସେତେ ଦେବାକୁ ବାଧ୍ୟ । ସେଦିନ ପାଇଁ ରନ୍ଧାହୋଇଥିବା ସମସ୍ତ ଭାତ ସରି, ମହଜୁଦ୍ ଥିବା ଚାଉଳ ରନ୍ଧାହୋଇ ସେ ଭାତ ମଧ୍ୟ ସରିଗଲା । ଗଚ୍ଛିତ ଅଟା ପ୍ରସ୍ତୁତ ରୁଟି କରି ଦିଆଗଲା; ତଥାପି ସେମାନେ ପତରରୁ ଉଠୁନଥାନ୍ତି, ତାଙ୍କ ପେଟ ପୂରୁନଥାଏ । ସେମାନେ 'ଆଉ ଦିଅ' 'ଆଉ ଦିଅ' ରଡ଼ିଗୁଡ଼ାଉଥାନ୍ତି । ମ୍ୟାନେଜର ତାଙ୍କ ପାଖରେ ଥିବା ସମସ୍ତ ଟଙ୍କାରେ ଭାତ, ରୁଟି, ତରକାରୀ କିଣାଇ ଆଣିଲେ । ତଥାପି ସେମାନଙ୍କୁ ସନ୍ତୁଷ୍ଟ କରିପାରିଲେ ନାହିଁ । ଶେଷରେ ହାତଯୋଡ଼ି ଜମିଦାରଙ୍କ ଗୋଡ଼ ତଳେ ପଡ଼ି କ୍ଷମା ମାଗିବାରୁ ଜମିଦାରଙ୍କ ନିର୍ଦ୍ଦେଶରେ ସେମାନେ ପତରରୁ ଉଠି ହାତଧୋଇ ପଇସା ନ ଦେଇ ଗାଁ ଗାଁ ହୋଇ ଚାଲିଗଲେ ।

ମ୍ୟାନେଜରଙ୍କର ବିଶେଷ ପଇସା ଲୋଭ ନ ଥିଲା । ତେଣୁ ସେଥିପ୍ରତି ସେ ବିଶେଷ ଧ୍ୟାନ ଦେଉନଥିଲେ । ମ୍ୟାନେଜର ପହିଲମାନ ହୋଇଥିବାରୁ ବେଶି ଖାଇପାରୁଥିବା ଲୋକଙ୍କୁ ମଧ୍ୟ ପସନ୍ଦ କରନ୍ତି । ବଳୀବଣ୍ଟା ହୋଇ କିଛି ପଇସା ପାଖରେ ଥିଲେ ସେ ତାକୁ ସୁଖାଦ୍ୟରେ ପରିଣତ କରି ଉଦରସ୍ଥ କରନ୍ତି । ସକାଳ ଜଳଖିଆରେ ମାତ୍ର ବାରଟି ଅଣ୍ଡା ଜଳଖିଆ କରନ୍ତି । ୩୦, ୩୫ ପଟ ରୁଟି ମଧ୍ୟ ତାଙ୍କର ଜଳଖିଆ ହୁଏ । ପୁରା ଭୋଜନ ଉପରେ ବଡ଼ ବଡ଼ ଦେଢ଼ ଦୁଇ ଡର୍ଜନ ରସଗୋଲା ନଖାଇଲେ ତୃପ୍ତି ଅନୁଭବ କରିପାରନ୍ତି ନାହିଁ ।

ଏହିସବୁ କାରଣରୁ ଦୋକାନର ଅବସ୍ଥା ଟଳମଳ ହେଲା । ଦୋକାନ ଧାର ଉଧାରରେ ବୁଡ଼ିଗଲା । ଖବର ପାଇ ମାଲିକ ଗାଁରୁ ଫେରିଲେ । ହୋଟେଲର ଦେବାଳିଆ ଅବସ୍ଥା ଦେଖି ସାମ୍ୟବାଦୀ କର୍ମୀମାନଙ୍କୁ ହାତଯୋଡ଼ି ସେଠାରୁ ବିଦାୟ ଦେଲେ ।

ପୋଲିସବାଲାଙ୍କ ଆଖି ସବୁବେଳେ ସେ ପିଲାମାନଙ୍କ ଉପରେ ଥିଲା । ସେଠାରୁ ସେମାନଙ୍କୁ ତଡ଼ି ବିପଦରେ ପକାଇବାକୁ ସେମାନେ ବାଟ ଖୋଜି ପାଉନଥିଲେ । ପୁଲିସବାଲା କେତେକ ଖଲ ଲୋକଙ୍କୁ ଶିଖାଇ ମାଲିକଙ୍କ ପାଖକୁ ପଠାଇଲେ । ସେମାନେ ସାମ୍ୟବାଦୀ ମ୍ୟାନେଜରଙ୍କ ନାମରେ ତୋଷରପାତ ମକଦ୍ଦମା କରିବାକୁ ମାଲିକଙ୍କୁ ପ୍ରବର୍ତ୍ତାଇଲେ । ମାଲିକ ହସି ହସି କହିଲେ—"କି ତୋଷରପାତ ? କିଏ ତୋଷରପାତ କରିଛି ? ହିସାବ ତ ସବୁ ଠିକ୍ ଅଛି ।" ସେ ଲୋକଙ୍କ ଭିତରୁ ଜଣେ କହିଲା, "ତାହାହେଲେ ଆପଣଙ୍କର କିଛି କ୍ଷତି ହୋଇନାହିଁ ?" ତାର ଉତ୍ତରରେ ମାଲିକ କହିଲେ, "ନାଁ ନାଁ, କିଏ କହିଲା କ୍ଷତି ହୋଇନାହିଁ, ବହୁତ କ୍ଷତି ହେଇଛି । ହୋଟେଲ ଦେବାଳିଆ ଅବସ୍ଥାକୁ ଆସିଯାଇଛି ।" ସେ ଜଣକ କହିଲା—"କ୍ଷତି ଯଦି ହୋଇଛି ତୋଷରଫ ମକଦ୍ଦମା କରି କ୍ଷତିପୂରଣ ଦାବି କରୁନାହାନ୍ତି କାହିଁକି ?" ମାଲିକ କହିଲେ—"କ୍ଷତି ହେଲା ବୋଲି କଣ ତୋଷରପାତ ହୋଇଗଲା ? କେହି ତୋଷରପାତ କରିନାହାନ୍ତି । ପିଲାଗୁଡ଼ାକ ଚଳାଇ ପାରିଲେ ନାହିଁ । ତା'ପରେ ମ୍ୟାନେଜରଙ୍କ

ଖାଉଚିଆ ମିଳୁଥାଏ । ସେ ଭଲ ମନ୍ଦ କିଣି ଖାଇଯାଉଛୁ । ଲୋକଙ୍କୁ ଖାଇବାକୁ ଦେଲେ ତ ଧର୍ମ ହୁଏ—ମୁଁ ମକଦ୍ଦମା କାହିଁକି କରିବି ?"

ପିଲଙ୍କୁ ପାଠ ପଢ଼ାଇବା ଭିତରେ ନିଜେ ବହିପତ୍ର ଯୋଗାଡ଼ କରି ଘରୋଇ ଭାବରେ ପାଠପଢ଼ି ପ୍ରବେଶିକା ପରୀକ୍ଷା ଦେଇ ନବକୁମାର ମାଟ୍ରିକ ପରୀକ୍ଷାରେ ଉଚ୍ଚ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । କଟକ ବଡ଼ ଜାଗା, ସେଠାରେ ଭଲ ଟିଉସନ ମିଳିପାରେ ଓ ଉଚ୍ଚଶିକ୍ଷା ପାଇଁ ଓଡ଼ିଶାର ଏକମାତ୍ର କଲେଜ 'ରେଭେନ୍‌ସା କଲେଜ'ରେ ସ୍ଥାନ ପାଇପାରିବେ ଭାବି କଟକ ଚାଲିଯିବାପାଇଁ ସେ ବନ୍ଧୁମାନଙ୍କ ନିକଟରେ ପ୍ରସ୍ତାବ କଲେ ।

'ମଲୁ ଖୋଜୁଥିଲି କାକର ପାଣି, ବଇଦ ବୋଇଲା ଦେ ତୋରାଣି' । ପୁରୀରେ ତ ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନଥିଲା, ମେହେନ୍ତରମାନଙ୍କୁ ଧରି ରଖିବା ବି ସମ୍ଭବ ନଥିଲା । କଟକରେ ବଡ଼ ବଡ଼ ନେତାମାନେ ଅଛନ୍ତି, ସେମାନଙ୍କଠାରୁ ସାହାଯ୍ୟ ମିଳିବ ଓ କଟକରେ ଯୁଡ଼ାଖୁ କମ୍ପାନୀ, ବିଡ଼ି କମ୍ପାନୀ, ପ୍ରେସ ପ୍ରଭୃତି ଛୋଟ ବଡ଼ କାରଖାନା ଗୁଡ଼ିଏ ରହିଛି । ସେସବୁ ଅନୁଷ୍ଠାନର ଶ୍ରମିକମାନଙ୍କୁ ସଙ୍ଗଠିତ କରି ଆନ୍ଦୋଳନ କରିବା ସୁବିଧା ହେବ ବୋଲି ସମସ୍ତେ ଏକମତ ହେଲେ । ସାମ୍ୟବାଦୀ ଆନ୍ଦୋଳନର କାର୍ଯ୍ୟସ୍ଥଳୀ କଟକକୁ ସ୍ଥାନାନ୍ତରିତ କରିବାର ପ୍ରସ୍ତାବ ସର୍ବସମ୍ମତିକ୍ରମେ ପାଶ୍ ହୋଇଗଲା ।

ସେମାନେ କିପରି କଟକ ଆସିଲେ କହିବା ନିଷ୍ପ୍ରୟୋଜନ । ସର୍ବହରାଙ୍କ ପାଇଁ କାମ କରୁଥିବା କର୍ମୀମାନେ ତ ସର୍ବହରା—ତାଙ୍କଠାରୁ କିଏ ପଇସା ଆଶା କରିବ ? ଟ୍ରେନରେ ବିନା ଟିକଟରେ ଯିବାଆସିବା କରିବା ସେମାନଙ୍କର ଅଭ୍ୟାସରେ ପରିଣତ ହୋଇଯାଇଥିଲା । ତାଙ୍କୁ ପ୍ରାୟ କୌଣସି ଟିକଟ ଯାଞ୍ଚ କର୍ମଚାରୀ ଟିକେଟ ମାଗନ୍ତି ନାହିଁ । ଭୁଲରେ ମାଗିଦେଲେ ଗୋଟିଏ ଦୀର୍ଘ ବକ୍ତୃତା ଶୁଣି ଚୁପ୍ ହୋଇ ଚାଲିଯାଆନ୍ତି । କଣେ ଅଧେ ନିଷ୍ଠୁର କର୍ମଚାରୀ ବକ୍ତୃତାରେ ଖୁସି ନହେଲେ ଅଳ୍ପ ବହୁତ ଅଣ୍ଟାଧକ୍କା ପାଉଥିଲେ । ଏବେ ସେମାନଙ୍କୁ ଦୂରରୁ ଦେଖିଲେ ଚଳନ୍ତା ଗାଡ଼ିରେ ଡବା ପରିବର୍ତ୍ତନ କରିବା ବିଦ୍ୟା ସେମାନେ ହାସଲ କରି-ପାରିଥିବାରୁ ସେମାନଙ୍କଠାରୁ ଆଉ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼େନାହିଁ ।

କଟକରେ ପୂର୍ବପରିଚିତ କେତେକ ଉଗ୍ରପନ୍ଥୀ ନେତାଙ୍କ ସହିତ ଦେଖାସାକ୍ଷାତ୍ କରିବା ପରେ ଗୋଟିଏ ଭଙ୍ଗଳିଆ ଘରେ ରହୁଥିବା ଜଣେ ନେତାଙ୍କ ବସାଘରେ ସେମାନଙ୍କୁ ଆଶ୍ରୟ ମିଳିଲା । ସେ ଘରଟିକୁ ଗୋଟିଏ ମେସ୍‌ରେ ପରିଣତ କରିବାର ଯୋଜନା ହେଲା । ଜଣେ ଉପଯୁକ୍ତ ଯୁବକ ପୂଜାରୀ ମଧ୍ୟ ଆସି ଜୁଟିଲା । ଉଗ୍ରପନ୍ଥୀ ନେତା ଜଣକ ସେଠାରେ ସାମୟିକ ଭାବରେ ଅବସ୍ଥାନ କରନ୍ତି । ତାଙ୍କର ଦଉଡ଼ି ଖଟିଆଟି ସେଠାରେ ପଡ଼ିଥାଏ । ସେ ଆଗେ ଏଠି ସେଠି ହୋଟେଲ ବା କାହା ଘରେ ଖାଉଥିଲେ—ମେସ୍ ହେବା ପରେ ସେଠାକୁ ଆସିଲେ ପିଲଙ୍କ ସଙ୍ଗେ ଭୋଜନ କରନ୍ତି । ସେ ଆସିବା ସଙ୍ଗେ ସଙ୍ଗେ ପକେଟରେ ଯାହା ପଇସା ଥାଏ ପିଲଙ୍କୁ ଦେଇଯାଆନ୍ତି—ସେଥିରେ କଷ୍ଟେମଷ୍ଟେ ମେସ୍ ଖର୍ଚ୍ଚ ଚଳେ ।

ପୂଜାସ୍ୱାମୀ ଠିକଏ ଆତ୍ମବାସ୍ୱୀ ଲୋକ । ସେ ବେଶି ଦରମା ଦାବି କରିବାରୁ ସେଥିରେ ରାଜିହୋଇ ବର୍ଷ ଶେଷରେ ସବୁ ଦରମା ଏକାଠି ନେଲେ ବେଶି ହସିବ ବୋଲି କହିବାରେ ସେ ଖୁସିହୋଇ ଆପାତତଃ ବିନା ଦରମାରେ କାମ କରିବାକୁ ଲାଗିଲା ।

କର୍ମୀମାନେ ଉଗ୍ରପନ୍ଥୀ ପୁସ୍ତକ ଓ ପ୍ରଚାରପତ୍ର ସବୁ ଗୋପନରେ ପଢ଼ନ୍ତି । ଇସ୍କୁଲ କଲେଜ ପିଲାଙ୍କ ସଙ୍ଗେ ମିଳାମିଶା କରି ବାଛି ବାଛି ପିଲାମାନଙ୍କୁ ଦଳର ଦଳଭୁକ୍ତ କରନ୍ତି । ଧନସାରି ସନ୍ଦେହଯୋଗ ବୁଲି ଶ୍ରମିକମାନଙ୍କୁ ବିଦ୍ରୋହ କରିବାକୁ ଉତ୍ସାହ ଦିଅନ୍ତି । ଅହିଂସ ସତ୍ୟାଗ୍ରହ ଆନ୍ଦୋଳନ କେବଳ ଇଂରେଜ ସରକାରଙ୍କ ବିରୋଧରେ ହୋଇଥିଲା । ସାମ୍ୟବାଦୀ ଆନ୍ଦୋଳନ କି ସରକାରଙ୍କ କି ବେସରକାରୀ ସମସ୍ତ ଧନୀ ଓ କାରଖାନା ମାଲିକମାନଙ୍କ ବିରୋଧରେ ସ୍ୱର ଉଠାଇଲା । ଉଗ୍ରପନ୍ଥୀ ସାମ୍ୟବାଦୀମାନେ କଂଗ୍ରେସରୁ ଅଲଗା ହୋଇଗଲେ । ସାମ୍ୟବାଦୀ ଆନ୍ଦୋଳନକୁ ସରକାର ବେଆଇନ ଘୋଷଣା କଲେ ।

ଶ୍ରମିକମାନଙ୍କୁ ଏକତ୍ର କରି ସଂଗଠନ ଗଢ଼ିବା ଦ୍ୱାରା ଅଳ୍ପ ବହୁତ କିଛି ଚାନ୍ଦା ମଧ୍ୟ ମିଳୁଥିଲା । ସେଥିରେ ପ୍ରଚାରପତ୍ର ପ୍ରସ୍ତୁତ କ୍ଲବ ପ୍ରଚାର କାର୍ଯ୍ୟ ଚଳାଇବାର ସୁବିଧା ହେଉଥିଲା । ବେଆଇନ ଅନୁଷ୍ଠାନ ଓ ପ୍ରଚାରପତ୍ର ପ୍ରତି ସରକାର ସଜାଗ ହୋଇ ଉଠିବାରୁ, କର୍ମୀ-ମାନଙ୍କର ଅବାଧ ବୁଲିଚଲି ଓ ଚାନ୍ଦା ସଂଗ୍ରହ ଉପରେ ବାଧାପଡ଼ିଲା ।

ମେସ୍ ଚଳାଉଥିବା ଉଗ୍ରପନ୍ଥୀ ନେତାଙ୍କ ପଛରେ ପୋଲିସ ଲାଗିଥିବାରୁ ତାଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ ହେଲା । ଅଭାବ ଓ ସ୍ୱାମୀଙ୍କ ଆଚରଣ ବୁଝିନପାରି ଗୁଡ଼ିଏ ପିଲାଙ୍କୁ ସମ୍ଭାଳିବାରେ ଅସମର୍ଥ ହୋଇ ତାଙ୍କ ସହଧର୍ମିଣୀ ପାଗଳ ହୋଇଯାଇଥିଲେ । ତେଣୁ ତାଙ୍କୁ ବରାବର ଗ୍ରାମକୁ ଯାଇ ଘରକଥା ବୁଝିବାକୁ ପଡ଼ିଲା ।

ଘରେ ବିଶେଷ କିଛି ସମ୍ବଳ ନଥିଲା । ତାଙ୍କ ପୁଅଟିକୁ ଭୀଷଣ ଜ୍ୱର ହେଲା । ଔଷଧପତ୍ରର କୌଣସି ବ୍ୟବସ୍ଥା ହୋଇପାରିନଥିଲା । ସେଠାରେ ପାଖଆଖରେ ଡାକ୍ତରଖାନା ନଥିଲା । ତା'ର ଔଷଧ ବ୍ୟବସ୍ଥା କରିବା ପାଇଁ ଔଷଧ ସଂଗ୍ରହ କରିବାକୁ ସେ ବୁଲି ବୁଲି ବାର ମାଇଲ ବାଟ ଆସି ପିପିଲିରେ ପହଞ୍ଚିଲେ । ସେଠାରୁ କୌଣସିମତେ ଭୁବନେଶ୍ୱର ଆସିଲେ ।

ସାତ ଦିନର ପ୍ରବଳ ଚେଷ୍ଟା ସତ୍ତ୍ୱେ ଅର୍ଥ ବା ଔଷଧ ସଂଗ୍ରହ କରି ନପାରି ନିରାଶରେ ଖାଲି ହାତରେ ଗାଁକୁ ଲେଉଟିଲେ । ଗାଁ ମୁଣ୍ଡ ଶ୍ମଶାନ ପାଖରେ ପହଞ୍ଚିଲାବେଳକୁ ଗାଁଆଡ଼ୁ କୋଡ଼ି, କୋଦାଳ ଓ ସ୍ଟ୍ରେଚ ଟିଏ ଛୋଟ ପିଲାଟିର ଶବ ଧରି ଜଣେ ଦୁଇଜଣ ଆସୁଥିବାର ଦେଖି ସେଇଠି ଠିଆହୋଇ ରହିଗଲେ । ସେ ଲୋକଙ୍କୁ ଦେଖି ସେ ସବୁକଥା ବୁଝିପାରି ଆଉ ଗାଁ ଭିତରକୁ ନପଶି କଟକ ଫେରିଲେ ।

ନେତାଙ୍କର ଅବସ୍ଥା ଦେଖି କର୍ମୀମାନେ ବ୍ୟସ୍ତ ହୋଇପଡ଼ିଲେ । ତାଙ୍କଠାରୁ ସାହାଯ୍ୟର ଆଶା ଚିରଦିନ ପାଇଁ ସେମାନଙ୍କ ମନରୁ ଲିଭିଗଲା ।

ମେସ୍‌ରେ କେବଳ ଭାତ ଓ ଡାଲ୍‌ପାଣିର ବ୍ୟବସ୍ଥା ହେଲା । ଜଳଖିଆ ପାଇଁ ବରା, ପିଆଜି, ମୁଢ଼ି, ଦୁଧ, ଚନ୍ଦନହଳ ଗୁହା ପ୍ରଭୃତି ଯାହା ଯେଉଁଦିନ ଯୋଗାଡ଼ କରନ୍ତୁ ସେଥିରେ ତୃପ୍ତ ରହିବାକୁ ପଡ଼େ ।

ଦିନେ ସନ୍ଧ୍ୟାରେ ଗୋଟିଏ ପିଲା ତା' ଗାଁରୁ କିଛି ପଇସା ସଂଗ୍ରହ କରି ଫେରିଥିଲା । ସେ ସେଥିରେ ଗୁଡ଼ିଏ ବରା କିଣି ସମସ୍ତେ ଏକାଠି ଜଳଖିଆ କରିବା ପାଇଁ ରଖିଦେଇ ଗୁହାର ବନ୍ଦ କରିବାକୁ ଗଲା । ସେ ଫେରିଲାବେଳକୁ ଦେଖିଲା ବରା ଠୁଙ୍ଗା ଖାଲି ପଡ଼ିଛି, ଠୁଙ୍ଗା ପାଖରେ ପୂର୍ବର ପୂର୍ବତନ ହୋଟେଲ ମ୍ୟାନେଜର ବସିଛନ୍ତି । ତାଙ୍କ ଗାଲ ଉଚ୍ଚ ହୋଇଛି, ପାଟିରୁ କଥା ବାହାରୁନାହିଁ । ସେ ଦୃଶ୍ୟ ଦେଖି ପିଲାଟି କାନ୍ଦିବ କି ହସିବ କିଛି ସ୍ଥିର କରିପାରିଲାନାହିଁ ।

ଜଳଖିଆ ଖାଇବାକୁ ସବୁ ବନ୍ଧୁମାନେ ଆସି ଜୁଟିଗଲେ । ସେଥିରୁ ଜଣେ ପୂର୍ବତନ ମ୍ୟାନେଜରଙ୍କୁ କହିଲେ—ହଇଓ, ସବୁତକ ବରା ଖାଇଦେଲ ! ସେତେବେଳକୁ ତାଙ୍କ ଗାଲ ଖାଲି ହୋଇଯାଇଥିଲା । ସେ ହସି ହସି ଉତ୍ତର ଦେଲେ, "ବରା ପୁଣିଏତେ ଖାଇଲ, ତୁମ ରସଗୋଲା ନା ମାଲପୁଆ ଖାଇଗଲ ? ଏ ଶ୍ରେଷ୍ଠ କଥାରେ ଅଭ୍ରାନ୍ତଙ୍କ ପରି ହାଲ୍ଲାଟାଏ କାହିଁକି କରୁଛ ? ଆଉ ବରା କିଣି ଆଣୁନାହଁ !" ତା' ପାଖରେ ଆଉ ପଇସା ଅଛି ସେ ବରା ଆସିବ, ସମସ୍ତେ ବାଧହୋଇ ଖାଲି ଗୁହା କପେ କପେ ପିଇ ଭୋକ ମାରିଲେ ।

ସପ୍ତାହରେ ପ୍ରାପ୍ତ ଦିନେ ଓଳିଏ ସମସ୍ତଙ୍କ ଉପାସ ରହିବାକୁ ପଡ଼େ । ଥରେ ସମସ୍ତଙ୍କୁ ଏକାଦିକ୍ରମେ ତେତିଦିନ ଉପାସ ରହିବାକୁ ପଡ଼ିଲା । କୌଣସିମତେ କିଛି ଖାଦ୍ୟ ଯୋଗାଡ଼ କରି ହେଲାନାହିଁ । ପୂର୍ବାସ୍ଥା ମଧ୍ୟ ଭୋକରେ ଛଟପଟ ହେଲା; କିନ୍ତୁ ଏହା ଭିତରେ ସେ କର୍ମୀମାନଙ୍କ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଜଣେ ସାମ୍ୟବାଦୀ କର୍ମୀରେ ପରିଣତ ହୋଇଯାଇଥିବାରୁ ଅନ୍ୟମାନଙ୍କ ଭାଗ୍ୟ ସଙ୍ଗେ ନିଜ ଭାଗ୍ୟକୁ ସୁଖ ଗୁନ୍ଥି ସାରିଥିଲା ।

କଟକରେ ଗୁଜୁରାଟୀମାନେ ଧନୀ । ସେମାନଙ୍କର ବଡ଼ ବଡ଼ ଜଳଖିଆ ଦୋକାନ । ସେମାନଙ୍କ ଭିତରୁ ଯେ କୌଣସି ଲୋକଠାରୁ ଖାଇବାଟା ଆଦାୟ କରିଦେବାରେ କିଛି ଅସଙ୍ଗତ ହେବନାହିଁ ବୋଲି ମନେପ୍ରାଣେପାଇଲା । ସେଥିରେ ସମସ୍ତେ ଏକମତ ହୋଇ ସେଦିନ ଡିସେମ୍ବର ମାସ ରାତି ଦଶଟାରେ ଚଉଧୁରୀ ବଜାରର ଗୋଟିଏ ଗୁଜୁରାଟୀ ଦୋକାନରେ ପହଞ୍ଚିଲେ । ପୂର୍ବାସ୍ଥିତି ମଧ୍ୟ ତାଙ୍କ ସାଙ୍ଗରେ ଗଲା । କଟକର ଜଣେ ଜଣାଶୁଣା ଧନୀ ବ୍ୟକ୍ତିଙ୍କର ଜଣେ ସମ୍ପର୍କୀୟ ସେ କର୍ମୀଙ୍କ ଭିତରେ ଥିଲେ । ସେ ଧନୀ ବ୍ୟକ୍ତିଙ୍କ ସହିତ କେତେଥର ସେ ଦୋକାନକୁ ଯାଇ ଜଳଖିଆ କରିଥିବାରୁ ସେ ଦୋକାନ ମାଲିକଙ୍କ ସଙ୍ଗେ ସାମାନ୍ୟ ପରିଚୟ ଥିଲା । ସେମାନେ ଦୋକାନରେ ପଶିବା ପରେ ସେ କର୍ମୀ ଜଳଖିଆର ବରାଦ କଲେ । ସମସ୍ତେ ମନଇଚ୍ଛା ପୁରୀ ତରକାରୀ ସିଙ୍ଗଡ଼ା ମିଠା ପ୍ରଭୃତି ପେଟେ ପେଟେ ଖାଇ ହାତ ଧୋଇଲେ । ଖାଇସାରି ଜଣେ ଦୁଇଜଣ କର୍ମୀ ହାତଧୋଇ, ନିଜାଣିଆ ହୋଇ ସେଠାରୁ ଖସି, ରାସ୍ତା ଛକ ପାଖରେ ଯାଇ ଠିଆହେଲେ ।

ଜଳଖିଆ ଦୋକାନୀ ଚାକରଟି ମାଲିକଆଡ଼କୁ ଚାହିଁ ଜଳଖିଆର ଦାମ୍‌ଟି ବଡ଼ ପାଟିରେ ଜଣାଇଦେଲା । ମାଲିକଟି ଘୋଡ଼ାଗାଡ଼ି ଧୋଇ ନିଶା କୋଟ୍‌ରେ ଗୋଟିଏ ଚଉକିରେ ବସି ଢୁଳାଉଥିଲା । ତା'ର ମୁଣ୍ଡ ଚଉକିର ଏପଟୁ ସେପଟକୁ ଢଳି ପଡ଼ୁଥିଲା । ସେ ଚାକରର ପାଟି ଶୁଣି ବହୁକଷ୍ଟରେ ଆଖିକୁ ଅଧାମେଲା କରି ଗ୍ରାହକମାନଙ୍କ ଆଡ଼କୁ ଚାହିଁ ହାତ ବଢ଼ାଇଲା । ଜଳଖିଆ ବରାଦ କରିଥିବା କର୍ମୀ, ମାଲିକ ମୁହଁକୁ ଚାହିଁ କହିଲେ, "କୁଆଡ଼େ ଚାଲିଯାଉଛୁ, ଆଉ ।" ମାଲିକ କଣ ବୁଝିଲା କେଜାଣି ଅସ୍ପଷ୍ଟ ଭାଷାରେ କହିଲା, "ହିଁ, କୁଆଡ଼େ ଚାଲିଯାଉଛୁ, ଆଉ !" ଏହା କହିବା ପରେ ତାର ବାହାରକୁ ଲମ୍ବି ଆସିଥିବା ହାତଟି ସାପ ଗାତରେ ପଶିଲା ପରି ପୁଣି ତା' ଗୋଡ଼ହେଲା ଭିତରେ ପଶିଗଲା ଓ ଆଖି ବନ୍ଦ ହୋଇଗଲା । ତା' ପରେ ସେମାନେ ଅଣୁ ବିପଦରୁ ରକ୍ଷାପାଇ ସେଠାରୁ ଖାରଦର୍ପରେ ବାହାରକୁ ଚାଲିଆସିଲେ ।

ଅର୍ଥାଭାବ ଯେ ଖାଲି ଖାଦ୍ୟସଙ୍କଟ ସୃଷ୍ଟି କରୁଥିଲା ତା ନୁହେଁ, ବହୁଦିନର ଘରଭଡ଼ା ବାକି ଯୋଗୁ ରହିବା ସଙ୍କଟ ବି ଦେଖାଦେଇଥିଲା । ମେସ୍‌ର ଘରବାଲା ଜଣେ ଦେଶପ୍ରେମୀ ଲୋକ । କଂଗ୍ରେସ ଲୋକଙ୍କ ପ୍ରତି ତାଙ୍କର ସହାନୁଭୂତି ଥାଏ । ଘର ଭଡ଼ା ନେଇଥିବା ନେତାଙ୍କୁ ମଧ୍ୟ ସେ ସମ୍ମାନ କରେ । ନେତାଙ୍କୁ ବହୁଦିନ ଧରି ନଦେଖି ଓ ଘରଭଡ଼ା ନପାଇ ପିଲାମାନଙ୍କୁ ଘରଭଡ଼ା ମାଗିଲା । ସେମାନେ କେହି ଧରାଛୁଆଁ ଦେଲେ ନାହିଁ । ସେମାନଙ୍କୁ ପ୍ରଥମେ ସେ କଂଗ୍ରେସ କର୍ମୀ ବୋଲି ଭାବିଥିଲେ; କିନ୍ତୁ ପରେ ସାମ୍ୟବାଦୀ ଜାଣି ଭବିଷ୍ୟତ ବିପଦ ଆଶଙ୍କାରେ ଅସ୍ଥିର ହୋଇପଡ଼ିଲା । ପିଲାମାନଙ୍କୁ ଭଡ଼ା ଛାଡ଼ିଦେଇ ସେଠାରୁ ଶୀଘ୍ର ଚାଲିଯିବା ପାଇଁ ତାଗିଦ କଲା ।

କର୍ମୀମାନଙ୍କର କାର୍ଯ୍ୟକଳାପ ପୋଲିସ ଗୁଇନ୍ଦାମାନେ ଲକ୍ଷ୍ୟ କରୁଥିଲେ । ନବକୁମାର ଦିନେ ଅନ୍ୟ ବ୍ୟବସ୍ଥା ବା ଟିଉସନ ପ୍ରଭୃତି ଯୋଗାଡ଼କରି କଲେଜରେ ନାମ ଲେଖାଇବା ଅନୁସନ୍ଧାନରେ ଭୋର ସକାଳରୁ ଉଠି ସେ ମେସ୍ ଛାଡ଼ି ବାହାରକୁ ଯାଇଥିଲେ । କର୍ମୀମାନେ ବିଛଣାରେ ଶୋଇଥିବା ଅବସ୍ଥାରେ ପୋଲିସମାନେ ଅତର୍କିତ ଭାବରେ ଆସି ସେ ଘର ଘେରାଉକରି ମେସ୍‌ଟି ଖାନତଲାସ କଲେ । ଖାନତଲାସରୁ କେତେକ ଆପତ୍ତିଜନକ କାଗଜପତ୍ର ପାଇ, କର୍ମୀମାନଙ୍କୁ ବନ୍ଦୀକରି, ଅଧୁଆ ମୁହଁରେ ନେଇ ଚାଲିଲେ ଥାନାକୁ ଘେନି ଚାଲିଗଲେ । ଘରବାଲା ପୋଲିସ ସାମନାରେ ନିଜକୁ ନିର୍ଦ୍ଦୋଷ ବୋଲି ପ୍ରମାଣ କରିବାକୁ କର୍ମୀମାନଙ୍କ ପ୍ରତି ଭଡ଼ା ନ ଦେଉଥିବା ଗୁଣ୍ଡା, ମାଗିଖିଆ, ବଜାଙ୍ଗ, ଛତରା ପ୍ରଭୃତି ବିଶେଷଣ ଲଗାଇ ଗାଳି ବର୍ଷଣ କରି ଆତ୍ମସନ୍ତୋଷ ଲାଭକଲେ । ସେମାନଙ୍କୁ ଦେଖାଇ ସେମାନଙ୍କର ସମସ୍ତ ଆସବାବପତ୍ର ଦାଣ୍ଡପିଣ୍ଡାକୁ କାଢ଼ିଦେଇ ମେସ୍ ଦୁଆରେ ବଡ଼ ତାଲାଟିଏ ଝୁଲାଇଦେଲେ ।

ନବକୁମାର ଫେରିଆସି ସେ ସବୁ ଦେଖି ପାଖଆଖରେ ପଚରାପଚରି କରିବାରେ ସେମାନଙ୍କ ଭିତରୁ ଜଣେ ସେ ଘଟଣାର ଆମୂଳଚୂଳ ବର୍ଣ୍ଣନା କରିସାରି କହିଲେ—ପୋଲିସ ତମକୁ ଖୋଜୁଥିଲେ, ଦେଖିଲେ ଧରିନେବେ । ତୁମେ ଶୀଘ୍ର ଏଠାରୁ ଲୁଚିକରି ପଳାଅ ।

## ଆଠ

ଭିକାରିବାବୁ କାରାଗାରରୁ ମୁକ୍ତିଲାଭ କରି ମହାତ୍ମାଗାନ୍ଧିଙ୍କ 'ବର୍ଦ୍ଦୋଲି ସଙ୍ଗଠନ' ପ୍ରସ୍ତାବ ଅନୁସାରେ ଗଠନମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବାକୁ ମନସ୍ଥ କରି ଗ୍ରାମାଭିମୁଖେ ଯାତ୍ରା କଲେ । ସେ ସ୍କୁଲ୍‌ପାଖରେ ପହଞ୍ଚିବାକ୍ଷଣି କେତେଗୁଡ଼ିଏ ଲୋକ ଅତମନ୍ତ ହୋଇ ତାଙ୍କ ଚାରିପଟେ ଆସି ଘେରିଗଲେ । ଖବର ପାଇ ପଦନ ବାବୁ ଖଦଡ଼ ପୋଷାକ ପିନ୍ଧି ତାଙ୍କ ନିକଟକୁ ଆସି ଅଭ୍ୟର୍ଥନା ଜଣାଇଲେ । ତାଙ୍କର ଦେଶ ପାଇଁ କରିଥିବା ତ୍ୟାଗ କଥା ଲୋକଙ୍କ ସାମନାରେ ବଡ଼ପାଟିରେ ବର୍ଣ୍ଣନା କରି ତାଙ୍କର ଭୂୟସୀ ପ୍ରଶଂସା କଲେ । ଭିକାରିବାବୁଙ୍କ ସଙ୍ଗେ କଥା ହେଉ ହେଉ କଥାପ୍ରସଙ୍ଗରେ ସେ ସ୍କୁଲରେ ଆଉ ତାଙ୍କର ସ୍ଥାନ ନାହିଁ ଓ ତାଙ୍କ ସ୍ଥାନରେ ଅନ୍ୟଲୋକ ନିଯୁକ୍ତି ପାଇସାରିଛନ୍ତି, ତେଣୁ ସେ ଗ୍ରାମ ଛାଡ଼ି ଅନ୍ୟତ୍ର ଯାଇ ମାଷ୍ଟ୍ରି ଚାକିରୀର ଅନୁସନ୍ଧାନ କରିବା ଉଚିତ ବୋଲି ଜଣାଇଦେଲେ ।

ସେ ପଦନବାବୁଙ୍କୁ କିଛି ଉତ୍ତର ନଦେଇ, ନିଜ ଘରଆଡ଼କୁ ଚାଲିଲେ । ଘରେ ସ୍ତ୍ରୀ ପିଲା କେହି ନାହାନ୍ତି, ଖାଲି ଘରଟା ହୁଏତ ଖାଁ ଖାଁ ଗୋଡ଼ାଇବ । ସେ ସେଠାକୁ ଯାଇ କଅଣ ଦେଖିବେ ସେଇ ଚିନ୍ତାରେ ତାଙ୍କ ମୁଣ୍ଡ ଘୂରିଗଲା । ଏଣୁତେଣୁ ଭାବି ଭାବି ନିଜ ଦୁଆରେ ପହଞ୍ଚିଲେ । ଘର କାହିଁ ! ଘରଟା ପ୍ରାୟ ମେଲିଡ଼ିହ ପାଲଟି ଯାଇଛି । ପୋଲିସଙ୍କ ଲୁଟ୍‌ପାଟ୍ ପରେ ଜିନିଷପତ୍ର କିଛି ନଥିଲା । ଅଯତ୍ନରେ ଘରର ଅଧିକାଂଶ କାନ୍ଥ ଭୁଷୁଡ଼ି ପଡ଼ିଛି । ଚାଳରେ କୁଟା ଖଣ୍ଡିଏ ବି ନାହିଁ । କାଠ ବାଉଁଶଦିଆ ଛପର ଚାଳଖଣ୍ଡି ତଳକୁ ଲେଉଁଆସି ଭୂଇଁରେ ମଥା ଦେଇ ତାଙ୍କୁ ଯେପରି ଅନ୍ତରର ଦୁଃଖ ଜଣାଇ ମୁଣ୍ଡିଆ ମାରୁଛି । ଘର ଭିତରେ ବଣୁଆ କଣ୍ଟାଗଛ ଉଠିଲାଣି । କୁଆଁମଇଡା ଲଟାରୁ ନାଲି ଟକଟକ ଟ୍ରେଷ୍ଠ ମୃଦଙ୍ଗ ଭଳି ଫଳଗୁଡ଼ିକ ଓହଳିପଡ଼ି ବ୍ୟବସାୟୀ ଭଙ୍ଗିରେ ଲାଲବତୀ ଜଳୁଥିବାର ପରିବେଶ ସୃଷ୍ଟି କରୁଛି । ଏଣ୍ଡୁଅ କେତେଟା ଏ ବୁଦାରୁ ସେ ବୁଦାକୁ ଡେଇଁ ନାଲିପଗଡ଼ିଆ ସିପାହି ପରି ମୁଣ୍ଡ ଟେକାଉଛନ୍ତି । ବଣି, ଘୁଙ୍ଗୁଲିଆ, ଘରଚଟିଆ ଚଢ଼େଇମାନେ ଗୁଇନ୍ଦା ପୁଲିସ ପରି ଲୁଚିଛପି ପୋକଯୋକ ଖୋଜୁଥିଲେ, ତାଙ୍କୁ ଦେଖିବାମାତ୍ରେ ଫୁର୍‌ଫାର୍ ହୋଇ ଉଡ଼ିଗଲେ ।

ଭିକାରିବାବୁ ଘରକୁ ଚାହିଁ ନିର୍ବାକ୍ ହୋଇ ଠିଆହୋଇ ରହିଥିଲେ । ବୁଢ଼ୀଟିଏ ଆସି ତାଙ୍କ ପାଖେ ଭେଁ କରି କାନ୍ଦିଉଠିବାରୁ ତାଙ୍କ ଧ୍ୟାନ ଭାଙ୍ଗିଲା । ଆଉ ଜଣେ ଦୁଇଜଣ ଗରିବ ଲୋକ ଆଖି ଛଳ ଛଳ କରି ତାଙ୍କ ପାଖରେ ଆସି ଠିଆହେଲେ ।

କିଛି ସମୟ ପରେ ସେମାନେ ଘରର ଯେଉଁପଟ ଭୁଷୁଡ଼ି ନଥିଲା ସେ ପଟ ଜଙ୍ଗଲ କାଟି ବାଟ ସଫା କରିଦେଲେ । ଗୋଟିଏ କୋଠରୀର ଦୁଆର ବନ୍ଦ ହୋଇ ରହିଥିଲା । ସେ ଦୁଆରକୁ ଠେଲି ଘର ପରିଷ୍କାର କରାଗଲା । ବୃଢ଼ୀଟି କୋଠରୀଟିକୁ ଭଲକରି ଓଳାଇଦେଲା । ଝିଲାନ୍ତିବାବୁ କନା ବ୍ୟାଗରୁ ସତରଞ୍ଜି ଖଣ୍ଡେ ବାହାରକରି ପକାଇଦେଇ ତା ଉପରେ ବସିପଡ଼ିଲେ ।

ସେ ଗାଆଁ ଛାଡ଼ି କେଉଁଆଡ଼େ ଯିବେ, କଅଣ କରିବେ, ଏପରି ଭାବୁଥିଲାବେଳେ ଗାଁ ମୁଣ୍ଡର ରାମଚନ୍ଦ୍ର ପୁଅଟିଏ ଚାଉଳ ଆଣି ତାଙ୍କ ପାଖରେ ଥୋଇଲା । ହୁଏତ ସେଇ ତା ବାଡ଼ିରୁ କିଛି ସାରୁ, ବିଡ଼ାଏ ଖଡ଼ାଶାଗ, ଦୁଇଚାରିଟା ସଜନା ଛୁଇଁ ଓ ପୁଳାଏ ଜାଳ ଆଣିଦେଲା । ଗରିବ କୁମ୍ଭାରଟିଏ ଦି'ଖଣ୍ଡି ହାଣ୍ଡି ଅଟିକା ଆଣି ଥୋଇଦେଇ ପଥରମୁଣ୍ଡା ଗୋଟାଇ ଚୁଲିଟିଏ କରିଦେଲା ।

ସେମାନେ ସମସ୍ତେ କାନ୍ଦ କାନ୍ଦ ହୋଇ କହିଲେ, "ଅବଧାନେ, ଆପଣଙ୍କ ଉପକାର ଏ ଜୀବନରେ ଆମେ ଶୁଝି ପାରିବୁନାହିଁ । ଦୁଃଖୀ ଦୁଃଖୀର କଥା ବୁଝେ—ଆମେ ସମସ୍ତେ ଦୁଃଖୀ ଲୋକ । ଆପଣଙ୍କ ଦୁଃଖ ସହିପାରୁନାହୁଁ । ଆପଣ ଆମର ସାହସ । ଆପଣ ଆମକୁ ଛାଡ଼ି ଉପାସରେ ଅନ୍ୟ କେଉଁଆଡ଼େ ଗଲେ ଆମକୁ ପାପ ବାଧିବ । ଏବେ ହାଣ୍ଡି ବସାଇ ଗଣ୍ଡେ ଫୁଟାଇ ନିଅନ୍ତୁ । ଆପଣ ଖାଇ ନସାରିବା ପର୍ଯ୍ୟନ୍ତ ଆମ ପେଟକୁ ଭାତ ଯିବନାହିଁ ।"

ସେ ମଦନବାବୁଙ୍କ କଥାରେ ସେଠା ଛାଡ଼ି ସବୁଦିନ ପାଇଁ ଚାଲିଯିବାକୁ ମନସ୍ଥ କରିଥିଲେ; କିନ୍ତୁ ସେମାନଙ୍କ ଆଦର ସହାନୁଭୂତି ଦେଖି ତାଙ୍କ ମନ ବଦଳିଗଲା । ସେ ସେଠାରେ ରହି ଗ୍ରାମର ଗରିବ ଭାଇଭଉଣୀଙ୍କ ସେବାରେ ନିଜକୁ ଲଗାଇବାପାଇଁ ଗଠନମୂଳକ କାର୍ଯ୍ୟସବୁ ଆରମ୍ଭ କରିବାକୁ ସ୍ଥିର କଲେ । ସେ ନିଜ ଘରେ ନରହି ଘରୁ କାଠବାଉଁଶ ସବୁ ସଂଗ୍ରହ କରି ଗାଆଁ ମୁଣ୍ଡ ମଶାଣି ନିକଟ ପଡ଼ିଆରେ ସାଧାରଣ ଲୋକଙ୍କ ସାହାଯ୍ୟରେ କୁଡ଼ିଆ ଖଣ୍ଡିଏ ତିଆରିକରି ଗାନ୍ଧି ଆଶ୍ରମର ମୂଳଦୁଆ ଦେଲେ ।

ସେ କଟକ ଯାଇ କେତେକ ଗାନ୍ଧିବାଦୀ ନେତାଙ୍କ ସାହାଯ୍ୟରେ କେତୋଟି ତକଲି, ଅରଟ ଓ ଲୁଗାବୁଣା ସରଞ୍ଜାମ ପ୍ରଭୃତି ଧରି ଆଶ୍ରମକୁ ଫେରିଲେ । ସୂତାକଟା ଆରମ୍ଭ ହେଲା । ରାମଚନ୍ଦ୍ର ସେ ସୂତାରେ ଲୁଗା ବୁଣିଲା । ସେ ଗାଆଁକୁ ଗାଆଁ ଯାଇ ଲୋକଙ୍କ ଦୁଃଖ ସୁଖ ବୁଝିଲେ ଓ ରୋଗଶୋକରେ ସାହସ ଦେଲେ ।

କ୍ରମେ କ୍ରମେ ତାଙ୍କ କୁଡ଼ିଆକୁ ଲାଗି ଆଉ କେତୋଟି କୁଡ଼ିଆ ଗଢ଼ି ଉଠିଲା । ଜେଲରୁ ଫେରିଥିବା ଅନ୍ୟ କେତେକ ନିଃସ୍ୱାର୍ଥପର କର୍ମୀ ଆସି ଆଶ୍ରମରେ ରହି ତାଙ୍କ କାର୍ଯ୍ୟରେ ଯୋଗଦେଲେ । ଆଶ୍ରମଟି ଆସ୍ତେ ଆସ୍ତେ ଜନଗହଳି ଓ କର୍ମମୁଖର ହୋଇ ଉଠିଲା । ଆଶ୍ରମ ଚାରିପଟେ ଫୁଲଫଳର ବଗିଚା ଓ ମହୁଚାଷ ପ୍ରଭୃତି ଆରମ୍ଭ ହୋଇଗଲା ।

କର୍ମୀମାନେ ଆଶ୍ରମ ନିୟମ ପାଳନ କଲେ । ସୂତାକଟା ଓ ଗାନ୍ଧିବାଣୀ ପ୍ରଚାର କାର୍ଯ୍ୟରେ ଲାଗିଲେ । ଗାଆଁ ଗଣ୍ଡା ପରିଷ୍କାର ରଖିବାକୁ ଲୋକଙ୍କୁ ପ୍ରବର୍ତ୍ତାଇଲେ । କର୍ମୀମାନେ

ନିଜେ ଝାଡ଼ୁ ଧରି ଗାଁଦାଣ୍ଡ ସବୁ ଓଳାଇ ସଫା କଲେ । ଗାତ ଖୋଳି ଗାନ୍ଧି ପାଇଖାନା ସବୁ ବସାଇବା ପାଇଁ ପରାମର୍ଶ ଦେଲେ । ଆଶ୍ରମର ଖଦଡ଼ ଲୁଗା ସବୁ ଧରି ଗାଁଗଣ୍ଡାରେ ବୁଲିକରି ଲୋକଙ୍କର ଖଦଡ଼ ଓ ଦେଶୀ ଦ୍ରବ୍ୟ ପ୍ରତି ଆଗ୍ରହ ବଢ଼ାଇବାକୁ ଲାଗିଲେ । କେଉଁ ଅସହାୟ ଲୋକ ଘରେ ରୋଗୀ ପଡ଼ିଲେ ତା' ଘରକୁ ଯାଇ ଅତନ୍ଦ୍ରିତ ଭାବରେ ସେବାଶୁଶ୍ରୂଷା କଲେ । କାହାଘରେ ଶବ ଉଠିପାରୁନଥିଲେ ତାକୁ ନେଇ ସତ୍କାର କଲେ । ଏ ସବୁ କାର୍ଯ୍ୟ ସଙ୍ଗେ ଆଶ୍ରମବାସୀଙ୍କ ପାଇଁ ମୁଠି ଚାଉଳ ମଧ୍ୟ ସଂଗ୍ରହ କଲେ ।

ଆଶ୍ରମରେ ରହିବା ଖାଇବାର ସବୁ ସାଦାସିଧା ବ୍ୟବସ୍ଥା । କର୍ମୀମାନଙ୍କୁ ସବୁ କାର୍ଯ୍ୟ ନିଜ ହାତରେ କରିବାକୁ ପଡ଼େ । ମାଟି ଘରକୁ ଲିପାପୋଛା କରି ଓଳାଇପୋଛାଇ ଖଜୁରୀ ପଟିରେ ଇଟା ମୁଣ୍ଡରେ ଦେଇ ସେମାନଙ୍କୁ ଶୋଇବାକୁ ହୁଏ । ଏକା ମେସ୍‌ରେ ବାରମିଶା ମୁଠି ଚାଉଳର ଭାତ, ଶାଗ ଯାହା ସିଝାହୁଏ ତାକୁ ସମସ୍ତେ ଏକାଠି ବସି ଖାଆନ୍ତି । ଶାଗ ଭାତ ସଙ୍ଗେ ମେଞ୍ଚାଏ ଲୁଣ, ଗୋଟିଏ ଲଙ୍କା ହେଲେ ଯଥେଷ୍ଟ । ଓଡ଼ ବା ଆମ୍ବୁଲ ମିଳିଲେ ସେ ଅଧିକା କଥା । ଏପରି ରହିବା ବା ଖାଇବା ପିଇବା ଯୋଗୁଁ କାହାରି ମନରେ କ୍ଲେଶ ନଥାଏ । ସମସ୍ତେ ଶାନ୍ତ ପରିବେଶ ମଧ୍ୟରେ ପ୍ରଫୁଲ୍ଲ ମନରେ ବିଚରଣ କରୁଥାଆନ୍ତି ।

ସମୟ ନିର୍ଘଣ୍ଟ ଅନୁସାରେ ଆଶ୍ରମର କାର୍ଯ୍ୟକ୍ରମ ଦିନ ରାତି ପରି ଅବାଧିତ ଗତିରେ ଚାଲିଥାଏ । ଠିକ୍ ସମୟରେ ସମସ୍ତେ ଶଯ୍ୟା ତ୍ୟାଗ କରନ୍ତି, ପ୍ରାର୍ଥନା କରନ୍ତି, ସୂତା କାଟନ୍ତି । ସମୟ ନିର୍ଘଣ୍ଟ ଅନୁସାରେ ଆଲୋଚନା ସଭା, ବହିପଢ଼ା ପ୍ରଭୃତି କାର୍ଯ୍ୟ ମଧ୍ୟ ଚାଲେ । ମଝିରେ ମଝିରେ ଅନ୍ୟ ଆଶ୍ରମମାନଙ୍କରୁ ଗାନ୍ଧିବାଦୀକର୍ମୀମାନେ ଆସି ଆଲୋଚନାରେ ଭାଗ ନିଅନ୍ତି ଓ ନୂଆ ନୂଆ ପ୍ରେରଣା ଦେଇଯାଆନ୍ତି ।

ଆଶ୍ରମବାସୀଙ୍କ ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ଗାଁ ମୁଣ୍ଡ ଶ୍ମଶାନ ପାଖ ଠାଙ୍ଗରା ଭୂଇଁଟା ଜୀବନ ପାଇ ଯୌବନର ନୀଳିମା ଖେଳାଇ ଦେବା ସଙ୍ଗେ ସଙ୍ଗେ ଖଳଲୋକମାନଙ୍କର ଚକ୍ଷୁଶୂଳ ହୋଇଉଠିଲା । ପଦନ ବାବୁ ପ୍ରଥମରୁ ଭିକାରୀବାବୁଙ୍କୁ ସେ ଗ୍ରାମରୁ ଚିର ବିଦାୟ ଦେଇ ନିଷ୍କଣ୍ଟକ ହୋଇ ରହିବା ପାଇଁ ଯେଉଁ ଇଚ୍ଛା ପ୍ରକାଶ କରିଥିଲେ ତାହା କାର୍ଯ୍ୟରେ ପରିଣତ ନ ହୋଇ ବିପରୀତ ଦିଗକୁ ଗତି କରିବାରୁ ତାଙ୍କ ମନ ଟିକିଏ ଦବିଯାଇଥିଲା; କିନ୍ତୁ ସେ ଛାଡ଼ିବା ଲୋକ ନୁହନ୍ତି, ମାଛି ଘା ଖୋଜି ବୁଲିଲା ପରି ସେ ଆଶ୍ରମର କୋଉଠି ଗଳତି ରହୁଛି ତାହା ଖୋଜିବୁଲିଲେ ।

ପଦନବାବୁ ଉପରେ ଉପରେ ଜଣେ ଦେଶପ୍ରେମୀ । ସେ ଖଦଡ଼ ପରିଧାନ କରି ବେଳେ ବେଳେ ଆଶ୍ରମକୁ ବୁଲିଆସନ୍ତି । ଆଶ୍ରମବାସୀଙ୍କୁ ସହାନୁଭୂତିସୂଚକ କଥା କହି ଓ ଉପରେ ପଡ଼ି ନାନା ପରାମର୍ଶ ଦିଅନ୍ତି । ନିରୀହ ବା ବୋକାଲୋକ ଦେଖି ପାଖକୁ ଡାକି ଆଶ୍ରମ ଲୋକଙ୍କ ସମ୍ବନ୍ଧରେ ସମ୍ବାଦସବୁ ସଂଗ୍ରହ କରିବାକୁ ଚେଷ୍ଟା କରନ୍ତି । ସେ ଆଶ୍ରମ ଭିତରେ କନ୍ଦଳ ସୃଷ୍ଟି କରାଇ ଭିକାରୀ ବାବୁଙ୍କ ପ୍ରତିପତ୍ତି ନଷ୍ଟ କରିବା ଓ ତାଙ୍କୁ ବିପଦରେ ପକାଇବା ପାଇଁ ବାଟ ଖୋଜୁଥାଆନ୍ତି । ଦୂର ଆଶ୍ରମମାନଙ୍କରୁ କେହି ମହିଳା କର୍ମୀ ବା କୌଣସି ଅନାଥ

ନିରାଶ୍ରୟା ସ୍ତ୍ରୀ ଲୋକ ନିଜର କର୍ମସଂସ୍ଥାନ ପାଇଁ ହସ୍ତଶିଳ୍ପ ବା ସୂଚୀକର୍ମ ପ୍ରଭୃତିରେ ତାଲିମ ନେବାକୁ ଆସିଲେ ଆଶ୍ରମବାସୀଙ୍କୁ ନେଇ କରି ନାନା ଅଶ୍ଳୀଳ ଗୁଜବ ପ୍ରଚାର କରାଇବାକୁ ପଦନବାବୁଙ୍କ ଦଳ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ ।

ଆଶ୍ରମର ଶିଳ୍ପ ସଂସ୍ଥା କାର୍ଯ୍ୟାଳୟ, ସେବାକାର୍ଯ୍ୟ ପ୍ରଭୃତିର ପ୍ରସାର ହେବା ସଙ୍ଗେ ସଙ୍ଗେ ଭିକାରୀବାବୁଙ୍କ ସୁନାମ ଦୂରଦୂରାନ୍ତରକୁ ବ୍ୟାପିଲା । ମଝିରେ ମଝିରେ ସେ ଅନ୍ୟାନ୍ୟ ଗାନ୍ଧି ଆଶ୍ରମମାନଙ୍କୁ ଯାଇ ତାଲିମ ଦେବାକୁ ତାଲିମପ୍ରାପ୍ତ ଲୋକଙ୍କୁ ନିମନ୍ତ୍ରଣ କରି ଆଣିଲେ । ନିଜର ଆଶ୍ରମର ସେବାସଂସ୍ଥା ପ୍ରଭୃତି ବଢ଼ାଇବା ପାଇଁ ବିଭିନ୍ନ ସ୍ଥାନରୁ ଚାନ୍ଦା ସଂଗ୍ରହ କରି ଆଶ୍ରମ ପାଣ୍ଠି ସୃଷ୍ଟି କଲେ । ପାଣ୍ଠିର ସୁବିଧା ପାଇ, ସେ ବାହାର ଲୋକଙ୍କୁ ଭୁଲାଇ ବହୁ ଟଙ୍କା ଆଣି ବରବାଦ କରି ଆତ୍ମସାତ କରୁଛନ୍ତି ବୋଲି ପଦନ ବାବୁଙ୍କ ଲୋକେ ବଡ଼ ବଡ଼ ନେତାମାନଙ୍କ ପାଖକୁ ବେନାମୀ ଚିଠି ସବୁ ପଠାଇଲେ । ସେ ଚିଠି ଫଳରେ ବେଳେ ବେଳେ ତୁଙ୍ଗନେତାମାନେ ତାଙ୍କର ହିସାବପତ୍ର ଯାଞ୍ଚ କରିବାକୁ ଲୋକ ପଠାଇଲେ । ସେ ସବୁ ସତ୍ତ୍ୱେ ଭିକାରୀବାବୁ ନିଶ୍ଚଳ ମେରୁ ପରି ଅଟଳ ରହି ତାଙ୍କ କର୍ତ୍ତବ୍ୟ ସାଧନରେ ଲଗିଲେ ।

ଆଶ୍ରମଟି ବଡ଼ ଆକାର ଧାରଣ କଲା । ବହୁ ବିଭାଗ ଖୋଲିଲା । ଅସ୍ପୃଶ୍ୟତା ନିବାରଣ, ବିଧବାବିବାହ, ପ୍ରୌଢ଼ଶିକ୍ଷା ଓ ଅନ୍ୟାନ୍ୟ ସମାଜ ସେବାରେ ବିଭିନ୍ନ କର୍ମୀମାନେ ଦଳ ଦଳ ହୋଇ କାର୍ଯ୍ୟରେ ଲଗିଲେ । ସେମାନଙ୍କ ଭିତରୁ କେତେକ ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ପ୍ରଭୃତିରେ କାରାବରଣ କରନ୍ତି, ଜେଲରୁ ଫେରି ପୁଣି ଆଶ୍ରମ କାର୍ଯ୍ୟରେ ଲଗନ୍ତି ।

ଆଶ୍ରମ କର୍ମୀଙ୍କ ଯୋଗୁ ମାଲିମକଦ୍ଦମା କମିଲା । ଲୋକଙ୍କ ଭିତରେ ମନୋମାଳିନ୍ୟ ଘଟିଲେ ଆଶ୍ରମବାସୀ ଆପୋଷରେ ବିନା କୋର୍ଟକଚେରୀରେ ସେ ସବୁ ତୁଟାଇ ଦିଅନ୍ତି । ସେମାନଙ୍କ ନିଃସ୍ୱାର୍ଥପର କାର୍ଯ୍ୟପ୍ରଣାଳୀ ଯୋଗୁ ସେମାନଙ୍କ ପ୍ରତି ଲୋକଙ୍କ ଭକ୍ତି ବଢ଼ୁଥାଏ । ଲୋକେ ଘରେ ଗୋଟିଏ ମାଟିପାତ୍ରରେ ନିୟମିତ ରୂପେ ମୁଠାଏ ଲେଖାଏଁ ଚାଉଳ ପକାଇ ପାତ୍ରଟି ପୂରଣ ହୋଇଗଲେ ଆଶ୍ରମରେ ଆଣି ଦେଇଯାନ୍ତି ।

କଳି ତକରାଳ, ମାଲିମକଦ୍ଦମା ପ୍ରଭୃତି କମିଯିବାରୁ ପଦନ ବାବୁଙ୍କର ରୋଜଗାର କମିଲା । ସେ ଦାନ୍ତ କଡ଼ମଡ଼ କରି ଆଶ୍ରମବାସୀଙ୍କୁ ସେମାନଙ୍କ ପଛରେ ସେଗୁଡ଼ାକ ମାଗିଖିଆ ଚାଉଳ ଚୋର ବୋଲି କହନ୍ତି । ସେମାନଙ୍କ ସାମନାସାମନି ହୋଇଗଲେ ସେମାନଙ୍କ ସଙ୍ଗେ ସମ୍ମାନ ସହକାରେ କଥାବାର୍ତ୍ତା କରନ୍ତି ଓ ସେ ବି ଜଣେ ସେମାନଙ୍କ ଭିତରର ଲୋକ ବୋଲି ଦେଖାଇହୁଅନ୍ତି । କୌଣସି ଚିହ୍ନା ପରିଚିତ ନେତା ଆଶ୍ରମକୁ ଆସିଲେ ତାଙ୍କୁ ଭେଟି ତାଙ୍କ ସଙ୍ଗେ ରାଜନୀତି ଚର୍ଚ୍ଚା କରିବା ବାହାନାରେ ଖୋସାମତି କରି ଭିତର କଥା ସଂଗ୍ରହ କରନ୍ତି; ଏପରିକି ଭବିଷ୍ୟତ ଗଣକ ଭଳି, ସେ ନେତା ଜଣକ ଦିନେ ଜଣେ ମନ୍ତ୍ରୀ ବା ଲାଟ ହେବେ ବୋଲି ଭବିଷ୍ୟତ ବାଣୀ ଶୁଣାଇଦିଅନ୍ତି ।

ଆଶ୍ରମକୁ ଯାଆସ କରିବାରେ ଓ ନେତାମାନଙ୍କ ସହିତ ଅବାଧ ମିଳନ ଯୋଗୁଁ, କର୍ମୀ ଓ ନେତାମାନଙ୍କର ଗତିବିଧି ଓ କାର୍ଯ୍ୟପନ୍ଥା ବିଷୟରେ ସେ ବହୁ ତଥ୍ୟ ସଂଗ୍ରହ କରିପାରନ୍ତି । ସେ ତଥ୍ୟ ସବୁ ସେ ଗୁପ୍ତରେ ପୋଲିସ ବା ସ୍ଥାନୀୟ ହାକିମଙ୍କ ଜରିଆରେ ସରକାରଙ୍କୁ ଯୋଗାଇ ଦିଅନ୍ତି । ସେ ଏ ଘର ମାଉସୀ ସେ ଘର ପିଉସୀ ପରି କାମକରୁଥିବାରୁ କେହି ତାଙ୍କ ବିରୁଦ୍ଧରେ ମୁହଁ ଖୋଲି କିଛି କହିବାକୁ ସାହସ କରନ୍ତି ନାହିଁ । କଂଗ୍ରେସ ସଭାରେ ସେ ଜଣେ ବଡ଼ କଂଗ୍ରେସପ୍ରେମୀ ଭାବରେ ଯୋଗଦିଅନ୍ତି । ହାକିମଙ୍କ ସଙ୍ଗେ ମିଶି ଇଂରେଜ ସରକାରଙ୍କ ସୈନ୍ୟଙ୍କ ପାଇଁ ଯୁଦ୍ଧ ଚନ୍ଦା ବି ଅଦାୟ କରନ୍ତି । ସରକାରଙ୍କ ଚନ୍ଦା ଓ ପ୍ରିୟ ପାତ୍ର ବୋଲି କଲେକ୍ଟରଙ୍କ ଗୁପ୍ତ ସୁପାରିଶ ଫଳରେ ସେ ଇଂରେଜ ସରକାରଙ୍କଠାରୁ ଉପାଧି ଓ ସନନ୍ଦ ମଧ୍ୟ ପାଇଥିଲେ । ସେ ଉପାଧି ପାଇଲାବେଳେ ସମାଜ ସେବା ପାଇଁ ଉପାଧି ପାଇଛନ୍ତି ବୋଲି ସେ ପ୍ରଚାର କରାଇଥିଲେ । ତେଣୁ ଦେଶପ୍ରେମୀଙ୍କ ସଙ୍ଗେ ମିଳାମିଶା କରିବାରେ କୌଣସି ବାଧା ସୃଷ୍ଟି ହୋଇନଥିଲା ।

ଆଶ୍ରମଟିକୁ ଭାଙ୍ଗିଦେବା ପାଇଁ ତାଙ୍କର ଭିତରି ଉଦ୍ୟମ ସବୁବେଳେ ଅବ୍ୟାହତ ଥିଲା । ଜମିଦାରଙ୍କୁ ନନ୍ଦ ଜମିଦାରଙ୍କ ପଡ଼ିଆ ଜମି ଶ୍ମଶାନ ଉପରେ ଭିକାରି ବାବୁ ଆଶ୍ରମ ଆରମ୍ଭ କରିଥିଲେ । ବିନା ଅନୁମତିରେ ଜମିଦାରଙ୍କ ଜମି ଉପରେ ଆଶ୍ରମ ବସାଇଥିବାରୁ ଭିକାରିବାବୁଙ୍କ ନାମରେ ମୋକଦ୍ଦମା କରି ସେଠାରୁ ଆଶ୍ରମଟି ଉଠାଇଦେବାପାଇଁ ସେ ଜମିଦାରଙ୍କୁ ପ୍ରବର୍ତ୍ତାଇଥିଲେ । କିନ୍ତୁ ଜମିଦାରଙ୍କ ପୁଅ ନବକୁମାରଙ୍କର ସାଙ୍ଗ ଥିବାରୁ ଓ ଆଶ୍ରମ ପ୍ରତି ତାଙ୍କର ସହାନୁଭୂତି ଥିବାରୁ, ପଦନବାବୁଙ୍କ ଯୋଜନା ବିଫଳ ହୋଇଥିଲା । ଆଶ୍ରମ ବିରୁଦ୍ଧରେ ନାନାପ୍ରକାର ଗୁଜବ ସେ ଗୋପନରେ ପ୍ରଚାର କରାଉଥିଲେ—ମାଟିବଂଶ ଅବଧାନଟା ପଞ୍ଚେ ଟୋକିଆ ଧରି ଏଠି ରାସଲୀଳା ଚଳାଇଛି, ହରିଜନଙ୍କୁ ମୁହଁ ଦେଇ ଜାତି ଧର୍ମ ଛାଡ଼ି ସବୁ ସାରିଲା—ଆଉ କେତେଦିନ ଗଲେ ବାଉରି ପାଣ ସବୁ ବ୍ରାହ୍ମଣଙ୍କ ମୁଣ୍ଡରେ ଗୋଡ଼ ଥୋଇବେ, ଘୋରକଳି ହେବ—ବୋଲି ଗୋପନ ମନ୍ତବ୍ୟ ସବୁ ପ୍ରକାଶ କରୁଥିଲେ ।

ଭିକାରିବାବୁଙ୍କ ନିରହଙ୍କାର ସରଳ ସ୍ୱଭାବ ଓ ନିରାଡ଼ମ୍ବର ଚଳଣି ଲୋକଙ୍କୁ ଆକୃଷ୍ଟ କରୁଥିଲା । ତାଙ୍କର କାଶିସ୍ୱତାବାଦୀ, ସତ୍ୟସନ୍ଧିତ୍ଵ ଓ ପରୋପକାରୀ ଆଦର୍ଶ ଚରିତ୍ରର ପ୍ରଭାବ ସମ୍ମୁଖରେ ପଦନ ବାବୁଙ୍କ ଅପପ୍ରଚାର କିଛି କାମ କରୁନଥିଲା । ଆଶ୍ରମର ନିୟମ ଶୃଙ୍ଖଳା ଓ ସମୟାନୁବର୍ତ୍ତିତା ପାଖଆଖ ଗାଁରେ ମଧ୍ୟ ପ୍ରଭାବ ପକାଉଥିଲା । ଠିକ୍ ସକାଳ ଚାରିଟା ବେଳକୁ ଘଣ୍ଟା ବାଜିଉଠେ । ଆଶ୍ରମବାସୀ ଶେଯରୁ ଉଠି ମୁହଁ ହାତ ଧୋଇ ପ୍ରାର୍ଥନା କରନ୍ତି । ସେ ଘଣ୍ଟା ଓ ପ୍ରାର୍ଥନା ଶବ୍ଦରେ ଗାଁ ଲୋକେ ମଧ୍ୟ ସକାଳୁ ଉଠି ନିଜ ନିତ୍ୟକର୍ମ କରନ୍ତି । ପଦନବାବୁଙ୍କ ଭଳି ଉଚ୍ଚିତରମାନେ ରାତିରେ ଡେରିରେ ଶୋଇ ସକାଳେ ଡେରିରେ ଉଠନ୍ତି । ସେମାନେ ଏପରି ଶବ୍ଦ ଓ କୋଳାହଳରେ ସେମାନଙ୍କ ଶାନ୍ତି ଭଙ୍ଗ ହେଉଥିବାରୁ ଆଶ୍ରମବାସୀଙ୍କ ଉପରେ ଚିଡ଼ିଉଠନ୍ତି ।

ଭଲ ଓ ମନ୍ଦ ଗୋଟିଏ ଥାଳିର ଦୁଇପଟ ପରି—କେଉଁ ପଟକୁ କିଏ କିପରି ଭାବରେ ଦେଖେ । କିଏ ଥାଳିର ପଛପଟର ମଇଳାକୁ ଦେଖି ଥୁ, ଥୁ କଲାବେଳକୁ ଅନ୍ୟ କିଏ ଥାଳିର ଆଗପଟର ପରିଚ୍ଛନ୍ନତା ଦେଖି ଖୁସି ହୁଏ । ଭଲ ମନ୍ଦ ଗ୍ରହଣ କରିବା ମଧ୍ୟ ବ୍ୟକ୍ତିବିଶେଷର ଅଭିମୁଖ୍ୟ ଉପରେ ନିର୍ଭର କରେ । ଗୋଟିଏ ଗୋଲାପ ଫୁଲର ସୌନ୍ଦର୍ଯ୍ୟ ଦେଖି ଜଣେ ଉପଭୋଗ କରିବା ପାଇଁ ଦଣ୍ଡେ ଠିଆହୋଇଯାଉଛି ତ ଆଉଜଣେ ଅନ୍ୟମନସ୍କ ଭାବେ ତାକୁ ଛିଣ୍ଡାଇ ଆଣି ମକଚି ମକଚି ତଳେ ଫିଙ୍ଗି ଦେଉଛି । ତେଣୁ ଆଶ୍ରମର ବ୍ୟକ୍ତିବିଶେଷଙ୍କର ଆଚରଣ ଓ କାର୍ଯ୍ୟାବଳୀ ଉପରେ ବାହାରର ଭିନ୍ନ ଭିନ୍ନ ଲୋକଙ୍କର ଅଲଗା ଅଲଗା ମତ ହେବା ସ୍ୱାଭାବିକ । ବିଶେଷତଃ ପଦ୍ମନବାବୁଙ୍କ ପରି ସକଳଫୁଲରେ ପୋକ ପକାଇବା ଭଳି ଲୋକ ସେଠାରେ ଥିଲାବେଳେ ଆଶ୍ରମ କାର୍ଯ୍ୟକୁ ସମସ୍ତେ ପୂରା ଭଲଭାବରେ ଗ୍ରହଣ କରିବାର ଆଶା କରିବା ଅନୁଚିତ ।

ଆଶ୍ରମର ନିନ୍ଦୁକମାନଙ୍କର ସଂଖ୍ୟା ଅପେକ୍ଷା ଆଶ୍ରମ ପ୍ରତି ଅନୁରକ୍ତ ଥିବା ଗରିବ-ଗୁରୁବାଙ୍କ ସଂଖ୍ୟା ଅଧିକ । ସେମାନେ ଭିକାରୀବାବୁଙ୍କୁ ଦେବତା ପରି ମନେକରନ୍ତି । ଆଶ୍ରମ ବିରୁଦ୍ଧରେ ହେଉଥିବା କୁତ୍ସାରଟନାକୁ କାନ ଦିଅନ୍ତି ନାହିଁ । ଯାହାର ଯାହା ଅସୁବିଧା ହୁଏ ସେ ପ୍ରଥମେ ଆସି ଭିକାରୀବାବୁଙ୍କୁ ଜଣାଏ ଓ ସେ ତା'ର କଳ୍ପନା ଚିନ୍ତା ସୁବିଧା କରିଦିଅନ୍ତି । ସେମାନଙ୍କ ଭିତରୁ କେହି କେହି କହନ୍ତି "ଆଉ ଡର କାହାକୁ ଭୟ କାହାକୁ, ଆଶ୍ରମ ରହିଛି ଗୁରି ବାହାକୁ ।"

ସବୁଦିନ ସମାନ ଯାଏ ନାହିଁ, ସବୁକଥା ଏକାପରି ରହେନାହିଁ । ବଢ଼ି ପାଣି ମାଡ଼ିଆସିଲାବେଳେ ଭଲମନ୍ଦ ଗରିବ ଧନୀ ବିଚାରି ନକରି ସମସ୍ତଙ୍କ ଜମିବାଡ଼ି ଉପରେ ମାଡ଼ିଗ୍ଲଯାଏ । କଂଗ୍ରେସର ହାଓ୍ୱା ପରେ ଅନ୍ୟାନ୍ୟ ମତବାଦର ପବନ ଦେଶସାରା ବୋହିବାକୁ ଲାଗିଲା । ଜାତୀୟବାଦୀଙ୍କ ଭିତରେ ନାନା ଦଳର ସୃଷ୍ଟି ହେଲା । କର୍ମୀ ଓ ଯୁବକମାନେ ବିଭିନ୍ନ ଦଳରେ ବାଣ୍ଟି ହୋଇଗଲେ ।

ଖୋର୍ଦ୍ଧା ଅଞ୍ଚଳରେ ସାମ୍ୟବାଦୀ ଦଳ ଶାଖା ପ୍ରଶାଖା ମେଲାଇ ଗାଁ ଗାଁ ପ୍ରଚାର ଲାଭକଲା । କୃଷକ ଆନ୍ଦୋଳନ ମୁଣ୍ଡ ଟେକିଲା । କୃଷକ ଓ ପ୍ରଜାମାନେ ଜମିଦାରମାନଙ୍କ ଅତ୍ୟାଚାରର ପ୍ରତିବାଦ କଲେ । ଗୁମାସ୍ତାମାନଙ୍କୁ ନମାନି ସେମାନଙ୍କ ଦାବି ଅନୁସାରେ ଖଜଣା, ଭାଗ ଓ ପାଉଣା ପ୍ରଭୃତି ଦେବାରେ ଅନିଚ୍ଛା ପ୍ରକାଶ କଲେ । ଗୁମାସ୍ତାମାନେ ଆଉ ଧମକା ଧମକି କରି ପାଉଣା ଆଦାୟ କରିପାରିଲେ ନାହିଁ । ବେଠି ବେଗାରି ପ୍ରାୟ ଉଠିଗଲା । ପ୍ରଜାମାନେ ମୁହେଁ ମୁହେଁ ଜବାବ ଦେବାକୁ ଶିଖିଲେ । ବହୁସ୍ଥାନରେ ଗଣ୍ଡଗୋଳ ସୃଷ୍ଟି ହେଲା ।

ଭିକାରୀବାବୁଙ୍କ ଆଶ୍ରମ ଚତୁପାର୍ଶ୍ୱ ଗ୍ରାମମାନଙ୍କରେ ମଧ୍ୟ ସେଇ ଆବହାଓ୍ୱା ସୃଷ୍ଟି ହେଲା । ଲୋକେ ଭିକାରୀବାବୁଙ୍କ ନରମପନ୍ଥାକୁ ପସନ୍ଦ ନକରି ସାମ୍ୟବାଦୀ ଉଗ୍ର ପନ୍ଥା ପ୍ରତି ଆକୃଷ୍ଟ ହେଲେ ।

ସେଠାର ଜମିଦାର ତାଙ୍କ ପୁଅର ଜନ୍ମଦିନକୁ ସେଠାର ପ୍ରଜାମାନଙ୍କୁ ଗୁମାସ୍ତାମାନଙ୍କ ହାତରେ ନିମନ୍ତ୍ରଣ ପଠାଇଲେ ଓ ବେଠିରେ ଆସି କାମ ତୁଲାଇବାକୁ ଖବର ଦେଲେ । ବେଠି ପାଇଁ କୋଟିଏ ହେଲେ କେହି ଲୋକ ଆସିଲେ ନାହିଁ । ସେ ବାବୁଭାୟା ଓ ଅନ୍ୟ ଭଦ୍ରଲୋକଙ୍କୁ ନିମନ୍ତ୍ରଣ କରିଥିବାରୁ ପଇସା ଦେଇ ଲୋକ ଲଗାଇ ଗୁଆମୁଣ୍ଡିଆ ଓ ରୋଷେଇ କାର୍ଯ୍ୟ ପ୍ରଭୃତି କରାଇଲେ । ଭଦ୍ରଲୋକମାନେ ଖାଇବାପାଇଁ ଟେବୁଲ ଚଉକିର ବ୍ୟବସ୍ଥା କଲେ । ପ୍ରଜାମାନେ କେହି ଆଗରୁ ବେଠିପାଇଁ ବା ବେଭାର ନେଇ ନ ଆସିବାରୁ ସେମାନଙ୍କ ପାଇଁ ଖାଇବାର ବ୍ୟବସ୍ଥା କରିନଥିଲେ ।

ଠିକ୍ ଖାଇବାବେଳ ହେଲାବେଳକୁ ଗୁଡ଼ିଏ ଯୁବକ ପ୍ରଜା ଆସି ଜମିଦାରଙ୍କ ନିର୍ଦ୍ଧାରିତ କରି ଭଦ୍ରଲୋକଙ୍କ ଖାଇବା ପାଇଁ ହୋଇଥିବା ନିର୍ଦ୍ଦିଷ୍ଟ ସ୍ଥାନରେ ବସିପଡ଼ିଲେ । ଗୁମାସ୍ତାମାନଙ୍କର ପ୍ରଜାମାନଙ୍କୁ ଧମକା ଧମକି କରିବା ଅଭ୍ୟାସରେ ପଡ଼ିଯାଇଥାଏ । ଜଣେ ଗୁମାସ୍ତା ସେମାନଙ୍କୁ କହିଲା, "ଭେଟି ବେଳକୁ ଦେଖାନାହିଁ, ଗେଫିଲ ବେଳକୁ ରଜା ଜିଲ୍ ପରି ଆସି ଚଉକି ଟେବୁଲରେ ବସିଗଲେ ! ତମ ବୋପା ଜନ୍ମରେ କିଏ ଚଉକିରେ ବସିଥିଲା ?" ଏତକ କହିବା ସଙ୍ଗେ ସଙ୍ଗେ ଜଣେ ଯୁବକ ଆସି 'ଆମ ବୋପା ନାଁ ଧରିବାକୁ ତୁ କିଏ ?' ବୋଲି କହି ଗୁମାସ୍ତା ପାଖକୁ ଉଠିକି ଗଲାବେଳକୁ ଗୁମାସ୍ତା 'ମାରିପକେଇଲେ' ବୋଲି ରଡ଼ିଟାଏ ଛାଡ଼ି କିଏ ଧକ୍କାଏ ମାରିଲା ଭଳି ତଳେ ପଡ଼ିଗଲା । ଖୁଣ୍ଟରେ ମୁଣ୍ଡ ବାଜି ସେ ଅଚେତା ହୋଇଗଲା ବୋଲି ସମସ୍ତେ ଭାବି ତାକୁ ଧରାଧରି କରି ଉଠାଇ ଡାକ୍ତରଖାନା ପଠାଇଲେ । ସେ ମରିଗଲା ବୋଲି ଚାରିଆଡ଼େ ପ୍ରଚାର ହୋଇଗଲା ।

ଯୁବକମାନେ ଏ ଘଟଣା ଦେଖି କିଏ କୁଆଡ଼େ ପ୍ରାଣ ନେଇ ପଳାଇଲେ । ଗୁମାସ୍ତା ସଙ୍ଗେ ବାଦବିବାଦ କରିଥିବା ଯୁବକ ସେଇ ମୁହୂର୍ତ୍ତରୁ ଫେରାର ହୋଇଗଲା । ପୋଲିସ ଆସି ପହଞ୍ଚିଲେ । ଭୋଜି ବନ୍ଦ ହୋଇଗଲା । ଭଦ୍ରଲୋକମାନେ ଫେରିଗଲେ । ରନ୍ଧା ହୋଇଥିବା ଜିନିଷପତ୍ର ସବୁ ନଷ୍ଟ ହୋଇଗଲା ।

ଗୁମାସ୍ତାଟି ଧୁକ୍ଖୁକ୍ରେ ସେଇ ରାତିରେ ଡାକ୍ତରଖାନାରୁ ଜମିଦାରଙ୍କ ଘରକୁ ଫେରି ଲୁଚିରହିଥିବାରୁ ଡାକ୍ତରଖାନାରେ ବା ତା' ଘରେ ସେ ନଥିବାର ଜାଣି ତା'ର କାଳ ହୋଇଯାଇଛି ବୋଲି ପ୍ରଚାର ହୋଇଥିଲା; କିନ୍ତୁ ସେ ଗୁମାସ୍ତାଟି ଜମିଦାରଙ୍କ ଘର ଭୋଜିର ସଦବ୍ୟବହାର ନକରି ଛାଡ଼ିନଥିଲା । ସେ ଯୁବକକୁ ମିଶାଇ ଯେଉଁମାନେ ସେଠାକୁ ଯାଇଥିଲେ ସଦନବାବୁଙ୍କ ପରାମର୍ଶରେ ଭାରତୀୟ ଡିଙ୍ଗଲ କୋର୍ଟ ବା କ୍ରିମିନାଲ କୋର୍ଟ ବାହାରୁ ବହୁତ ଦଫା ବାନ୍ଧି ତଦାରଖ ପରେ ପୋଲିସ ମୋକଦ୍ଦମା ସବୁ ରୁଜୁ କଲେ ।

ପୋଲିସ ପଇଁତରାରେ ସାଧାରଣ ଲୋକେ ଭୟଭୀତ ହେଲେ । ଯୁବକମାନେ ଲୁଚିଛପି ଜମିଦାରଙ୍କ ଲୋକଙ୍କୁ ମାଡ଼ ଚଢ଼ାଇଲେ, ଜିନିଷ ଛଡ଼ାଇନେଲେ, ଖଳା ଓ କଚେରୀମାନଙ୍କରୁ ମହଜୁଦ ଥିବା ଧାନ ମୁଗ ସବୁ ଲୁଟିକଲେ । ଆଉରି ମୋକଦ୍ଦମା ସବୁ ସୃଷ୍ଟି ହେଲା, ବହୁତ ଗଣ୍ଡଗୋଳ ଲାଗିଲା ।

ଏସବୁ କଥା କାନରେ ବାଜିବାରୁ ଭବାନୀବାବୁ ସେଠାରେ ଶାନ୍ତି ଶୃଙ୍ଖଳା ଫେରାଇ ଆଣିବାକୁ ଦୁଇପକ୍ଷ ଭିତରେ ମିଳାମିଶା ଉଦ୍ୟମ କଲେ । ଗୋଟେ ପଟେ ମକଦ୍ଦମାଖୋର ପଦନବାବୁ, ଅନ୍ୟପଟେ ଉଗ୍ର ସମାଜବାଦୀ ଯୁବକ—କିଏ ତାଙ୍କ କଥା ଶୁଣିବ ? ସମାଜବାଦୀ ଯୁବକମାନେ ଅଟ୍ଟହାସ କରି କହିଲେ—"ତୁମେ ବୁଢ଼ାଲୋକ, ଏଥିରେ କାହିଁକି ପଶୁଚ ? ଯାଅ, ତୁମେ ଗାନ୍ଧିବୁଢ଼ା ଆଶ୍ରମରେ ବସି ସୂତା କାଟ । ଦେଶର ସ୍ୱାଧୀନତାକୁ ତମ ତକଲି ସୂତାରେ ବାନ୍ଧି ଇଂରେଜ ସରକାରଙ୍କ ପକେଟରୁ ଭିଡ଼ି ଛଡ଼ାଇ ଆଣିବ । ଏ ରକ୍ତପିପାସୁ ଜମିଦାର ଦଳକୁ ଆମେ ଠେଙ୍ଗାରେ ସାବାଡ଼ କରିଦେବୁ । ଠେଙ୍ଗାକୁ ମହାଦେବ ଡରନ୍ତି, ସେ ଅମ ନାମରେ କେତେ ମକଦ୍ଦମା କରିବେ କରନ୍ତୁ, ଜେଲଯାଇ ଶଶୁର ଘର ଭାତ ଖାଇବାକୁ ଆମେ ପ୍ରସ୍ତୁତ ଅଛୁ ।"

ତାଙ୍କ କାର୍ଯ୍ୟର କିଛି ଫଳ ନହେବାର ଦେଖି ସେ ନୀରବ ରହିଲେ ।

## ନିଅଁ

ନବକୁମାର ଅନ୍ୟମନସ୍କ ଭାବରେ ରେଳଷ୍ଟେସନରେ ବୁଲୁ ବୁଲୁ ତାଙ୍କର ଜଣେ ଦୂରସମ୍ପର୍କୀୟ ମଉସାଙ୍କ ଉପରେ ଆଖିପଡ଼ିଗଲା । ସେ ମଉସାଙ୍କ ପାଖକୁ ଯାଇ ନଇଁକରି ପ୍ରଣାମ କଲେ । ମଉସା ତାଙ୍କର ବାପାଙ୍କୁ ଖୁବ୍ ଭକ୍ତି କରନ୍ତି ଓ ଛୁଟି ସମୟରେ ଆଗେ ତାଙ୍କ ଘରକୁ ଆସୁଥିଲେ । ସେ ଅତି ଭଦ୍ରଲୋକ, ମିଷ୍ଟଭାଷୀ ଓ ସ୍ନେହପରାୟଣ । ସେ ପିଲମାନଙ୍କୁ ବଡ଼ ଭଲପାଆନ୍ତି, ତେଣୁ ନବକୁମାର ଓ ତାଙ୍କ ଭାଇଙ୍କୁ ବଡ଼ ଆଦର କରୁଥିଲେ । ସେ କଲିକତାର ଗୋଟେ କଳରେ କାମ କରନ୍ତି । ଛୁଟିରେ ଗାଁକୁ ଆସି ଛୁଟି ସରିବାରୁ ଫେରିକରି କଲିକତା ଫେରୁଥିଲେ । ସେ ନବକୁମାରଙ୍କ କାନ୍ଧରେ ହାତମାରି କହିଲେ, "ବାପା, ଏବେ କଅଣ କରୁଛୁ, କୁଆଡ଼େ ବାହାରିଛୁ ?"

ନବକୁମାର କହିପକାଇଲେ, "ମୁଁ ଜେଲରୁ ଫେରି ଘରେଇ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କରି ରେଭେନ୍ସା କଲେଜରେ ନାମ ଲେଖାଇବାକୁ ଆସିଥିଲି । ସେ ତ ସରକାରୀ କଲେଜ, ସେଥିରେ ମୋ ପରି ସରକାର ବିରୋଧୀ ଲୋକଙ୍କୁ ସ୍ଥାନ ମିଳନ୍ତା କୁଆଡ଼ୁ ? ଓଡ଼ିଶାରେ ତ ଆଉ କଲେଜ ନାହିଁ—ଓଡ଼ିଶା ବାହାରକୁ ଯାଇ ପଢ଼ିଲେ ହୁଅନ୍ତା; କିନ୍ତୁ ବାପାଙ୍କ କଥା ତ ଜାଣିଛ, ମାଆ ଓ ଭାଇ ଗଲାପରେ ସେ ଜେଲରୁ ଫେରି ପୂରା ବାବାଜୀ । ଶ୍ମଶାନ ପାଖରେ ଆଶ୍ରମ କରି ରହିଛନ୍ତି । ମୋର ପାଠପଢ଼ା ଖର୍ଚ୍ଚ ତୁଲାଇବେ କେଉଁଠୁ ? ତେଣୁ ମୁଁ ମୋର ଭବିଷ୍ୟତ ପନ୍ଥା ସ୍ଥିରକରିନପାରି ଏଣେ ତେଣେ ବୁଲୁଚି । କୁଆଡ଼େ ଯିବି କଅଣ କରିବି କିଛି ସ୍ଥିର କରିପାରୁନାହିଁ ।"

ମାଆ ଭାଇଙ୍କ ମୃତ୍ୟୁ କଥା ଓ ବାପାଙ୍କ ଅବସ୍ଥା ମନେପକାଇଦେବାପରେ ମଉସାଙ୍କ ଆଖି ଛଳଛଳ ହୋଇଗଲା । ସେ କହିଲେ—"ବ୍ୟସ୍ତ ହଅନାହିଁ, ମୁଁ ତ ଅଛି, ମୋତେ ଖବର ଦେଲ୍ ନାହିଁ ! କଲିକତାରେ ଗଣ୍ଡା ଗଣ୍ଡା କଲେଜ, ଘରେ ରହି ପଖାଳ ଶାଗ ଖାଇ ପାଠପଢ଼ିହେବ । ତୁ ପ୍ରଥମ ଶ୍ରେଣୀରେ ପାଶ୍ କରିଛୁ—ତୋର ଅସୁବିଧା କଅଣ ? ତୋ ପରି ମେଧାବୀ ଛାତ୍ରଙ୍କୁ କଲିକତା ସବୁରେଇ କଲେଜମାନଙ୍କରେ ନିଶ୍ଚୟ ସ୍ଥାନ ମିଳିବ । ମୋ ଘରେ ରହି ପଢ଼ିବୁ । ଅବଶ୍ୟ ତୋର ଦୁଇଟା ମାଉସୀ, ଘରେ ପାଠ ପଢ଼ାରେ ଗଣ୍ଡଗୋଳ ହୁଏ, ତୋ ପାଇଁ ଅନ୍ୟତ୍ର ବ୍ୟବସ୍ଥା କରିହେବ । ତୁ ବି ଟ୍ୟୁସନ କରି ତୋ ନିଜ ପଢ଼ା ବ୍ୟବସ୍ଥା କରିପାରିବୁ । କାହାକୁ ହାତ ପତାଇବାକୁ ବା କାହା ପାଖରେ ଋଣୀ ହୋଇ ରହିବାକୁ ପଡ଼ିବ ନାହିଁ । ଶୁଣ, ମୋ ସଙ୍ଗେ କଲିକତା ଯିବୁ, ସେଠାର କୌଣସି କଲେଜରେ ନାମ ଲେଖାଇବାକୁ ଚେଷ୍ଟା କରିବୁ ।" ଏହା କହିବା ପରେ ମଉସା ପୁତୁରାଙ୍କୁ ତାଙ୍କ ଗଣ୍ଠି ଲିପିଜ ଜଗାଇ ଟିକଟ ପାଇଁ ଆଉ ଖଣ୍ଡିଏ ଟିକଟ ନେଇ ଆସିଲେ । ଗାଡ଼ି ଆସି ଷ୍ଟେସନରେ ଲାଗିଲା । ମଉସା ପୁତୁରା ଦୁହେଁ ଗାଡ଼ିରେ ବସିପଡ଼ିଲେ । ପୁତୁରା ଉପାସରେ ଥିବା ଅନୁମାନ କରି ବାଟରେ ଗୋଟିଏ ଷ୍ଟେସନରୁ କିଛି ଜଳଖିଆ କିଣି ପୁତୁରାଙ୍କୁ ଖୁଆଇଲେ ।

ମଉସା ଗପୁଡ଼ି ଲୋକ । ସେ ନିଜର ଜୀବନ ବୃତ୍ତାନ୍ତ ଗପିଚାଲିଲେ । ନବକୁମାରଙ୍କ ବାପାଙ୍କ ଦେଶ କାର୍ଯ୍ୟକୁ ଭୂରି ଭୂରି ପ୍ରଶଂସା କରିସାରିଲା ପରେ ସେ କହିଲେ—"ମୋର ବି ଦେଶକାର୍ଯ୍ୟ କରିବାକୁ ବହୁତ ଇଚ୍ଛା ଥିଲା; କିନ୍ତୁ ମୁଁ ଯେପରି ଅଡ଼ୁଆରେ ପଡ଼ିଗଲି ସେଥିରେ ଭୁଜଙ୍ଗ ଚୁଚୁନ୍ଦ୍ରା । ପରି ସଂସାର ମତେ ଛାଡ଼ିପାରୁନାହିଁ କି ମୁଁ ମୋ ସଂସାରକୁ ଛାଡ଼ିପାରୁନାହିଁ । ତମ ବାପାଙ୍କ କଥା ସ୍ୱତନ୍ତ୍ର । ସେ ଘର ଜଞ୍ଜାଳକୁ ଅପେକ୍ଷା ନ କରି ଦେଶ କାମ ପାଇଁ ଡେଇଁ ପଡ଼ିଥିଲେ । ଏବେ ଅବଶ୍ୟ ସେ ସ୍ୱାଧୀନ, ଘର କାମ ପ୍ରାୟ ଶୂନ, ତେଣୁ ଦେଶକାମ କରି ପାରୁଛନ୍ତି । ତମମାନଙ୍କର ବି ଗୋଟାଏ ସଂସାର, ପୁଣି ମୋର ଦୁଇଦୁଇଟା ସଂସାର ।" ଏହା କହି ଠୋ ଠୋ ହସିଉଠିଲେ । "ବୁଝିଲୁ ବାପା, ତୋର ଦୁଇଦୁଇଟା ମାଉସୀ ମୋ ବେକରେ ବନ୍ଧା । ମହାଦେବଙ୍କ ବେକରେ ଗୋଟେ ନାଗସାପ ଗୁଡ଼େଇ ହୋଇଚି, ମୋ ବେକକୁ ଦୁଇଟା—ସବୁବେଳେ କାମିଧନ୍ଦା ଫଁ ଫଁ ଗର୍ଜୁଛନ୍ତି, ଆଉ ଏଥିରେ ଦେଶସେବା କଅଣ—ନିଜ ସେବା ମତେ ଧରିଧରି ।"

ମଉସାଙ୍କ ନାମ ଅଗଣି ଦାସ । ସେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ପାଠ ପଢ଼ିଥିଲେ । କଂଗ୍ରେସ ଆନ୍ଦୋଳନ ପରେ ସ୍କୁଲଟି ଭାଙ୍ଗି ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥିଲା । ଜାତୀୟ ବିଦ୍ୟାଳୟର ସରକାରୀ ପରୀକ୍ଷା ସଙ୍ଗେ ସମ୍ପର୍କ ନ ଥିଲା । ସେଥିରେ ମାଟ୍ରିକ୍, ବି. ଏ., ଏମ୍. ଏ. ସବୁ ପଢ଼ାଯାଇ ସେଇଠି ଜାତୀୟ ଡିଗ୍ରୀ ଦିଆଯାଉଥିଲା । ପାଖ ଗାଆଁଟିରେ ତାଙ୍କର ଜଣେ ସହପାଠୀ ବନ୍ଧୁଙ୍କ ଘର । ତାଙ୍କ ଘରକୁ ସେ ବହୁତ ଯିବା-ଆସିବା କରୁଥିଲେ । ଦୁଇ ବନ୍ଧୁଙ୍କ ଭିତରେ ପାଣି ଗଳୁନଥିଲା । ବନ୍ଧୁଙ୍କର ମାଆ ବଡ଼ ସ୍ନେହୀ ଲୋକ । ତାଙ୍କର ବଡ଼ପୁଅ ମରିଯାଇଥିବାରୁ ସେ ବଡ଼ ପୁଅରକ୍ଷଣୀ ଥିଲେ ।

ଅଗଣିଙ୍କୁ ଦେଖି ନିଜ ପୁଅ ପରି ସୁଖ ପାଇଲେ । ସେ ନିଜ ପୁଅ ଓ ଅଗଣିଙ୍କ ଭିତରେ କୌଣସି ତଫାତ୍ ଦେଖୁନଥିଲେ ଓ ପାତର ଅନ୍ତର କରୁନଥିଲେ । ସେ ତାଙ୍କୁ ଧର୍ମପୁଅ କଲେ ।

ତାଙ୍କ ମାତୃ ସ୍ନେହରେ ବଶୀଭୂତ ହୋଇ ଅଗଣି ଛୁଟିରେ ନିଜ ଗାଁକୁ ଯିବା ବନ୍ଦକରିଦେଇ, ତାଙ୍କ ଘରେ ରହନ୍ତି । ତାଙ୍କଠାରୁ ବେଶି ସ୍ନେହ ପାଇବା ଆଶାରେ ନିଜ ପିତା ମାତାଙ୍କ କଥା ଲୁଚାଇରଖି ସେ ବାପ ମା' ଛେଉଣ୍ଡ ବୋଲି ତାଙ୍କୁ ଧାରଣା ଦେଇଥିଲେ । ତାଙ୍କର ହସ ହସ ମୁହଁ ଓ ଧୀର ସ୍ୱଭାବ ସାଙ୍ଗକୁ ବାପମା 'ଛେଉଣ୍ଡ ଧାରଣାଟା ବନ୍ଧୁଙ୍କ ପିତା ମାତାଙ୍କୁ ଅଗଣିଙ୍କ ପ୍ରତି ବେଶି ଆକୃଷ୍ଟ କଲା । ସେଠାରେ ପାଠପଢ଼ା ସରିନଥିଲା । ଅଗଣି ଆଦର ପାଇ ହଷ୍ଟେଲ ଛାଡ଼ି ବନ୍ଧୁଙ୍କ ଘରେ ଆସି ରହିଲେ ।

ଅଗଣି ନିଜ ବାପ ମା'ଙ୍କ ପାଖକୁ ଗୋପନରେ ଚିଠିପତ୍ର ଆଦାନ ପ୍ରଦାନ କରୁଥିଲେ । ତାଙ୍କ ବାପା ଜଣେ ସାଧାରଣ କୃଷୀଲୋକ । ସେ ବାହାରକୁ କୁଆଡ଼େ ଯିବା-ଆସିବା ନକରି ଗାଆଁରେ ତାଙ୍କ ଜମି ଖଣ୍ଡିକୁ ଧରି ପଡ଼ିଆନ୍ତି । ପୁଅ ପାଠପଢ଼ିବାକୁ ଯାଇ ପାଠ ସରିଲେ ଆସିବ ବୋଲି ଚିଠି ଲେଖୁଛି । ସେ କି ପାଠ, କେତେଦିନ ଲାଗିବ ତାଙ୍କୁ ଜଣାନଥାଏ । ମାଆ ବେଶି ବ୍ୟସ୍ତ ହେବାରୁ ମାଆ ଦେହ ଖରାପ, କିଛିଦିନ ପାଇଁ ହେଲେ ଆସି ମାଆକୁ ଦେଖିଯିବା ପାଇଁ ସେ ପୁଅକୁ ଲେଖିଲେ ।

ସେ ଚିଠି ପାଇ ଗାଁକୁ ଯିବାକୁ ଅଗଣିଙ୍କ ମନ ଛଟପଟ ହେଲା । କଟକରେ ଗୋଟେ ଭଲ ଚାକିରିର ସନ୍ଧାନ ମିଳିଛି ଓ ସେଠାକୁ ଯିବା ଜରୁରୀ ବୋଲି କହି ଧର୍ମମାଆଙ୍କଠାରୁ ବିଦାୟ ନେଇ ଗାଁକୁ ଆସିଲେ । ବାପ ମା' ତାଙ୍କୁ ଦେଖିଲା କ୍ଷଣି ରଙ୍କୁଣୀ ଧନ ପାଇଲା ପରି ଜାବୁଡ଼ି ଧରିଲେ । ତାଙ୍କର ମାମୁଁ ଟିକିଏ ପାଠପଢ଼ୁଆ ଲୋକ । ସେ ଭଣଜାକୁ ଦେଖିବାକୁ ଆସି ଭଉଣୀଙ୍କୁ କହିଲେ, 'ଅଗଣି ଜାତୀୟ ସ୍କୁଲରେ ପାଠ ପଢ଼ୁଛି, ସେଠି ଦେଶ କଥା ଭାବି ନିଜ ସ୍ୱାର୍ଥକୁ ଭୁଲିଯିବାକୁ ତାଲିମ ଦିଆଯାଏ । ତେଣୁ ତାକୁ ନିଜ କଥା ଓ ତୁମମାନଙ୍କ କଥା ଭାବିବାର ପରିସ୍ଥିତି ସୃଷ୍ଟି କରିବାକୁ ହେଲେ ତା'ର ହାତ ଛନ୍ଦିଦେବା ଦରକାର । ମାମୁଁଙ୍କ ଉପଦେଶ ଅନୁସାରେ ଗୋଟିଏ କନ୍ୟା ଖୋଜାହୋଇ ଶୀଘ୍ର ଶୀଘ୍ର ବିବାହ କାର୍ଯ୍ୟ ବଢ଼ିଗଲା ।

ସ୍ତ୍ରୀକୁ ବାପମାଙ୍କ ପାଖରେ ଛାଡ଼ି ସେ ସତ୍ୟବାଦୀ ଫେରିଲେ । ସେ ଏତେଦିନ ଅନୁପସ୍ଥିତ ରହିଥିବାରୁ ଧର୍ମ ମାଆ ବ୍ୟସ୍ତ ହେଉଥିଲେ । ସେ ଡେରି କାହିଁକି ହେଲା ପଚାରିବାରୁ ସେ କଟକରେ ବହୁତ ଚେଷ୍ଟା କଲେ—ଚାକିରି କିଛି ଯୋଗାଡ଼ ହେଲାନାହିଁ—ତେଣୁ କିଛିଦିନ ଅପେକ୍ଷା କରି ଫେରି ଆସିଲେ ବୋଲି କହିଲେ । କିନ୍ତୁ ଲାଜରେ ନିଜ ବିବାହ କଥା କିଛି ପ୍ରକାଶ କଲେ ନାହିଁ ।

ଅଗଣିଙ୍କ ଧର୍ମବାପା କଲିକତା ଝୋଟ କଲରେ କାମ କରୁଥିଲେ । ଛୁଟିରେ ଗାଆଁକୁ ଆସିଥିଲେ । ଝୋଟ କଲ ମାଲିକ ତାଙ୍କୁ ଖୁବ୍ ସୁଖ ପାଉଥିଲେ । ସେଠାରେ ଗୋଟିଏ କିରାଣୀ ଚାକିରୀ ଖାଲିଥିବାର ମଧ୍ୟ ସେ ଜାଣିଥିଲେ ।

ଧର୍ମ ମା' ତାଙ୍କ ସ୍ୱାମୀଙ୍କୁ କହିଲେ, ପିଲାଟା ଚାକିରୀ ଖୋଜି ଖୋଜି କଷ୍ଟକରୁ ମୁହଁ ଶୁଖାଇ ଫେରିଲା । ତୁମେ କଲିକତାରେ ତା' ପାଇଁ ଗୋଟିଏ ଚାକିରୀ ଯୋଗାଡ଼ କର, ନହେଲେ ବାପ ମା' ଛେଳିଣ୍ଡି ପିଲାଟା ବାଇଆ ପରି କୁଆଡ଼େ ବୁଲିବ ? ସେ କଅଣ ତୁମ ପୁଅ ନୁହେଁ ? ଏଠା ପାଠ କଥା ତ ଜାଣିଚ, ଦେଖିରୁ କଅଣ ମିଳିବ ? ତା'ର ଆଉ ପାଠ ପଢ଼ାରେ ମନ ଲାଗୁନାହିଁ । ତୁମେ ତାକୁ ପରିଦିନ ନ ଭାବି ସାଙ୍ଗରେ ନେଇ ତା' ପାଇଁ ଗୋଟିଏ ଚାକିରୀ କରାଇଦିଅ ।"

ସ୍ତ୍ରୀଙ୍କଠାରୁ ବରାବର ଏପରି କଥା ଶୁଣି ଶୁଣି ଛୁଟି ସରିଲାବେଳକୁ ଧର୍ମପୁଅକୁ ସାଙ୍ଗରେ ଧରି ସେ କଲିକତା ଆସିଲେ । ମାଲିକଙ୍କୁ କହାବୋଲାକଲାପରେ ତାଙ୍କୁ କିରାଣୀ ଚାକିରୀଟି ମିଳିଗଲା । ଛୁଟି ହେଲେ ଗୃହିଣୀଙ୍କ ଅନୁରୋଧରେ ଧର୍ମ ବାପା ତାଙ୍କୁ ସଙ୍ଗରେ ଧରି ତାଙ୍କ ଗାଁକୁ ଆସନ୍ତି । କେବେ କେବେ ଚାକିରୀରେ ବହୁତ କାମର ବାହାନା ଦେଖାଇ ଅଗଣି କଲିକତାରେ ରହିଯାଆନ୍ତି । ଧର୍ମ ବାପା ଗାଁକୁ ଯିବାପରେ ନିଜେ ନିଜ ଗାଁକୁ ଯାଇ ସ୍ତ୍ରୀ ଓ ବାପମା'ଙ୍କ ପାଖେ ଛୁଟି କଟାଇ ଧର୍ମବାପା ଫେରିବା ପୂର୍ବରୁ କଲିକତା ଫେରିଆସନ୍ତି ।

ସେ ଥରେ ଧର୍ମବାପାଙ୍କ ସଙ୍ଗେ ସତ୍ୟବାଦୀ ଆସିଥିବାବେଳେ ସବୁଥର କାହିଁକି ସେ ଧର୍ମବାପାଙ୍କ ସାଙ୍ଗରେ ଛୁଟିରେ ଆସୁନାହାନ୍ତି ବୋଲି ପଚାରିବାରେ ଅଗଣି କିଛି ନକହି ଚୁପ୍‌ହୋଇ ନୀରବରେ ବସିରହିଲେ ।

ଧର୍ମ ମାଆ ବିଚାରିଲେ, ଚାକିରୀ ତ କଲା, ଏଥର ବିବାହଟିଏ କରି ବୋହୂଟିଏ ରଖିଲେ ସେ ବରାବର ଆସିବ, ନହେଲେ ହୁଏତ କଲିକତାରେ କେଉଁ ଟୋକୀର ପାଲରେ ପଡ଼ି ସେଇଠି ଆପେ ଆପେ ବାହାହୋଇ ଆଉ ଆଦୌ ନଆସି ସେମାନଙ୍କୁ ଭୁଲିଯିବ ।

ସେ ଧର୍ମବାପା ଓ ଅଗଣି ଆଇ ବିବାହ ପ୍ରସ୍ତାବ ପକାଇବାରେ ଅଗଣି ସେଠାରୁ ଉଠି ଚାଲିଗଲେ । ଧର୍ମମା' ସ୍ୱାମୀଙ୍କୁ କହିଲେ—ଦେଖିଲ, ସେ ଅପସନ୍ଦ କରି ଉଠି ଚାଲିଗଲା । ସେ ଭାବୁଛି ଆମେ ତା' ପାଇଁ ଏଠି କନ୍ୟା ଯୋଗାଡ଼ କରି ବାହା କରାଇଦେଇ ପାରିବା ନାହିଁ । ଯେତେହେଲେ ତ ସେ ଆମ ଜାତିର, ତା'ପରେ ଆମେ ତାକୁ ପୁଅ କଲେଇଁ । ତା' ପାଇଁ କନ୍ୟା କାହିଁକି ମିଳିବ ନାହିଁ ? ଯୋଗାଡ଼ କଲେ ନିଶ୍ଚୟ ମିଳିବ । ଏଥର ତାହାକୁ ବାଧ୍ୟ କରାଇ ଗୁଡ଼ିବାକୁ ହେବ ।

ସ୍ୱାମୀ ସ୍ତ୍ରୀ ମିଶି କନ୍ୟା ଯୋଗାଡ଼ରେ ଜୋର୍‌ସୋରରେ ଲାଗି ପଡ଼ିଲେ । ସେ ଗ୍ରାମରେ ଜଣେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ବ୍ୟକ୍ତିଙ୍କର ଗୋଟିଏ ଝିଅ ଥିଲା । ନିଶା ଅଭ୍ୟାସରୁ ଅର୍ଥାଭାବର ସମ୍ମୁଖୀନ ହୋଇ ବିବାହ ବୟସ ଗଡ଼ିଯାଉଥିଲେ ମଧ୍ୟ ସେ କନ୍ୟାଟିକୁ ହାତରୁ

ଦ' ହାତ କରିପାରୁନଥିଲେ । ସେ ପ୍ରସ୍ତାବ ଶୁଣି ପିଲଟିର ଯୋଗ୍ୟତା, ସୁଧାର ସ୍ୱଭାବ ଓ ଧର୍ମପିତା ମାତାଙ୍କ ଆଗ୍ରହ ଦେଖି ସେଥିରେ ରାଜି ହୋଇଗଲେ ।

ବାହାଘରର ଠିକ୍ ପୂର୍ବରୁ ଅଗଣି ବିବାହ ସ୍ଥିର ହେବା କଥା ଜାଣିଲେ । ସେ ଏପରି ଘଟଣା ଘଟିପାରେ ବୋଲି ସ୍ୱପ୍ନରେ ସୁଦ୍ଧା ଭାବିନଥିଲେ । ତାଙ୍କୁ ନଜାଣି ନଶୁଣି କେହି କନ୍ୟା ଦେଇପାରେ ବୋଲି ଆଶଙ୍କା ମଧ୍ୟ କରିପାରି ନଥିଲେ । ଏହା ଭିତରେ ସେ ଗୋଟିଏ ପୁତ୍ର ସନ୍ତାନ ମଧ୍ୟ ଲାଭ କରି ସାରିଥିଲେ; କିନ୍ତୁ ସେ ଏପର୍ଯ୍ୟନ୍ତ ତାଙ୍କର ସମସ୍ତ ବିଷୟ ଲୁଚାଇ ରଖିଛନ୍ତି । କହିବେ ବା କିପରି ? କ'ଣ କହିବେ ? କହିଲେ ତାଙ୍କ ଧର୍ମବାପା ମା' ଓ ସେଠାର ଲୋକେ ତାଙ୍କୁ କ'ଣ ବିଚାରିବେ ? ମାଲିକ ଜାଣିଲେ ବା ତାଙ୍କ ଚାକିରି ଅବସ୍ଥା କ'ଣ ହେବ ? ସେ ଏ ଅଡୁଆରୁ କିପରି ମୁକ୍ତ ହେବେ ଭାବି ଭାବି କିଛି ସ୍ଥିର କରିପାରିଲେ ନାହିଁ । କଥାଟା ଏବେ ବାଟକୁ ଚାଲିଯାଇଥିଲା ଯେ ସେ ମନ୍ତ୍ରମୁଗ୍ଧ ପରି ଧର୍ମ ବାପ ମା' ଯାହା କହିଲେ ତା' ପାଟି ନଫିଟାଇ କରିଗଲେ ।

ବାହାଘର ହୋଇଗଲା । ଧର୍ମ ବାପ ମା' ବୋହୂକୁ ଆଣି ପାଖରେ ରଖିଲେ । ପରେ ନିଜ ଘର ପାଖରେ ତାଙ୍କୁ ଅଲଗା ଗୋଟିଏ ଘର କିଣାଇଦେଲେ । ଅଳ୍ପ ଦିନ ପରେ ଧର୍ମବାପା ହଠାତ୍ ସ୍ୱର୍ଗାରୋହଣ କଲେ ।

ସେ ଗୋଟିଏ ଛୁଟିରେ ଏ ଗାଁକୁ ଆସିଲେ ଅନ୍ୟ ଛୁଟିରେ ଆର ଗାଁକୁ ଯାଆନ୍ତି । ତାଙ୍କର ଦୁଇଜଣଯାକ ସ୍ତ୍ରୀ ପରସ୍ପର କଥା କିଛି ଜାଣନ୍ତି ନାହିଁ । ସେ ଦୁହିଁଙ୍କ ଆଗରେ ଏକପତ୍ନୀକ ଭଳି ବ୍ୟବହାର ଦେଖାନ୍ତି । ଏପରି କେତେକାଳ ଗଲା ପରେ ତାଙ୍କ ନିଜ ବାପ ମା' ପୁରୀ ତୀର୍ଥ କରିବାକୁ ଆସି ସାକ୍ଷୀଗୋପାଳରେ ପହଞ୍ଚିଲେ । ପଣ୍ଡାକୁ ନିଜ ଗାଁ ଓ ପରିଚୟ ଦେଉ ଦେଉ ନିଜ ପୁଅ ସେ ସ୍କୁଲରେ ପଢୁଥିଲା ବୋଲି ତା'ର ନାମ ପ୍ରକାଶ କଲେ । ସେ ପଣ୍ଡାଟି ଆଗେ ଅଗଣିଙ୍କ ସାଙ୍ଗେ ସେ ସ୍କୁଲରେ ପଢୁଥିଲା—ଅଗଣିଙ୍କ ସାଙ୍ଗ ଥିଲା । ସେ ଅଗଣି ନାମ ଶୁଣିବା ସଙ୍ଗେ ସଙ୍ଗେ ଅଗଣି ଧର୍ମ ବାପମା'ଙ୍କ କଥା କହି ତାଙ୍କୁ ସେ ଗାଁକୁ ନେଇ ଛାଡ଼ିଦେଇଆସିଲା । ଅଗଣିର ଧର୍ମ ମା ତାଙ୍କ ପରିଚୟ ପାଇ ଆଶ୍ଚର୍ଯ୍ୟ ହେଲେ; କିନ୍ତୁ ସେ ପାଳିତ ବାପ ମା', କକା ଖୁଡ଼ୀ କି ଦାଦା ଦେଢେଇ ହୋଇ ତା'ର ବାପ ମା' ନଥିବାରୁ ତାକୁ ପୁଅ ବୋଲି ସମ୍ବୋଧନ କରିପାରୁଆଆନ୍ତି ବୋଲି ଭାବି ସେ ସେମାନଙ୍କୁ ଆଦର ଅଭ୍ୟର୍ଥନା କରି ବୋହୂ କଥା କହିଲେ ।

କି ବୋହୂ, ସେମାନେ ବୁଝିପାରିଲେ ନାହିଁ । ସେମାନେ କହିଲେ ବୋହୂ, ନାତି ପ୍ରଭୃତି ତ ଆମ ପାଖରେ ଥିଲେ—ଏବେ ସେ କଲିକତା ନେଇଯାଇଥିଲା । ଏଠାରେ ଆଣି କେତେବେଳେ ଛାଡ଼ିଲା ? ସେମାନେ ବୋହୂକୁ ଦେଖିବାକୁ ଅଗଣି ଘରକୁ ଗଲେ । ବୋହୂ ଆସି ମୁଣ୍ଡିଆ ମାରିଲା । ଏତେ ଦିନ ଲୁଚିଥିବା କଥାସବୁ ଧରାପଡ଼ିଲା । ବୋହୂମାନେ ବି ସବୁ ରହସ୍ୟ ବୁଝିଲେ ।

ଏହା ବର୍ଣ୍ଣନା କରିସାରିବା ପରେ ମଉସା ପୁଣି ଠୋ ଠୋ ହସିଉଠି କହିଲେ, "ଦୁଇ ନାହାରେ ଗୋଡ଼ଦେଲେ ମଣିଷ କପରି ମଝିନଈରେ ବୁଡ଼ିମରେ ସେକଥା ବୁଝିଲ । ଏବେ ମୁଁ ଦୁଇଦୁଇଟା ବାଲ ମାଠିଆ ବେକରେ ବାନ୍ଧି ନଈ ପହଁରୁଛି । ଯିଏ ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ଚାହେଁ, ସେ କାହାକୁ ସନ୍ତୁଷ୍ଟ କରିନପାରି ଶେଷରେ ହରିକାଠରେ ପଡ଼େ ।"

ଏବେ ଦୁଇ ସଉତୁଣୀ ମୋ କାନରେ ପ୍ରତିଦିନ ତାଙ୍କ ବାଦିପାଲି ଶୁଣାଉଛନ୍ତି । ତାଙ୍କ ବାଦିପାଲି ଶୁଣି ଶୁଣି ମୋ କାନରେ ଅତଡ଼ା ପଡିଗଲାଣି । ତୁ ତ ଏବେ ମୋ ଘରେ ରହିବୁ । ତେଣୁ ସେ ଦୁଇଟି ହଂସ୍ରଜନ୍ତୁଙ୍କ ଯୁଦ୍ଧବେଳେ ତୁ ଡରିନେଯିବା ପାଇଁ ମୁଁ ସମସ୍ତ ବୃତ୍ତାନ୍ତ ତତେ କହିବାକୁ ବାଧହେଲି । ଏକା ଗ୍ରେଟକେ ଦୁଇଟା ଚଢ଼େଇ ପାଇଲା ପରି ତୁ ଏବେ ହଠାତ୍ ଦୁଇଟା ମାଉସୀ ପାଇବୁ । ତାଙ୍କ ବାକ୍ୟଯୁଦ୍ଧବେଳେ କାହାପଟକୁ ନଆଉଜି ସବୁ ନୀରବରେ ଏ କାନରେ ପୂରାଇ ସେ କାନରେ ବାହାର କରିପାରିଲେ ଦୁଇଜଣଯାକଙ୍କର ଆଦର ପାଇପାରିବୁ ।"

ଏହିପରି ମଉସାଙ୍କ ନିଜ କଥା ସବୁ ଶୁଣୁ ଶୁଣୁ ନବକୁମାରଙ୍କ ଆଖି ଦିଓଟି ନିଦ ମାଉସୀଙ୍କ କାଉଁରି ସ୍ପର୍ଶରେ ମୁଦିହୋଇଗଲା । କଲିକତା ଷ୍ଟେସନରେ ଗାଡ଼ି ରହିବା ପରେ ମଉସା ତାଙ୍କୁ ଉଠାଇଲେ । ମଉସା ପୁତୁରା ଷ୍ଟେସନ୍ ବାହାରକୁ ଆସି ମଉସାଙ୍କ ନିର୍ଦ୍ଦେଶରେ ଗୋଟିଏ ହାତଟଣା ରିକ୍ସାରେ ବସିଲେ । କଲିକତାର ହାତଟଣା ରିକ୍ସା ବଡ଼ ଅଦ୍ଭୁତ । ସାଧାରଣରେ ହାତଟଣା ରିକ୍ସାର ଦଣ୍ଡା ଦୁଇଟି ଅଣ୍ଟାର ଦୁଇପାଖରେ ରହେ ଓ ରିକ୍ସାବାଲା ହାତ ତଳକୁ କରି ଦଣ୍ଡା ଦୁଇଟି ଧରି ରିକ୍ସା ଚଳାଏ । କଲିକତାରେ କାନ୍ଧ ଉଚ୍ଚରେ ଥିବା ଦଣ୍ଡା ଦୁଇଟିକୁ ହାତ ଟେକି ରିକ୍ସାବାଲା କାନ ଉଚ୍ଚରେ ଧରେ ଓ ଦଉଡ଼ିଲା ପରି ଚାଲେ । ରିକ୍ସାର ସିଟ୍ ଗୁଡ଼ିକ ମଧ ଉଚ୍ଚ । ରିକ୍ସାରେ ବସିବା ଲୋକକୁ ପଛକୁ ଢ଼ୁଙ୍କିହେଲାପରି ବସିବାକୁ ହୁଏ । ରିକ୍ସାବାଲା ଟିକିଏ ଅସାବଧାନ ହେଲେ ଦଣ୍ଡା ଦୁଇଟା ଏକାବେଳକେ ଉପରକୁ ଉଠିଯାଇ ବସିବା ଲୋକ ପଛକୁ ଛିଟିକିଯାଇ ଗଡ଼ଗଡ଼ାଦେଇ ପଡ଼ିବାର ସମ୍ଭାବନା ଥାଏ । ପୁତୁରାଙ୍କୁ ସେଥିରେ ବସିବାକୁ ଡରମାଡ଼ିଲା, ସେ ମଉସାଙ୍କୁ ଧରିକରି ବସିଲେ ।

ମଉସାଙ୍କ ଘରକୁ ଯିବାକୁ ହେଲେ ବହୁ ସଙ୍କୀର୍ଣ୍ଣ ଗଳି ଦେଇ ଯିବାକୁ ହୁଏ । ସେ ସବୁ ଗଳିରେ ଅନ୍ୟ କୌଣସି ଯାନବାହନ ପ୍ରବେଶ କରିବା ସମ୍ଭବ ନୁହେଁ—ଏପରିକି ଶଗଡ଼ଟାଏ ମଧ ଯାଇପାରିବନାହିଁ । ତେଣୁ ମଉସା ବାଧହୋଇ ରିକ୍ସା ଠିକ୍ କରିଥିଲେ ।

ମଉସାଙ୍କ ରିକ୍ସା ତାଙ୍କ ଦୁଆରେ ରହି ସେଥିରୁ ସେ ଓହ୍ଲାଉ ଓହ୍ଲାଉ ଘରେ ଚହଳ ପଡ଼ିଗଲା । ଘର ଭିତରେ ଧୁଇଟି କୋଠରୀରୁ ଦୁଇଟି ନାରୀଙ୍କର କର୍କଶ ସ୍ୱର, ମୃଦୁ ଭର୍ତ୍ସନା ସହିତ ତାଙ୍କୁ ଅଭ୍ୟର୍ଥନା କରିନେବା ପାଇଁ ପ୍ରେରିତହେଲା ।

"ହଉ, ହଉ ସମ୍ଭାଳ, ସମ୍ଭାଳ, ମୋ ସଙ୍ଗେ ନୂଆ ପିଲାଟାଏ ଅଛି—ପରେ ମୋତେ ଆଦର ଅଭ୍ୟର୍ଥନା କରିବ ।" ବୋଲି ମଉସା ବଡ଼ପାଟିରେ କହିଲେ । ସେକଥା ଶୁଣିବା

ସଙ୍ଗେ ସଙ୍ଗେ ଧପ୍ ଧପ୍ କରି ବାହାରକୁ ମାତ୍ର ଆସୁଥିବା ଗୃହଦ୍ୱାସୀଙ୍କ ଗୋଡ଼ ଥପ୍ କରି ରହିଗଲା । ଦୁଇଟି ଲାଜ ବାହାରେଙ୍କୁ ବାହାରି ଆସି ଅଧକାମୁଡ଼ା ହୋଇ ପୁଣି ପାଟି ଭିତରକୁ ପଶିଗଲେ । ଦୁଇଟିଯାକ ମୁହଁକୁ ଦୁଇଟି ଲମ୍ବା ଓଢ଼ଣା ମୁଣ୍ଡର ତଳକୁ ଓହ୍ଲାଇଆସି ମୁହଁମାନଙ୍କର ଅର୍ଦ୍ଧାଧିକ ଅଂଶ ଘୋଡ଼ାଇପକାଇଲେ ।

ମଉସା ହସି ହସି କହିଲେ—ହଇଓ, ଲାଜ କରୁଛ କାହାକୁ ? ଲୁଚୁଛ କାହାକୁ ? ଏପରି ତୁମ ପୁତ୍ର, ପୁଅ ସଙ୍ଗେ ସମାନ !

ମାଉସୀ ଦୁଇଟିଙ୍କର ନିଜ ନିଜ ଭିତରେ ଓ ମଉସାଙ୍କ ସଙ୍ଗେ ସମ୍ପର୍କ ଯେତେ ତିକ୍ତ ହେଲେ ମଧ୍ୟ ସେ ଦୁଇଟିଯାକ ବଡ଼ ସ୍ନେହୀ, ସାଧାସିଧା ଭଦ୍ରମହିଳା ଓ ଅନ୍ୟମାନଙ୍କ ପ୍ରତି ସେମାନଙ୍କ ବ୍ୟବହାର ଅତି ମଧୁର । ଅଳ୍ପ ସମୟ ଭିତରେ ସେ ଦୁହିଁଙ୍କ ଭିତରେ ନବକୁମାରଙ୍କ ଯତ୍ନନେବା ଓ ତାଙ୍କୁ ଆଦର କରିବାରେ ପ୍ରତିଯୋଗିତା ଲାଗିଗଲା । ସେ ମାତୃସ୍ନେହ ଓ ଘରକଥା ପୂରା ଭୁଲିଯାଇଥିଲେ । ସେ ସ୍ନେହର ପୁନରାବୃତ୍ତି ହେବାରୁ ତାଙ୍କର ମା' ଭାଇ ପ୍ରଭୃତି ମନେପଡ଼ି ମନଟା ପାଣ୍ଡି ହେଲା ।

ମଉସା ସକାଳୁ ଉଠି ନିତ୍ୟକର୍ମ ସାରି କାମକୁ ଗଲେ । ସେ ନାମ ଲେଖେଇବା ପାଇଁ କଲେଜ ଖୋଜି ବୁଲନ୍ତି । ମଉସାଙ୍କର ଜଣେ ବଙ୍ଗାଳୀ ବନ୍ଧୁଙ୍କର ଗୋଟିଏ କଲେଜର ଅଧ୍ୟକ୍ଷଙ୍କ ସଙ୍ଗେ ଭଲ ଚିହ୍ନାପରିଚୟ ଥିଲା । ମଉସା କହିବାରୁ ସେ ଭଦ୍ରଲୋକ ନବକୁମାରଙ୍କୁ ନେଇ ସେ ଅଧ୍ୟକ୍ଷଙ୍କ ସଙ୍ଗେ ପରିଚୟ କରାଇଦେଲେ । ଅଧ୍ୟକ୍ଷ ଓ ଅନ୍ୟ କର୍ତ୍ତୃପକ୍ଷମାନେ ତାଙ୍କ ସାର୍ଟିଫିକେଟ ଦେଖି ଉତ୍ସାହ ପ୍ରକାଶ କରିବା ପରେ ତାଙ୍କୁ ତାଙ୍କର ଘର ଓ ଭାଷା ପ୍ରଭୃତି ବିଷୟ ପଚାରିଲେ । ପରଦିନ ଦୁଇଟା ପରେ ଆସି ଅର୍ଡ଼ର ନେଇ ନାମ ଲେଖାଇବାକୁ ନିର୍ଦ୍ଦେଶ ଦେଲେ ।

ନବକୁମାର ମଉସାଙ୍କଠାରୁ ନାମଲେଖା ଖର୍ଚ୍ଚ ଧାର ଆଣି ଠିକ୍ ଦୁଇଟାବେଳେ ସେ ଅଫିସରେ ପହଞ୍ଚିବାରୁ କିରାଣୀବାବୁଙ୍କଠାରୁ ତାଙ୍କୁ ଟାଇପ୍ କାଗଜଟିଏ ମିଳିଲା । ସେଥିରେ ଲେଖାହୋଇଥିଲା, ସେ କଲେଜରେ ନାମ ଲେଖାଇବା ପାଇଁ ଆଉ ସ୍ଥାନ ଖାଲି ନାହିଁ, ସବୁ ପୂରଣ ହୋଇଯାଇଛି । ନବକୁମାର କିରାଣୀଙ୍କ ହାବଭାବ ଦେଖି ଓ ଚିଠି ପଢ଼ି ବୁଝିପାରିଲେ ଯେ, ପୂର୍ବଦିନ ପର୍ଯ୍ୟନ୍ତ ସ୍ଥାନ ଅଭାବ ନଥିଲା ଓ ସେଦିନ ବି ସ୍ଥାନର ପ୍ରକୃତ ଅଭାବ ନାହିଁ; କିନ୍ତୁ ସେ ଓଡ଼ିଆ ବୋଲି କର୍ତ୍ତୃପକ୍ଷ ଜାଣିବା ପରେ ସ୍ଥାନାଭାବଟା ତାଙ୍କପାଇଁ ସୃଷ୍ଟି ହୋଇଥିଲା ।

ସେଥିରେ ନିରାଶ ନ ହୋଇ ଅନ୍ୟ କଲେଜ ସବୁରେ ଅନୁସନ୍ଧାନ ଚଳାଇଲେ । ଗୋଟିଏ ଖ୍ରୀଷ୍ଟିଆନ ମିଶନାରୀ କଲେଜରେ ଜଣେ ଓଡ଼ିଆ ଖ୍ରୀଷ୍ଟିଆନ ପ୍ରିନସିପାଲ୍ ଥିଲେ । ସେ ତାଙ୍କୁ ଦେଖାକରିବାକୁ ନିଜର ପରିଚୟ ଓ ଦେଖାକରିବାର କାରଣ ନେଇ ଚପରାଶୀ ହାତରେ ଚିଠାଖଣ୍ଡିଏ ପଠାଇଲେ । ସେ ସାର୍ଟିଫିକେଟ ସବୁ ମାଗିପଠାଇଲେ, ଓଡ଼ିଆ ବୋଲି ଶୁଣି ଆଗ୍ରହ ପ୍ରକାଶ କଲେ; କିନ୍ତୁ ସାର୍ଟିଫିକେଟରୁ ହିନ୍ଦୁ ବୋଲି ଦେଖି ସେ କଲେଜ

କେବଳ ଖ୍ରୀଷ୍ଟିଆନମାନଙ୍କ ପାଇଁ ବୋଲି ଜପଗ୍ରାମୀ ହାତରେ ଖବର ଦେଇ ବିନା ଦେଖା-ସାକ୍ଷାତରେ ତାଙ୍କୁ ଫେରାଇଦେଲେ ।

ଏହାଭିତରେ ମଉସାଙ୍କ ଜଣାଶୁଣା ଦୁଇ ଧନୀଲୋକ ଓଡ଼ିଆଙ୍କ ପିଲାଙ୍କୁ ସେ ଟିଉସନ କରିବାର ସୁବିଧା ପାଇଥିଲେ । ସେଥିରୁ ଯଥେଷ୍ଟ ପଇସା ମଧ୍ୟ ମିଳୁଥିଲା । ପିଲାଙ୍କୁ ପଢାଇ ସାରିବା ପରେ ପ୍ରଚୁର ସମୟ ମିଳୁଥିବାରୁ ସେ ଓଡ଼ିଆ କୁଲିମାନେ ରହୁଥିବା ସ୍ଥାନମାନଙ୍କୁ ଯାଇ ସେମାନଙ୍କ ଅବସ୍ଥା ବୁଝାବୁଝି କରୁଥିଲେ ।

ସରକାରଙ୍କ ଗୁଇନ୍ଦାବିଭାଗ ପରି ସରକାରଙ୍କ ସଙ୍ଗେ ଲଢ଼ୁଥିବା ସନ୍ତ୍ରାସବାଦୀମାନଙ୍କର ମଧ୍ୟ ଟାଣୁଆ ଗୁଇନ୍ଦା ବିଭାଗ ଥିଲା । ସେମାନେ ପୋଲିସର ଗତିବିଧି ଲକ୍ଷ୍ୟ କରୁଥିଲେ । ତାଙ୍କ କାର୍ଯ୍ୟ ପାଇଁ ନୂଆ ନୂଆ କର୍ମୀ ଯୋଗାଡ଼କରୁଥିଲେ । ସ୍କୁଲ କଲେଜ, ଶ୍ରମିକ ପଡ଼ା ସବୁଆଡ଼େ ତାଙ୍କ ଲୋକ ଗୋପନରେ ବୁଲୁଥିଲେ । ନବକୁମାର କୁଲିପଡ଼ାରେ ବୁଲିଲାବେଳେ ଜଣେ ଉଗ୍ରପନ୍ଥୀ ଯୁବକ ତାଙ୍କ ଅଜାଣାରେ ତାଙ୍କୁ ଲକ୍ଷ୍ୟ କରୁଥିଲେ । ସେ ଜଣେ ଜାତୀୟତାବାଦୀ ଯୁବକ ଓ ପାଟନା କ୍ୟାମ୍ପ ଜେଲରୁ ଫେରିଥିବାର ଶୁଣି ତାଙ୍କ ସଙ୍ଗେ ଆଳାପ ଆରମ୍ଭ କଲେ ।

ସେ ଯୁବକ ଭୀମ ସିଂହଙ୍କ ଦଳର ଲୋକ । ନବକୁମାରଙ୍କଠାରୁ ଭୀମସିଂହଙ୍କ ସଙ୍ଗେ ତାଙ୍କର ଘନିଷ୍ଠ ସମ୍ପର୍କ ବିଷୟ ଶୁଣି ସେ ତାଙ୍କୁ ନିଜ ଦଳରେ ମିଶାଇବା ପାଇଁ ସୁପାରିଶ କଲେ । ନବକୁମାର ମଧ୍ୟ ସେ ଦଳରେ ମିଶିବାକୁ ଆଗ୍ରହ ପ୍ରକାଶ କଲେ । ଜେଲରୁ ଫେରି ସେ ଦଳର କୌଣସି ଖବର ପାଇନଥିବାରୁ ସେ ସାମ୍ୟବାଦୀଙ୍କ ସଙ୍ଗେ ମିଶିଥିଲେ । ଏବେ ତା'ର ସନ୍ଧାନ ପାଇ ସେ ଭୀମ ସିଂହଙ୍କ ପାଖେ କରିଥିବା ତାଙ୍କ ପ୍ରତିଜ୍ଞା ରକ୍ଷା କରି ପାରିବେ ବୋଲି ଉତ୍ଫୁଲ୍ଲିତ ହେଲେ ।

ସେ ଯୁବକ କଥାପ୍ରସଙ୍ଗରେ ସେ ଦଳର କାଏଦା କଟକଣା ଓ ଗୋପନୀୟତା ସମ୍ବନ୍ଧରେ ବହୁତ କଥା ବୁଝାଇ କହିଲେ ଓ ଏଣିକି ତାଙ୍କ ସଙ୍ଗେ ଆଉ ଦେଖାହେବନାହିଁ ବୋଲି ଜଣାଇଦେଲେ । ସେ ସଙ୍କେତ ପାଇଲେ ସେହି ଅନୁସାରେ କାମ କରିପାରିବେ ଓ କାହାକୁ କୌଣସି ପ୍ରଶ୍ନ ପଚାରିବେ ନାହିଁ କି କାହା ସଙ୍ଗେ ଘନିଷ୍ଠତା ଥିବା ପ୍ରକାଶ କରିବେ ନାହିଁ ବୋଲି ସାବଧାନ କରାଇଦେଲେ । ନବକୁମାରଙ୍କୁ ସେ ନିଜର ପରିଚୟ ଦେଇନଥିଲେ କି ନାମ ପର୍ଯ୍ୟନ୍ତ କହିନଥିଲେ ।

ଦିନେକି ନବକୁମାର ଏକୁଟିଆ ବୁଲୁଥିଲାବେଳେ କେହି ଜଣେ ଅପରିଚିତ ଯୁବକ ଲୁଚିକରି ତାଙ୍କ ହାତରେ ପୁଳାଏ କାଗଜ ଗୁଞ୍ଜିଦେଇ ପଳାଇଯାଆନ୍ତି । ସେ କାଗଜ ସଙ୍ଗେ ଖଣ୍ଡିଏ ଟାଇପ ହୋଇଥିବା ଚିଠିରେ ଲେଖାଥାଏ "ଏସବୁ ଗୋପନରେ ପଢ଼ିସାରି ପୋଡ଼ି ନଷ୍ଟ କରିଦେବ । ଅନ୍ୟ କାହାକୁ ଦେଖାଇବ ନାହିଁ କି ଏ ସମ୍ବନ୍ଧରେ ଆଲୋଚନା କରିବ ନାହିଁ।" ସେ କାଗଜରେ ବିପ୍ଳବ ଓ ବିପ୍ଳବୀମାନଙ୍କର କାର୍ଯ୍ୟ ଓ ସାହସ ସମ୍ବନ୍ଧରେ ବହୁକଥା ଲେଖାଥାଏ । ଇଂରେଜଙ୍କ ବିରୁଦ୍ଧରେ ରକ୍ତ ଗରମ ହୋଇଉଠିଲାପରି ଘଟଣାମାନ ମଧ୍ୟ ବର୍ଣ୍ଣିତ ହୋଇଥାଏ ।

ଜେଲ ଭିତରେ ସୁଭାଷ ବୋଷ ପ୍ରଭୃତିଙ୍କ ଉପରେ କି କି ପ୍ରକାର ଅତ୍ୟାଚାର କରାଯାଉଛି, ଲାଲ ଲାଜପତରାଏଙ୍କ ଉପରେ କିପରି ଲାଠି ମାଡ଼ହୋଇଥିଲା, ଦେଶର ନେତାମାନଙ୍କ ପ୍ରତି କି କି ନିର୍ମମ ଅତ୍ୟାଚାର ହେଉଛି, ସେ ସବୁର ବିଶଦ ବିବରଣୀ ଥାଏ। କଂଗ୍ରେସର ମାଳା ଖୋସାମତିଆ ନୀତିରେ ଭାରତକୁ ସ୍ୱାଧୀନ କରିବା ସମ୍ଭବ ନୁହେଁ। ରକ୍ତ ନଦେଇ କୌଣସି ଜାତି ମୁକ୍ତିଲାଭ କରିନାହିଁ। ତେଣୁ ଅତ୍ୟାଚାରୀ ପୋଲିସ ବା ଗୋରା ଅଫିସର୍‌ମାନଙ୍କୁ ଗୁଳି ବା ବୋମାରେ ମାରି ଉଡ଼ାଇ ଦେବା ପାଇଁ ଜୀବନକୁ ପଣ ରଖିବାକୁ, ନିଜ ରକ୍ତରେ ଲେଖି ଶପଥ ନେବାକୁ ହେବ ତା'ର ନିର୍ଦ୍ଦେଶ ଥାଏ ଓ ବିପ୍ଲବୀମାନେ କି କି କାର୍ଯ୍ୟ କରୁଛନ୍ତି ସେ ସମ୍ବାଦ ମଧ୍ୟ ଲେଖାଯାଇଥାଏ।

ତାହା ମେଦିନାପୁର ପ୍ରଭୃତିର ସନ୍ତ୍ରାସବାଦୀ କାର୍ଯ୍ୟ ବର୍ଣ୍ଣନା କରି, ଢାକାର ଅତ୍ୟାଚାରୀ ପୋଲିସ ଆଇ.ଜି. ଓ ତାଙ୍କ ଲୋକଙ୍କୁ କିପରି ହତ୍ୟା କରାଯାଇଥିଲା ତା'ର ବିବରଣୀ ସହିତ କଲିକତାର ପୋଲିସ କମିଶନର ନିରପିପାସୁ ଚାର୍ଲସ ଟେଗାର୍ଟ ଓ ହଡ଼ସନ୍‌କୁ ମାରିବାକୁ କି ଉଦ୍ୟମ କରି ସରକାରଙ୍କୁ ଭୟଭୀତ କରାଯାଇଥିଲା ତା'ର ଗୁପ୍ତ ରହସ୍ୟ ଲେଖାଯାଇଥାଏ।

ତିନିଜଣ ଶିକ୍ଷିତ ବିପ୍ଳବୀ ଯୁବକ ବିନୟକୃଷ୍ଣ ବୋଷ, ସୁଧୀର ଗୁପ୍ତ (ବାଦଲ) ଓ ଦୀନେଶଚନ୍ଦ୍ର ଗୁପ୍ତ ବ୍ରିଟିଶ ପୋଷାକ ପିନ୍ଧି କଲିକତାର ସରକାରୀ ଭବନ 'ରାଇଟର୍‌ସ୍ ବିଲ୍‌ଡିଙ୍ଗ୍ କୋଠା'ରେ ଦିନ ଦ୍ୱିପ୍ରହରେ ପଶି ଜେଲ ବିଭାଗର ସର୍ବୋଚ୍ଚ କର୍ତ୍ତା ଲେଫ୍‌ଟେନାଣ୍ଟ କର୍ଣ୍ଣେଲ ସିମ୍ପସନ୍‌ଙ୍କୁ ତାଙ୍କ ଅଫିସ ଚଉକିରେ ବସିଥିବାବେଳେ ଗୁଳି କଲେ। ସେମାନେ ସରକାରୀ ଭବନର ପଶ୍ଚିମ ପଟ ଦ୍ୱାରରେ ପ୍ରଥମ ମହଲରେ ପ୍ରବେଶ କରିଥିଲେ। ସିମ୍ପସନ ଗୁଳିମାଡ଼ରେ ଟଳିପଡ଼ିବା ପରେ ତାଙ୍କ କୋଠରୀର ବାରଣ୍ଡାକୁ ଫେରିଆସି ଯେଉଁ ଗୋରା ଅଫିସରମାନେ ଗୁଳି ଶବ୍ଦ ଶୁଣି ବାରଣ୍ଡାକୁ ବାହାରିଆସିଥିଲେ ତାଙ୍କୁ ଗୋଟି ଗୋଟି କରି ଗୁଳି କଲେ। କୃଷି ଓ ଶିଳ୍ପ ସଚିବ ଟାଉନ୍ ସେଣ୍ଡ ଆଘାତପ୍ରାପ୍ତ ହେଲେ। ଜଣେ ପୁରୁଖା ସଚିବ ମିଷ୍ଟର ମାର୍‌ଙ୍କୁ ତାଙ୍କ କୋଠରୀରେ ପଶି ତାଙ୍କ ଉପରକୁ ଦୁଇଟି ଗୁଳି ଫୁଟାଇଲେ। ଶେଷରେ ଆଇନ ସଚିବ ନେଲ୍‌ସନ୍‌ଙ୍କ କୋଠରୀରେ ପଶି ତାଙ୍କୁ ଆଘାତ କଲାବେଳେ ବିପଦ ଘଣ୍ଟି ବାଜିଉଠି, ଗୋରା ପୋଲିସ ଫଉଜ ସେମାନଙ୍କ ଆଡ଼କୁ ମାଡ଼ିଆସି ସେମାନଙ୍କୁ ଘେରାଉକଲେ।

ସେମାନେ ବ୍ରିଟିସ ପୋଲିସଙ୍କ କଡ଼ା ପହରା ଭିତରେ ସେମାନଙ୍କ ଆଖିରେ ଧୂଳିଦେଇ ଏତେଗୁଡ଼ିଏ କାର୍ଯ୍ୟ ନିର୍ଭୀକ ଭାବରେ କରିପାରିଥିଲେ। ନିଜେ ଧରା ପଡ଼ିଲେ ସେମାନେ ଆତ୍ମହତ୍ୟା କରିବା ପାଇଁ ପ୍ରସ୍ତୁତ ହୋଇ ଯାଇଥିଲେ। ବିନୟ ନିଜ ବନ୍ଧୁକରେ ନିଜ ମୁଣ୍ଡକୁ ଗୁଳିକଲେ ଓ ପାଞ୍ଚଦିନ ପରେ ପ୍ରାଣତ୍ୟାଗ କରିଥିଲେ। ସୁଧୀର ପୋଲିସ ଘେରରେ ପଡ଼ିବା ସଙ୍ଗେ ସଙ୍ଗେ ପୋଟାସିୟମ ସାଇନାଇଡ୍ ନାମକ ଉତ୍କଟ ବିଷ ପକେଟରୁ ବାହାର କରି ଖାଇଦେଇ ସେଇଠି ଟଳିପଡ଼ିଲେ। ଦୀନେଶ ନିଜକୁ ଆଘାତ କରି ସେଇଠାରେ ମେଞ୍ଚାହୋଇ

ପଡ଼ିଗଲେ; କିନ୍ତୁ ଗୁଳି ଫୁଟାଇଲା ବେଳେ ଗୋରା ଫୁଲିସ ତାଙ୍କ ହାତକୁ ଆଘାତ କରିବାରୁ ଗୁଳି ଠିକଣା ସ୍ଥାନରେ ବାଜିପାରିନଥିଲା ।

ଗୋରାମାନେ ଦୀନେଶଙ୍କୁ ନେଇ କଲିକତାର ମେଡ଼ିକାଲ କଲେଜ ଡାକ୍ତର୍‌ଖାନାରେ ଗୁଳି ବାହାରକରାଇ ଆରୋଗ୍ୟକରି ଷୋହଳ ଦିନ ପରେ ୧୯୩୦ ଡିସେମ୍ବର ୨୪ ତାରିଖ ଦିନ ଆଲିପୁର ଜେଲକୁ ନେଲେ । ସେଠାରେ ବିପ୍ଳବୀ ଦଳ ବିଷୟରେ ତାଙ୍କଠାରୁ କଥା ବାହାର କରିବାକୁ ତାଙ୍କ ପ୍ରତି ଅନେକ ଅତ୍ୟାଚାର କରାଗଲା; କିନ୍ତୁ ସେ କିଛି ପ୍ରକାଶ କଲେନାହିଁ । ସେଇ ଜେଲରେ ଗୋରା ମାଜିଷ୍ଟ୍ରେଟଙ୍କ ଦ୍ୱାରା ବିଚାର ହୋଇ ତାଙ୍କୁ ପ୍ରାଣଦଣ୍ଡ ପାଇବାର ଆଦେଶ ହେଲା ।

ସେ ସଫଳତା ସହିତ ଅତ୍ୟାଚାରୀ ସିମ୍ପସନଙ୍କ ପ୍ରାଣ ନେଇଥିବାରୁ ତାଙ୍କର ନିଜ ଫାଶୀର ଆଦେଶରେ ତାଙ୍କ ମନରେ କୌଣସି ଦୁଃଖ ବା ଗ୍ଲାନି ଜାତହୋଇନଥିଲା । ସେ ଏତେ ଖୁସି ଓ ପ୍ରଫୁଲ୍ଲ ଥିଲେ ଯେ ଫାଶୀପାଇବାର ପୂର୍ବରୁ ଜେଲ ଜୀବନର କେତେଟା ମାସ ଭିତରେ ତାଙ୍କର ଓଜନ ସତର ପାଉଣ୍ଡ ବଢ଼ିଯାଇଥିଲା ।

ସେ ବାଇଶ ବର୍ଷର ଯୁବକ; କିନ୍ତୁ ତାଙ୍କ ଜ୍ଞାନର ପରିସର ଏତେ ଅଧିକ ଥିଲା ଯେ ସେ ଜେଲରୁ ତାଙ୍କ ଭାଉଜଙ୍କ ପାଖକୁ ଚିଠି ଲେଖିଥିଲେ "ଆତ୍ମା ଅମର, ସେ ଦ୍ୱୀପାନ୍ତର ଆଦେଶ ପାଇ କଳାପାଣିରେ ସ୍ଥାୟୀ ଜୀବନ କଟାଇବା ଅପେକ୍ଷା ମୃତ୍ୟୁକୁ ବେଶୀ ପସନ୍ଦ କରନ୍ତି । ସେ ଫାଶୀ ପାଇବାପରେ ପୁଣି ଜନ୍ମହୋଇ ଦେଶମାତୃକାର ସେବା କରିବାର ସୁବର୍ଣ୍ଣ ସୁଯୋଗ ଆଉଥରେ ପାଇପାରିନ୍ତି, ସେଥିପାଇଁ ଫାଶୀ ଆଦେଶରେ ସେ ଖୁସି । ତେଣୁ ତାଙ୍କପାଇଁ ଅଯଥା ଲୁହ ନଗଡ଼ାଇ ଫାଶୀଦିନ ତାଙ୍କ ଭାଇବନ୍ଧୁମାନେ ତାଙ୍କର ଶୀଘ୍ର ପୁନର୍ଜନ୍ମ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବା ଉଚିତ୍ । ଦେଶପ୍ରେମୀ ବିପ୍ଳବୀମାନେ ନିଜର ମୃତ୍ୟୁକୁ ହେୟ ମନେକରନ୍ତି । ଫାଶୀ ପାଇବା ପୂର୍ବରୁ ଦୀନେଶ ହସି ହସି ଫାଶୀ ଦଉଡ଼ିକୁ ଫୁଲମାଳା ପରି ବେକରେ ଓହଳାଇ ଦେଇ କହିଲେ, "ଆଜି ମୋ ଜୀବନ ସାର୍ଥକ ହେଲା । ଜଣେ ପରାଧୀନ ଜାତିର ଯୋଦ୍ଧା ପାଇଁ ପ୍ରତିହିଂସାପରାୟଣ ଶାସକ ହାତରୁ ମିଳୁଥିବା ପ୍ରାଣଦଣ୍ଡ ସ୍ୱାଗତଯୋଗ୍ୟ ।" ଏହା କହି 'ବନ୍ଦେ ମାତରଂ' ଧ୍ୱନି ଦେଇ ସେ ଫାଶୀ କାଠରେ ଝୁଲିପଡ଼ିଲେ ।

ତାଙ୍କର ବେକ ଭାଙ୍ଗି ଶରୀର ତଳକୁ ଓହଳି ପଡ଼ିଲାବେଳେ ଉପସ୍ଥିତ ଗୋରା ଅଫିସରମାନଙ୍କର ମସ୍ତକ ମଧ୍ୟ ତଳକୁ ହୋଇଗଲା ଓ ଆଖିରୁ ଲୋତକ ବିନ୍ଦୁ ତଳକୁ ଝରିପଡ଼ିଲା । ଏସବୁ ବୀରତ୍ୱ କାହାଣୀ ପଢ଼ି ପଢ଼ି ନବକୁମାର ହସି ହସି ଦେଶ ପାଇଁ ପ୍ରାଣ-ଦେବାକୁ ନିଜକୁ ପ୍ରସ୍ତୁତ କଲେ ।

ବିପ୍ଳବୀଦଳ ନବକୁମାରଙ୍କୁ ତାଙ୍କ ଅଜାଣାରେ ନାନାପ୍ରକାର ପରୀକ୍ଷା କରୁଥିଲେ । ସେ ସନ୍ତ୍ରାସବାଦୀ କାର୍ଯ୍ୟ ପାଇଁ ଉପଯୁକ୍ତ ବୋଲି ବିବେଚିତ ହେବା ପରେ ଜଣେ ବିପ୍ଳବୀ ତାଙ୍କ ସହିତ ସାକ୍ଷାତ କରି ତାଙ୍କ ସଙ୍ଗେ ଯିବାପାଇଁ ନିର୍ଦ୍ଦେଶ ଦେଲେ । ଗୋଟିଏ ଗାଡ଼ିରେ

ସେ ବସିବାପରେ ତାଙ୍କ ଆଖିରେ ପଟି ବାନ୍ଧିଦିଆଗଲା । ଗାଡ଼ି ବହୁତଦୂର ବୁଲିବା ପରେ ସହର ତଳର ଗୋଟିଏ ନିର୍ଜନ ଭଙ୍ଗା କୋଠାଘରକୁ ନେଇ ତାଙ୍କ ଆଖି ଖୋଲିଦିଆଗଲା । ସେଠାରେ ନିଜ ରକ୍ତରେ ସେ ଶପଥ ସ୍ୱାକ୍ଷର କଲେ । ଯେଉଁ ଯୁବକ ତାଙ୍କୁ ସାଙ୍ଗରେ ନେଇଥିଲେ ଆଖି ଖୋଲିଲାବେଳକୁ ସେଠାରେ ସେ ନଥିଲେ, ଆଉ ଜଣେ ମୁଖାପିନ୍ଧା ଯୁବକ ତାଙ୍କୁ ଶପଥ ପାଠ କରାଇଲେ ।

ସେ ଘରେ କୌଣସି ଆସବାବପତ୍ର ନଥିଲା । ସେ ଦଳର କୌଣସି ଅଫିସ ନ ଥାଏ କି ଏକାବେଳକେ ଦୁଇ ତିନିଜଣ ଏକାଠି ହୁଅନ୍ତିନାହିଁ । ମୁଖାପିନ୍ଧା ଯୁବକ ତାଙ୍କୁ ଗୋଟିଏ ସୁଡ଼ଙ୍ଗବାଟେ ନେଇ ଭୂଇଁତଳେ ଥିବା ଗୋଟିଏ କୋଠରୀରେ ବୋମା ପ୍ରଭୃତି ତିଆରି ହେବାପାଇଁ ଥିବା ଗଚ୍ଛିତ ସରଞ୍ଜାମ ଦେଖାଇଲେ । ପାଖ କୋଠରୀମାନଙ୍କରେ ଥିବା ନାନା ପ୍ରକାର ପୋଷାକ, ଗୁଳି, ବୋମା, ବନ୍ଧୁକ ପ୍ରଭୃତି ଅସ୍ତ୍ରଶସ୍ତ୍ର ସେ ଦେଖିବାକୁ ପାଇଲେ । ସେ ସବୁ ଦେଖିବାପରେ ପୁଣି ତାଙ୍କ ଆଖିରେ ପଟି ବନ୍ଧାଗଲା ଓ ପରଦିନ ନିର୍ଦ୍ଦିଷ୍ଟ ସମୟରେ କଲେଜ ପୋଖରୀ ନିକଟକୁ ଯାଇ ସେଠାରେ ମଲ୍ଲ କ୍ରୋଟନ୍ ଗଛ ନିକଟରେ କଳାବୋଳା କାଠି ଖଣ୍ଡିଏ ଦେଖିଲେ, ତାକୁ ଗୋଟାଇ ସେଇ ସୂତ୍ରରେ ନିର୍ଦ୍ଦେଶ ମିଳିବ ବୋଲି କହି ତାଙ୍କୁ ଯଥାସ୍ଥାନରେ ଛାଡ଼ିଦିଆଗଲା ।

ପରଦିନ ଠିକ୍ ସମୟରେ ସେ କ୍ରୋଟନ୍ ଗଛ ନିକଟକୁ ଯାଇ କଳାକାଠି ଖଣ୍ଡି ଦେଖି ଗୋଟାଇ ପକାଇଲେ । ତା' ଦେହରେ ଛୋଟିଆ ଧଳା କାଗଜଟିଏ ଲଗିଥିଲା । ସେଥିରେ ସେଦିନପରେ ଆଉ ଗୋଟିଏ ଠିକଣା ଓ ଟିଣ ଡବାର ନିର୍ଦ୍ଦେଶ ଥିଲା । ସେ ସେଠାକୁ ଯିବାରେ ଟିଣ ଡବାରୁ ଖଣ୍ଡିଏ କାଗଜ ପାଇଲେ । ସେ କାଗଜର ନିର୍ଦ୍ଦେଶ ଅନୁସାରେ ଗୋଟିଏ ଗଳିର ଲ୍ୟାମ୍ପ ବତୀ ଖୁଣ୍ଟ ପାଖକୁ ଯାଇ ଠିଆହେଲେ । ଟିକିଏ ଦୂରରେ ଆଗରୁ ଜଣେ ଅପରିଚିତ ଯୁବକ ଠିଆହୋଇଥିଲେ ଓ ସେ କାଗଜରେ ଲେଖାହୋଇଥିବା ସଙ୍କେତ ଅନୁସାରେ ସେ ଦୁଇଟି ଆଙ୍ଗୁଠିରେ କପାଳ ଛୁଇଁଲେ ଓ ତା'ର ଉତ୍ତରରେ ନବକୁମାର ନିଜର ଓଠ ଛୁଇଁଲେ । ତା'ପରେ ଦୁହେଁ ଏକସଙ୍ଗେ ଯାଇ ଅଳ୍ପ ଦୂରରେ ଠିଆହୋଇଥିବା ଘୋଡ଼ାଗାଡ଼ିରେ ବସିଲେ । ଅପରିଚିତ ଯୁବକ ନବକୁମାରଙ୍କ ଆଖିରେ ପଟିଦେଇ ମୁହଁ ତଳକୁ କରି ଶୋଇରହିବାକୁ କହି ନିଜେ ଯାଇ ଗାଡ଼ି ଚଳାଇଲେ । ସେ ପୂର୍ବଦିନ ଦେଖିଥିବା ସ୍ଥାନରେ ପହଞ୍ଚିବାପରେ ତାଙ୍କ ଆଖିରୁ ପଟି ଫିଟିଲା । ସେଠାରେ ମୁଖା ପିନ୍ଧି ସେ ବୋମା ତିଆରି କୋଠରୀକୁ ଗଲେ । ସେ କୋଠରୀରେ ଆଉ ଦୁଇ ତିନିଜଣ ମୁଖାପିନ୍ଧା ଲୋକ କାମ କରୁଥିଲେ—ସେମାନଙ୍କ ସଙ୍ଗେ କାମ କଲେ ।

ଏପରି ନିର୍ଦ୍ଦେଶ ପାଇ ପ୍ରତିଦିନ ସେଠାକୁ ଯାଆନ୍ତି ଓ ସେଠାରେ ତାଙ୍କୁ ବୋମା ତିଆରି, ଆତ୍ମରକ୍ଷା କୌଶଳ ଓ ଅନ୍ୟାନ୍ୟ ଆବଶ୍ୟକୀୟ କାର୍ଯ୍ୟ ଶିକ୍ଷା ଦିଆଯାଏ । ଏପରି କେତେଦିନ ଯିବାପରେ ତାଙ୍କୁ ସେଠାକୁ ଯିବାକୁ ଆଉ ନିର୍ଦ୍ଦେଶ ମିଳିଲାନାହିଁ । ନିର୍ଦ୍ଦେଶ ନମିଳିବାର ପରଦିନ ଗୋଟିଏ ଶୃଙ୍ଖଳାର ଘଟଣା ଖବର କାଗଜରେ ବାହାରିଲା ।

"ଗଭର୍ଣ୍ଣରଙ୍କ କୋଠି ପାଖରେ ଜଣେ ପୋଲିସ ସାହେବ ଘୋଡ଼ାରେ ଆସୁଥିଲାବେଳେ ତାଙ୍କୁ କିଏ ଗୁଳି କଲା । ସେ ତଳେ ପଡ଼ିଯିବା ସଙ୍ଗେ ସଙ୍ଗେ ଟିକିଏ ଦୂରରେ ଗୋଟିଏ ବୋମା ଫୁଟିଲା । ପୋଲିସ ସାହେବଙ୍କ ରକ୍ଷୀ ଓ ଅନ୍ୟ ଲୋକେ ଏପଟ ସେପଟ ଦଉଡ଼ାଦଉଡ଼ି କରି ଘଟଣା କ'ଣ ବୁଝୁଁ ବୁଝୁଁ ଆତତାୟୀମାନେ ସେଠାରୁ କେଉଁଆଡ଼େ ଉଭେଇଯାଇଥିଲେ । ସେ ଘଟଣା କିଏ ଘଟାଇଲା, କିପରି ଘଟିଲା, କିଛି ଜଣା ପଡ଼ିଲା ନାହିଁ । ଅନୁସନ୍ଧାନ ଚାଲି କେତେକ ଲୋକଙ୍କୁ ସନ୍ଦେହରେ ଧରି ଉଠେଇ ନିଆଯାଉଛି ।"

ଦିନେ ଦୁଇଦିନ ପରେ ସେ କୌଣସି ନିର୍ଦ୍ଦେଶ ପାଇବେ ବୋଲି କଲେଜ ପୋଖରୀ ନିକଟରେ ବୁଲୁଛନ୍ତି, ଜଣେ ଯୁବକ ଗୃହଆଡ଼କୁ ଚାହିଁ ଚାହିଁ ଆସି ତାଙ୍କ କାନ୍ଧରେ ହାତମାରି ସେ ସ୍ଥାନକୁ ପୋଲିସ ଜଗିଛନ୍ତି ଓ ସେଠାକୁ ଆଉ ନ ଆସିବାକୁ ତୁନି ତୁନି କହି କହିଲାବେଳେ ହଠାତ୍ ଗୋଟିଏ ଗଛ ଉପରୁ ଜଣେ ହୁଇସିଲ ବଜାଇଦେଲା । ସଙ୍ଗେ ସଙ୍ଗେ ଦୁଇଟା ବନ୍ଧୁକଧାରୀ ପୋଲିସ ଆସି ସେ ଦୁଇଜଣଙ୍କୁ ଗିରଫ କରି ଲାଲବଜାର ଥାନାକୁ ନେଇଗଲେ । ପୋଲିସଙ୍କ ସଙ୍ଗେ ଥାନାକୁ ଗଲାବେଳେ କିପରି ପୋଲିସଙ୍କଠାରୁ ଖସିବେ ସେକଥା ସେ ମନେ ମନେ ଚିନ୍ତା କଲେ । ଗୋଟିଏ ଘଟଣା ମନେପଡ଼ିଲା—ନିଜକୁ ଓଡ଼ିଆ ବୋଲି ପ୍ରମାଣ କରାଇ ପାରିଲେ ସେ ପୋଲିସ ମୁଠାରୁ ଖସିଯାଇ ପାରନ୍ତି ବୋଲି ତାଙ୍କର ଆଶା ହେଲା । ସେ ଘଟଣା ମେଦିନାପୁରର ଜିଲ୍ଲାମାଜିଷ୍ଟ୍ରେଟ ଜଜ୍‌ସାହେବଙ୍କ ହତ୍ୟା ଘଟଣା ସହିତ ସମ୍ପୃକ୍ତ । ଶୋଭାଦତ୍ତ ପ୍ରଭୃତି ଜଜ୍‌ସାହେବଙ୍କୁ ମେଦିନାପୁର ଫୁଟବଲ୍ ପଡ଼ିଆରେ ପ୍ରାଇଜ ବାଣ୍ଟିଲାବେଳେ ହତ୍ୟା କଲେ ।

ସେ ଘଟଣା ପରେ ପୋଲିସ ଖଡ଼ଗ୍‌ପୁର ଓ କଲିକତା ଭିତରେ ସମସ୍ତ ଗାଡ଼ି ଅଟକାଇ ଯୁବକମାନଙ୍କୁ ଧରି ଓଗଳା କଲେ । ସେତେବେଳେ ଜଣେ ଓଡ଼ିଆ ଛାତ୍ର କଲିକତା ବାଟେ କାଶୀ ଯାଉଥିଲେ । ତାଙ୍କ ନାମ ଓ ଘର ପଚାରିବାରୁ ସେ ଜଣେ ଓଡ଼ିଆ ଓ ତାଙ୍କ ନାମ ଶଶିଭୂଷଣ ମିଶ୍ର ବୋଲି କହିଲେ । ପୋଲିସ ଅଫିସର ତାହା ବିଶ୍ୱାସ ନ କରି କହିଲେ, "ଶାମା ଦାମା ରାମା ଓଡ଼ିଆ ହୋତା ହେ, ଶଶିଭୂଷଣ ମିଶ୍ର କ୍ୟା ଓଡ଼ିଆ ହୋତା ହେ ? ଓ ଆଦ୍‌ମି ଝୁଟା ବୋଲତା ହୈ । ଇସିକୋ ପକଡ଼ୋ ।" ତାପରେ ସେ ଯୁବକ ଧରାହୋଇଗଲେ । ତାଙ୍କୁ ବହୁତ ମାଡ଼ ହେଲା; କିନ୍ତୁ ସେ କୌଣସିମତେ ଶେଷରେ ନିଜକୁ ଓଡ଼ିଆ ବୋଲି ପ୍ରମାଣ କରାଇ ପୋଲିସଙ୍କଠାରୁ ମୁକ୍ତି ପାଇଥିଲେ । ଏପରି ଭାବୁ ଭାବୁ ନବକୁମାର ଥାନାରେ ପହଞ୍ଚିଲେ ।

ତାଙ୍କୁ ଅଲଗାକରି ଗୋଟିଏ କୋଠରୀରେ ରଖି ପୋଲିସବାବୁ ବହୁତ ପଚରା ପଚରି କଲେ । ଯୁବକଟି କିଏ ଓ ତାଙ୍କ ସଙ୍ଗେ ନବକୁମାରଙ୍କର କ'ଣ ସମ୍ପର୍କ ବୋଲି ପଚାରିଲେ । ନବକୁମାର ତ ପ୍ରକୃତରେ ସେ ଯୁବକଙ୍କୁ ଚିହ୍ନି ନଥିଲେ କି ତା' ସମ୍ବନ୍ଧରେ କିଛି ଜାଣିନଥିଲେ—କ'ଣ ବା କହିବେ, ନୀରବ ରହିଲେ ।

ସେ ନକାହବାରୁ ଅଫିସର ତାଙ୍କୁ ଧମକା ଧମକି ଓ ମାରଧର କଲେ । ଅନ୍ୟ ବିପ୍ଳବୀମାନଙ୍କ ନାମ କହି ସେମାନଙ୍କ ବିଷୟ ପଚାରିଲେ । ସେ କାହା ନାଁ ଜାଣନ୍ତି ଯେ କହିବେ ? ସେଥିରେ ମଧ୍ୟ ଚୁପ ରହିଲେ । ଶେଷରେ ସେ କିଏ, କାହିଁକି କଲିକତା ଆସିଛନ୍ତି, କେଉଁଠି ରହୁଛନ୍ତି ବୋଲି ପଚାରିଲେ । ପୋଲିସ ବଙ୍ଗଳା ଓ ଇଂରେଜୀରେ ଯାହା ପଚାରୁ-ଥାଆନ୍ତି, ସେ କେବଳ କାନ୍ଦ କାନ୍ଦ ଓଡ଼ିଆରେ ଉତ୍ତର ଦେଉଥାନ୍ତି । ପୋଲିସ ଔଷଧମିଶା ଗୁହାଯାଚିବାରୁ ସେ ଗୁହା ଖାଆନ୍ତିନାହିଁ, ଚା' ଖାଇଲେ ମାଉସୀ ବକିବ ବୋଲି କହି ଚା' ପିଇଲେ ନାହିଁ । ଖାଲି ମଫସଲ ଓଡ଼ିଆ ପିଲାର ଅଭିନୟ କରି ଭେ ଭେ କାନ୍ଦିଲେ—"ମୁଁ ମଉସାଙ୍କ ସଙ୍ଗେ ପାଠ ପଢ଼ିବାକୁ ଆସିଛି ଓ ମଉସାଙ୍କ ପାଖରେ ଅଛି । ମୁଁ କିଛି ଜାଣିନାହିଁ, ମୋତେ ଛାଡ଼ିଦିଅ ।"—ବୋଲି କାକୁତି ମିନତି ହୋଇ କହିଲେ ।

ତାଙ୍କ ଅଭିନୟରେ ଭୁଲିଯାଇ ପୋଲିସ ସାହେବ କେଉଁଠୁ ଜଙ୍ଗଲି ଓଡ଼ିଆଟାଏ ଧରିଆଣିଛ କହି ଧରିଆଣିଥିବା ପୋଲିସଙ୍କ ଉପରେ ରାଗିକରି ପାଟିଟାଏ କରି ସେଠାରୁ ଉଠି ଚାଲିଗଲେ ।

ପୋଲିସମାନେ ତାଙ୍କୁ କିଛି ସମୟ ହାଜତରେ ରଖି ଖୋଟକେଲ ମାଲିକଙ୍କୁ ଫୋନ କରି ତାଙ୍କ ମଉସାଙ୍କ ବିଷୟ ଅନୁସନ୍ଧାନ କଲେ । ମଉସା ଜଣେ ସାଦାସିଧା ଓଡ଼ିଆ ଲୋକ ଓ ନବକୁମାରଙ୍କୁ ସେ ପାଠପଢ଼ିବାକୁ କଲିକତା ଆଣିଥିବା କଥା ସତ ବୋଲି ଖବର ପାଇ ତାଙ୍କ ଗାଁ ନାଁ ସବୁ ଟିପିରଖି ଘରକୁ ଫେରିଯିବାକୁ ନିର୍ଦ୍ଦେଶ ଦେଲେ ।

ସେ ସେଠାରୁ ବାହାରି ଏକୁଟିଆ ଗଲେ ବାଟରେ ତାଙ୍କ ଦଳର କେହି ତାଙ୍କୁ ଭେଟିପାରେ ଓ ଗୋଇନ୍ଦା ପୋଲିସ ତାଙ୍କ ପଛରେ ଲୁଚିକରି ଅନୁସରଣ କରି ପୁଣି ତାଙ୍କୁ ଧରିପାରନ୍ତି ଭାବି ସେ ଏକୁଟିଆ ଯିବାକୁ ନାରାଜ ହୋଇ, 'ମୁଁ ଏତେବଡ କଲିକତା ସହରରେ ବାଟ ଚିହ୍ନିପାରିବି ନାହିଁ—ମୋତେ ଭାରି ଭୋକ—ମତେ ଆମ ଘରେ ଛାଡ଼ିଦେଇ ଆସ' ବୋଲି କାନ୍ଦିଲେ । ପୋଲିସ ସାହେବଙ୍କ ନିର୍ଦ୍ଦେଶରେ ଜଣେ ପୋଲିସ କନେଷ୍ଟବଲ ତାଙ୍କୁ ମଉସାଘର ଗଳି ମୁଣ୍ଡରେ ଛାଡ଼ିଦେଇ ଆସିଲେ ।

ମଉସା କାମରୁ ଫେରିବା ପରେ ନବକୁମାରଙ୍କୁ ଏକାନ୍ତରେ ଡାକି ପୋଲିସ କାହିଁକି ତାଙ୍କୁ ଧରିଥିଲା, ସେ କଅଣ କରୁଥିଲା ବୋଲି ପଚରାପଚରି କଲେ । ମଉସାଙ୍କୁ ଫୋନକରି ପୋଲିସ ତାଙ୍କଠାରୁ ପୁତୁରା ବିଷୟ ବୁଝାବୁଝି କରିଛନ୍ତି ବୋଲି ନବକୁମାର ଜାଣିପାରିଲେ । ସେ ମଉସାଙ୍କୁ କହିଲେ—ମୁଁ ଟିଉସନକୁ ଯାଉଥିଲି, କଲେଜ ପୋଖରୀ ନିକଟରେ ମତେ ଆଉ କିଏ ବିପ୍ଳବୀ ପୋଲିସ ଧରିନେଇଥିଲେ ।

"କଲିକତା ଭଲ ସହର ନୁହେଁ, ଆଉ ଏକୁଟିଆ ବୁଲାବୁଲି କରିବୁ ନାହିଁ, ସିଧା ଟିଉସନକୁ ଯାଇ ଘରକୁ ଫେରିବୁ"—କହି ମଉସା ତାଙ୍କ କାମରେ ଲାଗିଲେ ।

କଲେଜ ପୋଖରୀ ନିକଟକୁ ଆଉ ତ ଯାଇହେବ ନାହିଁ କି ନିର୍ଦ୍ଦେଶ ମିଳିବ ନାହିଁ, ସେଠାକୁ ଯିବାପାଇଁ ମଧ୍ୟ ତାଙ୍କୁ ବାରଣ କରାଯାଇଛି । ସେ ତ ତାଙ୍କ ଦଳର କାହାକୁ ଚିହ୍ନନ୍ତି

ନାହିଁ କି କାହାର ଠିକଣା ଜାଣନ୍ତି ନାହିଁ, ଆଉ କଲିକତାରେ ବୃଥା ବିପଦ ମଝିରେ ରହି ଲାଭ କଅଣ ବୋଲି ସେ ଭାବିଲେ । ଓଡ଼ିଶା ଫେରିଯାଇ ତ କିଛି ଲାଭନାହିଁ । ବିପ୍ଳବୀମାନେ କୁଲିମାନଙ୍କ ସଙ୍ଗେ ସମ୍ପର୍କ ରଖନ୍ତି । ଆସାମରେ ବହୁତ ଓଡ଼ିଆ କୁଲି ଅଛନ୍ତି । ସେଠାକୁ ଚାଲିଗଲେ ବିପ୍ଳବୀଙ୍କ ସଙ୍ଗେ ପୁଣି ସମ୍ପର୍କ ସ୍ଥାପିତ ହୋଇପାରେ । ସେମାନଙ୍କ ପାଖରେ ନିରାପଦରେ ରହି ସାହେବ ମାଲିକମାନଙ୍କ ଅତ୍ୟାଚାର ବିରୁଦ୍ଧରେ ସେମାନଙ୍କୁ ସଂଗଠିତ କରିହେବ । ଏପରି ଭାବି, ମଉସା ନଥିଲାବେଳେ "ଘରୁ ଜରୁରୀ ଚିଠି ଆସିଛି, ମୁଁ ଗାଁକୁ ଯାଉଛି" ବୋଲି ମାଉସୀମାନଙ୍କୁ କହି ସେମାନଙ୍କଠାରୁ ବିଦାୟ ନେଇ ଆସାମ ଉଦ୍ଦେଶ୍ୟରେ ସିଆଲଦା ଷ୍ଟେସନ ଅଭିମୁଖେ ଯାତ୍ରାକଲେ ।

## ଦଶ

ଟିଉସନରୁ ମିଳିଥିବା କିଛି ପଇସା ନବକୁମାରଙ୍କ ହାତରେ ଥିଲା । ସେ ଦିବ୍ରୁଗଡ଼ ପାଇଁ ଟିକେଟ କରି ଆସାମ ମେଲ୍‌ରେ ବସିପଡ଼ିଲେ । ଟ୍ରେନରେ ବସି ବସି ସେ ଭାବିବାକୁ ଲାଗିଲେ—ଓଡ଼ିଆ ହୋଇଥିବାରୁ ପାଠ ପଢ଼ିବାକୁ ସିନା କଲେଜରେ ସ୍ଥାନ ମିଳିଲା ନାହିଁ, କିନ୍ତୁ ଓଡ଼ିଆ ଟିକିଟିଏ ବୋଲି ତାଚ୍ଛଲ୍ୟ ହେତୁ ଏଥରକ ପାଇଁ ଜୀବନଟା ରହିଗଲା । କିନ୍ତୁ ଓଡ଼ିଆ ଜାତି ପାଇଁ ଏ କି ଲଜ୍ଜାର କଥା ! ବଙ୍ଗାଳିମାନେ ଓଡ଼ିଆଙ୍କୁ ମଣିଷରେ ଗଣନ୍ତି ନାହିଁ । ସେମାନଙ୍କ ଦୃଷ୍ଟିରେ ସେମାନେ ଭୀରୁ, ବିପ୍ଳବ କରିବା ପାଇଁ ବି ଉପଯୁକ୍ତ ନୁହଁନ୍ତି । ବଙ୍ଗଳା ଇଂରେଜ ପଦାନତ ହେବାର ବହୁଦିନ ପର୍ଯ୍ୟନ୍ତ ବୀର ଓଡ଼ିଆମାନେ ସ୍ୱାଧୀନ ରହି-ପାରିଥିଲେ । ସେମାନେ ପରାଧୀନ ହେଲାପରେ ଇଂରେଜଙ୍କ ବଙ୍ଗୀୟ ଦାସମାନେ ସେମାନଙ୍କ ଜମି ସାନ୍ଧ୍ୟଆଇନ ଫଳରେ କଲିକତାରେ ନିଲାମ କରାଇ ଜମିଦାର ହୋଇ ସେମାନଙ୍କୁ ତଳିତଳାନ୍ତ କଲେ । ଶେଷରେ ସେମାନେ ଚାକରପୂଜାରୀ ହୋଇ କଲିକତା, ରେଙ୍ଗୁନ ଓ ଆସାମରେ ଯାଇ ଖଟିଲେ । ଶେଷରେ କେତେକ ବଙ୍ଗୀୟ ତାଚ୍ଛଲ୍ୟ କରି ତାଙ୍କ ନାମରେ ଗୀତ ଭଣିଲେ । ଏସବୁର ପ୍ରତିବାଦ କରିବାର ଶକ୍ତି ମଧ୍ୟ ଓଡ଼ିଆଙ୍କଠାରେ ନାହିଁ । ସେ ଯାହାହେଉ ଦେଶକୁ ସ୍ୱାଧୀନ କରିବାକୁ ସେ ଶପଥ ନେଇଛନ୍ତି । ତେଣୁ ଇଂରେଜ ଭୃତ୍ୟ ବଙ୍ଗାଳି ପୁଲିସ ସାହେବଙ୍କ ବୃଥା ଆତ୍ମତୃପ୍ତିରେ ସେ ଯଦି ତାଙ୍କ କାର୍ଯ୍ୟ ହାସଲ କରିପାରିଲେ ସେ ବର୍ତ୍ତମାନ ପାଇଁ ଯଥେଷ୍ଟ । ଭାରତ ସ୍ୱାଧୀନ ହୋଇ ଇଂରେଜ ଚାଲିଗଲେ ତାଙ୍କ ଭୃତ୍ୟଙ୍କ ପ୍ରତିପତ୍ତି ବି କମିଯିବ, ସ୍ୱାଧୀନ ଓଡ଼ିଆ ପୁଣି ବୀର ଓଡ଼ିଆରେ ପରିଣତ ହୋଇପାରିବ ।

ଆଉ ବହୁତ ପ୍ରକାର ଭାବନା ମଧ୍ୟ ତାଙ୍କ ମୁଣ୍ଡରେ ଉଙ୍କି ମାରିଲା । ସେ ଏବେ ଅନିର୍ଦ୍ଦିଷ୍ଟ ପଥର ଯାତ୍ରୀ । ପୋଲିସ ପିଚାପିଚାରି ପରେ ସେ ମଉସାଙ୍କୁ, ଭବିଷ୍ୟତ ବିପଦରୁ

ରକ୍ଷାକର ଚାଲିଯାଇଥିବାରୁ ମଉସା ହୁଏତ ଆଶ୍ୱସ୍ତ ହୋଇଥିବେ । ମଉସାଙ୍କ ପିଲା ଦୁଇଟି ଓ ମାଉସୀମାନେ ତାଙ୍କୁ ଅତି ସୁଖ ପାଆନ୍ତି । ସେମାନେ ହୁଏତ ତାଙ୍କୁ ଝୁରୁଥିବେ । ବାପା ତ ଅହିଂସା ପଥର ଯାତ୍ରୀ—ପୁଅ ହିଂସା ପଥରେ ଗତି କରୁଥିବା କଥା ଶୁଣିଲେ ସେ କଅଣ ମନେକରିବେ ?

ଅନେକ କଥା ତାଙ୍କର ମନେପଡ଼ିଲା । ସମୟ କାହାକୁ ଅପେକ୍ଷା ନକରି ଦଉଡ଼ି ଚାଲିଛି । ଲୁଣମରା ସତ୍ୟାଗ୍ରହ ଆରମ୍ଭର ଦିନଟି ଚୁହୁଁ ଚୁହୁଁ କେତେବର୍ଷର ପଛରେ ପଡ଼ିଗଲାଣି । ଗାନ୍ଧି ଗୋଲଟେବୁଲ ବୈଠକ ପାଇଁ ବିଲାତ ଯାଇ ନିରାଶରେ ଫେରିବା ପରେ ପୁଣି ସତ୍ୟାଗ୍ରହ ଆନ୍ଦୋଳନର ଡାକରା ଦେଇ କାରାବରଣ କରିଥିଲେ । ତାଙ୍କୁ ଛଅ ବର୍ଷ ପାଇଁ କାରାଦଣ୍ଡ ଆଦେଶ ହୋଇଥିଲା; କିନ୍ତୁ ତାଙ୍କ ଅନୁପସ୍ଥିତିରେ ସେ ଆନ୍ଦୋଳନ ପୂରା ଧିମେଇଗଲା । ହିନ୍ଦୁ ମୁସଲମାନ ଭେଦ ବଢ଼ିଲା । ନେତାମାନେ ଭିନ୍ନ ଭିନ୍ନ ମତବାଦ ପଛରେ ଗୋଡ଼ାଇଲେ । ଗାନ୍ଧିଙ୍କ କଥା ଆଉ ବେଶି କାମ କରିବ ନାହିଁ ଜାଣି ଇଂରେଜ ସରକାର କାରାଗାର ଭୋଗ କରିବାର ଦୁଇ ବର୍ଷ ପରେ ତାଙ୍କୁ ମୁକ୍ତ କରିଦେଲେ । କଂଗ୍ରେସ ଭିତରେ ମତଭେଦ ଓ ରାଜନୀତିରେ ନିଷ୍କ୍ରିୟତା ଦେଖି ଗାନ୍ଧି ସକ୍ରିୟ ରାଜନୀତି ଛାଡ଼ି କଂଗ୍ରେସର ସାଧାରଣ ସଭ୍ୟ ପଦରୁ ମଧ୍ୟ ଦୂରରେ ରହି ଓ୍ୱାର୍ଦ୍ଧା ଆଶ୍ରମରେ ଗଠନମୂଳକ କାର୍ଯ୍ୟକ୍ରମ ନେଇ ଜୋର୍‌ସୋର୍‌ରେ ସୂତାକଟାରେ ଲାଗିଗଲେ ।

ଗୋପବନ୍ଧୁଙ୍କ ତିରୋଧାନ ପରେ କୁଳବୃଦ୍ଧ ମଧୁସୂଦନ ବି ସ୍ୱର୍ଗାରୋହଣ କଲେଣି । ପ୍ରଚାରକ ଅନନ୍ତ ମିଶ୍ର ବହୁମୂତ୍ର ରୋଗରେ ଆକ୍ରାନ୍ତ ହୋଇ ଅର୍ଥହୀନ ଓ ଚିକିତ୍ସାହୀନ ଅବସ୍ଥାରେ ନିଜ ଗାଁଆ ତଳେ ମୃତ୍ୟୁକୁ ଅପେକ୍ଷା କରି ପଡ଼ିରହିଲେଣି । ମୁରାରି ତ୍ରିପାଠୀ ରାଜନୀତି ଛାଡ଼ି ପୁରୀରେ ସେବାସଙ୍ଘ ଗଢ଼ି ରୋଗୀ ସେବା ଓ ଶବ ସତ୍କାରରେ ପୂର୍ଣ୍ଣଭାବେ ମନୋନିବେଶ କଲେଣି । ନେତାମାନଙ୍କ ଭିତରୁ କେହି କେହି ଗଠନମୂଳକ କାର୍ଯ୍ୟରେ ଓ ଅନ୍ୟ କେହି କ୍ଷମତା ରାଜନୀତିରେ ଯୋଗଦେଲେଣି । କର୍ମୀ ମାନେ କିଏ କୁଆଡ଼େ ଗଲେଣି । ସତ୍ୟାଗ୍ରହ ବେଳର ଜାତୀୟ ଉଦ୍ଦୀପନା ଆଉ ନାହିଁ ।

ଦରିଦ୍ର ଓଡ଼ିଆ ଏପଟ ସେପଟ ହେଉଛି । ମରୁଡ଼ି ବଢ଼ିର ଉତ୍ପାତରେ ଉତ୍ୟକ୍ତ ହୋଇ ଅନାହାରରୁ ରକ୍ଷାପାଇବା ପାଇଁ ଅନ୍ୟ ପ୍ରଦେଶର କଳକାରଖାନାରେ ଠିକା କୁଲି ରୂପେ କାମ କରିବାକୁ ବାହାରି ଚାଲିଛି । ଓଡ଼ିଶାରେ ମୁଣ୍ଡ ଗୁଞ୍ଜିବାକୁ ଗୋଟିଏହେଲେ କଳକାରଖାନା ନାହିଁ । ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଥିବା ଓଡ଼ିଆ ଭୂଖଣ୍ଡ ଗଞ୍ଜାମ କୋରାପୁଟ-ଆଡ଼ୁ ବହୁତ ଲୋକ କର୍ମସଂସ୍ଥାନ ପାଇଁ ଗୋପାଳପୁର ବନ୍ଦର ବାଟେ ରେଙ୍ଗୁନ ଯାଉଥିଲେ । ବର୍ମା ଭାରତରୁ ଅଲଗା ହେବା ପରେ ଗୋପାଳପୁର ବନ୍ଦର ପୂରା ବନ୍ଦ ହୋଇଗଲାଣି । ଏବେ ଅଧିକାଂଶ ଓଡ଼ିଆ ଟାଟା (କଲାମାଟି) ଲୁହା କାରଖାନା, ବଙ୍ଗଳା ଝୋଟ କଲ ଓ ଆସାମ ଚାହା ବଗିଚାରେ ଖୁନ୍ଦିହେଲେଣି ।

ଦିବ୍ରୁଗଡ଼ରେ ପହଞ୍ଚିବାକୁ ତାଙ୍କୁ ଦୀର୍ଘ ତିନ ଦିନ ଲଗିଲା । ଭାରତ ଧରଣୀର ପୂର୍ବାଞ୍ଚଳର ମନୋରମ ଦୃଶ୍ୟ ସେ ବାଟଯାକ ଦେଖି ଦେଖି ଯାଉଥିଲେ । ନାନା ଭାଷାଭାଷୀ ବିଭିନ୍ନ ଧର୍ମର ଲୋକେ ଠାଆକୁଠାଆ ତାଙ୍କ ଡବାରେ ଚଢ଼ି ପୁଣି ଓହ୍ଲାଇ ଯାଉଥିଲେ । ଦିବ୍ରୁଗଡ଼ ଯେତିକି ନିକଟ ହେଉଥିଲା, ଆସାମୀଙ୍କ ସଂଖ୍ୟା ସେତିକି ବଢ଼ୁଥିଲା । ଚେପ୍‌ଟା ଚେପ୍‌ଟା ମୁହଁ, ଓଡ଼ିଆ ଉଚ୍ଚାରଣ ପରି ଉଚ୍ଚାରଣରେ କଥାବାର୍ତ୍ତା । ଓଡ଼ିଆ ଭାଷା ସଙ୍ଗେ ଆସାମୀ ଭାଷାର ଏତେ ସାମଞ୍ଜସ୍ୟ ଦେଖି ସିନେ ହୁଏତ ଓଡ଼ିଆ, ଆସାମୀ ଓ ବଙ୍ଗାଳୀମାନେ ଗୋଟିଏ ଭାଷା କହୁଥିଲେ ଓ କାଳକ୍ରମେ ତାହା ବିଭିନ୍ନ ଭାଷାରେ ପରିଣତ ହୋଇଛି ବୋଲି ତାଙ୍କର ଧାରଣା ହେଲା । ସାଧାରଣତଃ ସେମାନେ ସାଦାସିଧା ଲୋକ, କଲିକତା ବଙ୍ଗାଳୀଙ୍କ ପରି ନୁହନ୍ତି । ସେ ଡବାରେ ବସିଥିବା ଜଣେ ବଙ୍ଗାଳୀ ବାବୁ, ଆସାମୀମାନେ ଗାଡ଼ିକୁ ପଶିଆସିଲେ ନାକ ଟେକୁଥାଆନ୍ତି, ବଙ୍ଗଳା ଭାଷାରେ ସେମାନଙ୍କ ବିଷୟରେ ଯାହା ମନ୍ତବ୍ୟ କରୁଥାଆନ୍ତି ତାହା ବେଶ୍ ପ୍ରୀତିକର ନୁହେଁ ।

ସେ ଦିବ୍ରୁଗଡ଼ ଷ୍ଟେସନରେ ଓହ୍ଲାଇ ପଡ଼ିଲେ । ଚାରିଆଡ଼େ ବୁଦୁବୁଦିଆ ଜଙ୍ଗଲ ପରି ଗୁହା ଗଛର ବଗିଚା । ସେ ଗଛଗୁଡ଼ିକ ମଲ୍ଲୀଗଛର ବଡ଼ ବଡ଼ ବୁଦା ପରି ଦିଶୁଥାଏ । ପତ୍ରଗୁଡ଼ିକ ତେନ୍ତୁଳି ବା ଟଗର ଗଛର ପତ୍ରପରି । ରାସ୍ତାକଡ଼ରେ ଅନେକ ସ୍ଥାନରେ ଡେଙ୍ଗା ଡେଙ୍ଗା ଗୁଆ ଗଛ । ଲୋକମାନେ ପାନପତ୍ରରେ କଞ୍ଚା ଗୁଆଖଣ୍ଡ ରଖି ଚୋବାଉଥାଆନ୍ତି ।

କଲିକତାରେ କାମ କରୁଥିବା ଗୋଟିଏ କୁଲି ସର୍ଦ୍ଦାରର କେତେକ ଗାଁ ଲୋକ ଆସାମ ଗୁହା ବଗିଚାରେ କାମ କରନ୍ତି । ନବକୁମାର କଲିକତାରୁ ଆସିବା ପୂର୍ବରୁ ସେ କୁଲି ସର୍ଦ୍ଦାରଠାରୁ ଜଣକର ଠିକଣା ଓ ନିଜ ପରିଚୟପତ୍ର ସାଙ୍ଗରେ ଆଣିଥିଲେ । ସେ ଗୁହା ବଗିଚାମାନଙ୍କ ମଝିରେ ପଡ଼ିଥିବା ବଙ୍କାଟଙ୍କା ରାସ୍ତା ଦେଇ ଓଡ଼ିଆ ପରି ଦିଶୁଥିବା କୁଲିମାନଙ୍କୁ ପଚାରି ପଚାରି ସେଇ ଠିକଣାର ଅନୁସନ୍ଧାନରେ ଗ୍ଲଲେ । ଯାଉ ଯାଉ ବାଟରେ ଜଣେ ଓଡ଼ିଆ ଗୁମାସ୍ତାଙ୍କ ସଙ୍ଗେ ଦେଖାହେଲା । ସେ କୁଲିପଡ଼ାଆଡ଼େ ଯାଉଥିଲେ । ତେଣୁ ତାଙ୍କ ସଙ୍ଗେ ସାହେବ ବଙ୍ଗଳା ଓ ଅନ୍ୟଘର ସବୁ ଦେଖି ଦେଖି ଓ ସେ ସବୁର ବର୍ଣ୍ଣନା ଶୁଣି ଶୁଣି ତାଙ୍କ ପଛେ ପଛେ ଗ୍ଲଲେ ।

ସାହେବମାନଙ୍କ ବଙ୍ଗଳା ଚାରିପଟେ ବଡ଼ ପାଚେରୀ ଘେରା ହୋଇଛି । ବଙ୍ଗଳା ଗୁଡ଼ିକ କାଠରେ ତିଆରି, ଟିଣ୍ଡରୁ ଛାଆଣି ହୋଇଥିବା ଏକତାଲ ବା ଦୁଇତାଲବିଶିଷ୍ଟ ବଡ଼ ବଡ଼ ଘର । କାନ୍ଥସବୁ କାଠରେ ଗଢ଼ା; କିନ୍ତୁ ତା' ଉପରେ ସିମେଣ୍ଟ ଓ ରଙ୍ଗ ଦିଆଯାଇ ଚିକ୍କଣ କରାଯାଇଥାଏ । ଆସାମର ସେ ଅଞ୍ଚଳରେ ଭୂମିକମ୍ପର ଆଶଙ୍କା ଥିବାରୁ ଇଟା ପଥରର ଉଚ୍ଚଘର କେହି ହୁଏନାହିଁ, ତେଣୁ ଧନୀ ଗରିବ ସମସ୍ତଙ୍କ ଘର କାଠ ବାଉଁଶରେ ତିଆରିହୁଏ ।

ବଙ୍ଗଳା ଘରର ଅଳ୍ପ ଦୂରରେ ଘୋଡ଼ାଶାଳ । ଘର ଚାରିପଟେ ସୁନ୍ଦର ଫୁଲ ବଗିଚା । ପାଚେରୀ କଡ଼େ କଡ଼େ ଧାଡ଼ି ଧାଡ଼ି ନଡ଼ିଆ ଓ ଗୁଆ ଗଛ ଲଗାହୋଇ ବଙ୍ଗଳାକୁ

ଲୁଗୁଇପକାଉଥାଏ । ସାହେବଙ୍କ ନିଜ ବଙ୍ଗଳାଛଡ଼ା ସେମାନଙ୍କ ପାଇଁ ବଡ଼ ବଡ କ୍ଲବ ଘର, ଘୋଡ଼ାଦଉଡ଼ ପଡ଼ିଆ, ଟେନିସ୍, ବ୍ୟାଡମିଣ୍ଟନ ପଡ଼ିଆ ଓ ନାନା ପ୍ରକାରର ସୁନ୍ଦର ଆମୋଦ ଗୃହମାନ ରହିଛି । ସେ ସବୁର ଗେଟ୍ ମୁହଁରେ ଦେଶୀ ଦରୁଆନ୍‌ମାନେ ଠିଆହୋଇ-ଥାଆନ୍ତି; କିନ୍ତୁ ଭାରତୀୟମାନେ ଯେତେ ପାଠପଢ଼ୁଆ କି ଧନୀ ହେଲେ ମଧ୍ୟ ସେମାନଙ୍କୁ କ୍ଲବ ପ୍ରଭୃତିର ମେମ୍ବର କରାଯାଏ ନାହିଁ କି ସେସବୁ ଭିତରକୁ ଛାଡ଼ ଦିଆଯାଏନାହିଁ ବୋଲି ଗୁମାସ୍ତାଙ୍କଠାରୁ ଶୁଣିଲେ । ବଙ୍ଗଳା ପ୍ରଭୃତିରେ ଅବଶ୍ୟ ଦେଶୀ ଚପରାଶି, ବବୁର୍ଚ୍ଚି, ଘୋଡ଼ା କଚୁଆନ, ମାଳୀ ପ୍ରଭୃତି କାମ କରନ୍ତି ।

ଦେଶୀ ଠିକାଦାର, ଜମାଦାର, କରାଣୀ କର୍ମଚାରୀ ପ୍ରଭୃତିଙ୍କର ଛୋଟ ଛୋଟ ବଙ୍ଗଳା । ସେ ଘରଗୁଡ଼ିକର କାନ୍ଥ ବାଉଁଶରେ ହେଲେ ମଧ୍ୟ ବାଉଁଶ ଉପରେ ମାଟି ଦିଆଯାଇ ତା ଉପରେ ଚୂନ ଲିପାହୋଇଛି । ଘରପାଖରେ ପାଣିର ବ୍ୟବସ୍ଥା ପାଇଁ ସାହେବ ବଙ୍ଗଳାରେ ଥିବାପରି କୂଅଟିଏ ଲେଖାଏଁ ଖୋଳା ହୋଇଛି । କମ୍ପାନି ସାହେବ ଓ ଠିକାଦାର ପ୍ରଭୃତିଙ୍କର ଘର ଗ୍ୟ' ବଗିଚାଠାରୁ ଦୂର ଢିପ ସ୍ଥାନମାନଙ୍କରେ । ତେଣୁ ସେଠାରେ କୂଅର ବ୍ୟବସ୍ଥା ରହିଛି ।

ଗୁମାସ୍ତା ସାଙ୍ଗେ କଥାବାର୍ତ୍ତା ହୋଇ ହୋଇ ସେ କୁଲିପଡ଼ା ବା ସେଠାର ଡାକନାମ 'ଚଡ଼ା' ପାଖରେ ପହଞ୍ଚିଲେ । କୁଲିପଡ଼ା ଗୁଡ଼ିକ ନାଳ ନଈ ପୋଖରୀକୂଳ ସନ୍ତସନ୍ତିଆ ସ୍ଥାନରେ ଅବସ୍ଥିତ । ବାଉଁଶ ପାଚିଆ ବା ନଳୀ ବାଉଁଶର ଯୋଡ଼ାଯୋଡ଼ି ଘର । ମାଟିର ଚଟାଣ, ପାଇଖାନା ଓ ନାଳ ନର୍ଦ୍ଦମାର କୌଣସି ବ୍ୟବସ୍ଥା ନାହିଁ । ସମସ୍ତେ ପାଣିକୂଳ ପଡ଼ିଆରେ ଝାଡ଼ା ଫେରନ୍ତି, ଗାଡ଼ିଆ ନାଳ ପ୍ରଭୃତିରୁ ପାଣି ଆଣି ବ୍ୟବହାର କରନ୍ତି । ଗାଁ ଦାଣ୍ଡ ଓ ଘରପଟ ଅଯନା ଅଳିଆଗଦାରେ ଭରପୂର । ମଶା ମାଛିଙ୍କ 'ଉପଦ୍ରବରେ ଦିନରେ ମଧ୍ୟ ସେଠାରେ କିଛି ସମୟ ଠିଆହୋଇ ରହିବା କଷ୍ଟ । ମଇଳା କୋତରା ସିଙ୍ଘାଣି ନାକା ଲଙ୍ଗଳା ପିଲାଗୁଡ଼ାକ ଧୂଳି ମାଟିରେ ଗଡ଼ି ଭେଁ ଭେଁ କେଁ କେଁ ହେଉଥାଆନ୍ତି । ଭିନ୍ନ ଭିନ୍ନ ଜାତିର କୁଲିଙ୍କ ପାଇଁ ଅଲଗା ଅଲଗା ସାଇ ଥାଏ; କିନ୍ତୁ ସବୁ ସାଇର ଅବସ୍ଥା ପ୍ରାୟ ଏକାପରି ।

ସେ ଶୁଣିଲେ ମେଲେରିଆ, ହଇଜା, ବସନ୍ତ, ପେଟବେମାର, ଜାଡ଼ୁ, ଯାଦୁ ସବୁ ସେଠାରେ ବସାକରି ରହିଥାଆନ୍ତି । କିଏ ମଲା କିଏ ବଞ୍ଚିଲା, ସେ କଥା ବୁଝିବାକୁ ମାଆ ବାପ କେହି ନାହିଁ । ପିଲାଙ୍କ ପାଇଁ ସ୍କୁଲ ନାହିଁ କି ଖେଳ ପଡ଼ିଆ ନାହିଁ । ତାଙ୍କର ତତ୍ତ୍ୱ ନେବାକୁ ସ୍ୱତନ୍ତ୍ର ଡାକ୍ତରଖାନା ବି ନାହିଁ । କେତୋଟି କମ୍ପାନି ମିଶି କମ୍ପାନି ଲୋକଙ୍କ ପାଇଁ ଗୋଟିଏ ଗୋଟିଏ ଡାକ୍ତରଖାନା କରିଥାଆନ୍ତି । ସାହେବଙ୍କର ସ୍ୱତନ୍ତ୍ର ଡାକ୍ତରଖାନା । କମ୍ପାନି ଡାକ୍ତରଖାନାରେ ବାବୁଭାୟା ଓ ଅଫିସରଙ୍କ ପାଇଁ ସ୍ୱତନ୍ତ୍ର ଚିକିତ୍ସା ବ୍ୟବସ୍ଥା ଥାଏ । କୁଲିମାନେ ସେ ଡାକ୍ତରଖାନାରେ ବହୁସମୟ ଅପେକ୍ଷା କରିବା ପରେ କେବେ କେବେ ଡାକ୍ତର କମ୍ପାଉଣ୍ଡରଙ୍କର ଦେଖାମିଳେ; କିନ୍ତୁ ଔଷଧ ଓ ଚିକିତ୍ସା ବ୍ୟବସ୍ଥା ମିଳେ ଖୁବ କମ୍ ।

ତେଣୁ କୁଲିମାନେ ଡାକ୍ତରଖାନା ନଯାଇ ଠେସୁକାଠୁସ୍କ ଝଡ଼ା ଫୁଙ୍କା ପ୍ରଭୃତିର ଆଶ୍ରୟ ନେବାକୁ ବାଧ୍ୟ ହୁଅନ୍ତି ।

ସେଠାରେ ଓଡ଼ିଆ କୁଲିଙ୍କ ଗରସବୁ ଦେଖି ତାଙ୍କର ଓଡ଼ିଆ ଢଗଟି ମନେପଡ଼ିଲା— 'ଗରବ ମାଇପ ସବୁର ଶାଳୀ' । ସେଇ ଢଗ ଅନୁସାରେ ବଳିଷ୍ଠ, ଅନଗ୍ରସର, ସମ୍ବଳହୀନ ଓଡ଼ିଆ ଜାତିଟା ସମସ୍ତଙ୍କର ଗୃହିଣୀ-ସୋଦରଠାରୁ ଆହୁରି ହେୟ । ଯେଉଁ ଓଡ଼ିଆ କୁଲିମାନେ ପୁରୁଷ ପୁରୁଷ ଧରି ସେଠାରେ ରହିଲେଣି ସେମାନେ ଓଡ଼ିଆ ଶିକ୍ଷା ଅଭାବରୁ ଓଡ଼ିଆ ପ୍ରାୟ ଭୁଲିଗଲେଣି । ସେମାନେ ଏକପ୍ରକାର ମିଶାମିଶି ଭାଷା କହନ୍ତି । ଆସାମର ଚାହା କମ୍ପାନୀସବୁ ତ ଇଂରେଜୀ ସାହେବଙ୍କର, ସେଠାରେ ଓଡ଼ିଆଙ୍କ କଥା ଛାଡ଼, ସବୁ ଦେଶୀ ଲୋକମାନେ ବି ଘୃଣ୍ୟ ଅସଭ୍ୟ ରୂପେ ପରିଗଣିତ ହୁଅନ୍ତି ।

ଇଂରେଜ ସାହେବଙ୍କୁ ସାତଖୁଣ ମାଫ୍ । ସେମାନେ କୌଣସି ଭଦ୍ରଲୋକଙ୍କୁ ପିଟି ପିଟି ମାରିଦେଲେ ବି ସେ ଘଟଣାଟି ସାଧାରଣ ଟିକିଏ ତ୍ରୁଟିଏ ମାତ୍ରେ ଧରାଯାଏ । ଇଂରେଜ ଲୋକଙ୍କୁ ଦେଶୀ ବିଚାରପତିମାନଙ୍କର ବିଚାର କରିବାର କ୍ଷମତା ନଥିଲା । ସେଠାରେ ଚାହା କମ୍ପାନୀର ମାଲିକମାନେ ଯାହା କହିବେ ତାହା ବେଦର ଗାର, ଯାହା କରିବେ ସେଥିରେ ପାଟି ଫିଟାଇବାକୁ କାହାର ଜୀ ନାହିଁ । ସାହେବମାନଙ୍କୁ ଖୁସାମତ କରି, ନେହୁରା ହୋଇ, ଚଟିମାଡ଼ ଖାଇ ଯେଉଁମାନେ ତାଙ୍କ ପାଖେ ପାଖେ ଥାଅନ୍ତି, ସେମାନଙ୍କର ବି ଅଖଣ୍ଡ ପ୍ରତିପତ୍ତି । ସେମାନେ ମହାଦେବଙ୍କ ଷଣ୍ଢ, ତାଙ୍କୁ ବି ସାତଖୁଣ ମାଫ । ସେମାନେ ସାହେବଙ୍କ ଜାଣତରେ ବା ଅଜାଣତରେ ଅନ୍ୟ ଦେଶୀ ଲୋକଙ୍କ ଉପରେ ଅକଥନୀୟ ଅତ୍ୟାଚାର କରନ୍ତି । ସେମାନେ ଅବଶ୍ୟ ସାହେବଙ୍କ ସାମନାରେ ମଲାମୂଷା, ସାହେବଙ୍କ ଆଦେଶକୁ ଚାତକପରି ଚାହିଁ ରହିଥାନ୍ତି । ସାହେବ ଆଙ୍ଗୁଠି ଦେଖାଇଲେ ସେମାନେ ବାଘୁ ଗିଳିଦେବାକୁ ପ୍ରସ୍ତୁତ ହୋଇପଡ଼ନ୍ତି । ସ୍ୱର୍ଗରୁ ଚନ୍ଦ୍ର ଧରିଆଣ ବୋଲି ସାହେବ କହିଲେ ତାଙ୍କ ପାଟିରୁ କଥା ନସରୁଣୁ ଚନ୍ଦ୍ରକୁ ଧରିଆଣିବାକୁ ସେମାନେ ଆକାଶକୁ କୁଦାମାରନ୍ତି ।

ଅଶିକ୍ଷିତ କୁଲିପଡ଼ାରେ ତ ସବୁବେଳେ ଗହଳ । ପିଲାମାନଙ୍କ କଳକଳିଆ ଓ କାନ୍ଦବୋବାଳି ସାଙ୍ଗକୁ ବୁଢ଼ୀ ସ୍ତ୍ରୀଲୋକମାନଙ୍କର ଝଗଡ଼ାର ବାଦପାଲି ଲାଗିରହିଥାଏ । ସେ କୁଲିପଡ଼ାଟି ଭିତରେ ପଶିବା ସଙ୍ଗେ ସଙ୍ଗେ ବୁଢ଼ୀ ସ୍ତ୍ରୀମାନଙ୍କର ବଚସାରେ ହଠାତ୍ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ପିଲାଗୁଡ଼ାକ ବି କିଛି ସମୟ ଚାଟକା ହୋଇ ରହିଗଲେ । ନବକୁମାର କାଲିକତି ପୋଷାକରେ ବାବୁଟିଏ ପରି ଦିଶୁଥିଲେ । କୁଲି ସାହି ଭିତରେ ହଠାତ୍ ଜଣେ ବାବୁଙ୍କର ପ୍ରବେଶ ଦେଖି ସେଠାରେ ଆତଙ୍କ ସୃଷ୍ଟି ହୋଇଥିଲା । ଅତି ଦରକାର ନ ପଡ଼ିଲେ ବାବୁଭାୟା ଲୋକ ସେଠାରେ ପାଦ ପକାନ୍ତି ନାହିଁ । କୌଣସି କୁଲି ଗୁରୁତର ଅପରାଧ କରିଥିଲେ ଅପରାଧୀକୁ ଚାବୁକ କରିବା ପାଇଁ ବେଳେ ବେଳେ କେହି କେହି ଅଫିସର ବାବୁ ତଦାରଖ କରିଯାଆନ୍ତି । ସେପରି ଲୋକଙ୍କୁ ଦେଖିଲେ ବୁଢ଼ୀ ଓ ପିଲାମାନେ ଘରେ ପଶିଯାଆନ୍ତି ।

ଗାଁ ଦାଣ୍ଡରେ ଅନ୍ୟମନସ୍କ ହୋଇ ଜଣେ ଲୋକ ମୁଣ୍ଡପୋଡ଼ ଠିଆହୋଇଥିଲେ । ବୁଢ଼ୀ ଓ ପିଲଙ୍କ ପାଟି ହଠାତ୍ ବନ୍ଦ ହୋଇଯିବାରୁ ସେ ମୁଣ୍ଡଟେକି ନବକୁମାରଙ୍କୁ ଗୃହିଁଲେ। ନବକୁମାର ତାଙ୍କ ନିକଟକୁ ଯାଇ ପକେଟରୁ ଠିକଣା ଓ ଚିଠିଟି କାଢ଼ି ଠିକଣାର ନାମଟିକୁ ଆଉଥରେ ପଢ଼ି, ଚନ୍ଦ୍ର ପ୍ରଧାନଙ୍କ ଘର କେଉଁଟା ବୋଲି ପଚାରିଲେ ଓ ସେ ଘରଟି ଓ ଚନ୍ଦ୍ର ପ୍ରଧାନଙ୍କୁ ଅନୁଗ୍ରହ କରି ଚହ୍ନାଇ ଦେବାକୁ ଅନୁରୋଧ କଲେ । ସେ ଲୋକ ନିଜ ନାମ ଶୁଣି ପ୍ରଥମେ ଚମକିପଡ଼ିଲେ, ତା'ପରେ ଚିଠି ପଢ଼ି ଓ ନବକୁମାରଙ୍କଠାରୁ ସବୁ ଶୁଣି ନିଜର ପରିଚୟ ଦେଲେ । ସେଦିନ ଦେହ ଭଲ ଲାଗୁ ନଥିବାରୁ ସେ କାମକୁ ଯାଇନଥିଲେ । ଦିନରେ ସ୍ତ୍ରୀ ପୁରୁଷ ସମସ୍ତେ କାମକୁ ଯାଆନ୍ତି । ପଡ଼ାରେ କେବଳ ବୁଢ଼ା ବୁଢ଼ୀ ଓ ପିଲମାନେ ଥାଆନ୍ତି । ଚନ୍ଦ୍ର ଘରେ ଶୋଇରହିଥିଲେ । ବାହାରେ ବୁଢ଼ୀ ଓ ପିଲମାନେ ଚେଁ ଚାଁ ହୋଇ ତାଙ୍କର ଶାନ୍ତିଭଙ୍ଗ କରିବାରୁ ସେମାନଙ୍କୁ ସେଥିରୁ ନିବୃତ୍ତ ହେବାପାଇଁ କହିବାକୁ ସେ ଘରର ବାହାରକୁ ଆସିଥିଲେ ।

ନବକୁମାର ତାଙ୍କ ବନ୍ଧୁଙ୍କ ନିକଟରୁ ଆସିଛନ୍ତି ଶୁଣି ଭାରି ଖୁସି ହେଲେ । ଦୂର ସ୍ଥାନରେ ନିଜ ଲୋକଙ୍କ ଜଣାଶୁଣା ଜଣେ ଲୋକକୁ ଦେଖିଲେ ସ୍ୱର୍ଗ ପାଇବା ପରି ଲାଗେ ଓ ନିଜର ଜଣେ ଅତି ଆତ୍ମୀୟଙ୍କୁ ପାଇବା ପରି ଜଣାଯାଏ । ସେ ବନ୍ଧୁଙ୍କ କୁଶଳ ଖବର ଜାଣିବାକୁ ନବକୁମାରଙ୍କୁ ଗୁଡ଼େଇ ଗୁଡ଼େଇ ପ୍ରଶ୍ନ କଲେ । ନବକୁମାରଙ୍କ ଅସାମ ଆଗମନର ଉଦ୍ଦେଶ୍ୟ ପଚାରିବାରେ ସେ ଖଣ୍ଡେ ଚାକିରି ପାଇବା ପାଇଁ ଆସିଛନ୍ତି ବୋଲି କହିଲେ ।

ଚନ୍ଦ୍ର ନବକୁମାରଙ୍କୁ ଆଦରରେ ନିଜ ଘରକୁ ଡାକିନେଲେ । ଧୂଆଧୋଇ ଓ ଖିଆପିଆର ବ୍ୟବସ୍ଥା କରାଇ ବିଶ୍ରାମ ନେବା ପାଇଁ ପାଖ ଘରର ଗୋଟିଏ କୋଠରିରେ ରଖାଇଦେଲେ ଓ ପରଦିନ ତାଙ୍କ ପାଇଁ ଚାକିରିଟିଏ ଖୋଜିବାକୁ ପ୍ରତିଶ୍ରୁତି ଦେଲେ ।

ସନ୍ଧ୍ୟାବେଳକୁ ଚନ୍ଦ୍ର ଠିକାଦାରଙ୍କ ନିକଟରେ ପହଞ୍ଚି ତାଙ୍କର ପାଠପଢ଼ୁଆ ଭାଇଟି ଆସିଛି, ତା' ପାଇଁ ଗୋଟିଏ ଲେଖାପଢ଼ା କାମ ଯୋଗାଡ଼ କରିବାକୁ ଅନୁରୋଧ କଲେ । ଚନ୍ଦ୍ରଙ୍କୁ ସେଠାରେ ସମସ୍ତେ ସୁଖ ପାଆନ୍ତି । ସେ କୌଣସି କଥାରେ ପ୍ରତିବାଦ ନକରି ତାଙ୍କ ନିଜ କାମରେ ଲାଗିଥାଆନ୍ତି, ତେଣୁ ତାଙ୍କର କେହି ଶତ୍ରୁ ନଥାନ୍ତି । ଠିକାଦାର ଦରକାର-ବେଳେ ତାଙ୍କ ହାତରେ ଅନେକ କାମ ବିନା ପାରିଶ୍ରମିକରେ କରାଇ ନେଉଥିବାରୁ ତାଙ୍କ ଉପରେ ପ୍ରସନ୍ନ ଥାଆନ୍ତି ।

ପରଦିନ ଚନ୍ଦ୍ର ନବକୁମାରଙ୍କୁ ସାଙ୍ଗରେ ନେଇ ଠିକାଦାରଙ୍କ ସଙ୍ଗେ ସାହେବଙ୍କ ଅଫିସକୁ ଗଲେ । ବହୁତ ସମୟ ଅପେକ୍ଷା କରିବା ପରେ ସାହେବଙ୍କ ସଙ୍ଗେ ସାକ୍ଷାତ କରିବାକୁ ଅନୁମତି ମିଳିଲା । ସାହେବଙ୍କ ନିର୍ଦ୍ଦେଶରେ ବଡ଼ବାବୁ ନବକୁମାରଙ୍କ ସାର୍ଟିଫିକେଟସବୁ ତନ୍ନ ତନ୍ନ କରି ଦେଖିଲେ ଓ ତାଙ୍କୁ ଗୋଡ଼ରୁ ମୁଣ୍ଡଯାଏଁ ଥରକୁ ଥର କରି ନିରେଖି କରି ଗୃହିଁଲେ । ନବକୁମାରଙ୍କ ପ୍ୟାଣ୍ଟ ପ୍ରଭୃତି ମଇଳା ହୋଇଯାଇଥିବାରୁ ସେ ଖଣ୍ଡିଏ ଖଦଡ଼ ଧୋତି ଓ ସାର୍ଟ ପିନ୍ଧି ଯାଇଥିଲେ ।

ବଡ଼ବାବୁ ତାଙ୍କର ଝଟାଉଡ଼ ପୋଷାକ ଦେଖି ନାସା କୁଞ୍ଚନ କଲେ; କିନ୍ତୁ ପୋଷାକ ବିଷୟ କିଛି ପ୍ରକାଶ ନକରି ପଚାରିଲେ "ତୁମେ ପରେଇ ଗ୍ରାଜ ଭାବରେ କାହିଁକି ପରୀକ୍ଷା ଦେଇଥିଲ, କେଉଁ ସ୍କୁଲରେ ଆଗରୁ ପଢ଼ୁଥିଲ, ସେ ସ୍କୁଲ କାହିଁକି ଛାଡ଼ିଲ, ତୁମର ମାଟ୍ରିକ୍ ପାଶ୍ କରିବାକୁ ଏତେ ବର୍ଷ କାହିଁକି ଲାଗିଲା ?"

ନବକୁମାର କିଛି ଉତ୍ତର ନଦେଇ ଚୁପ୍ ହୋଇ ରହିବାରୁ ସାହେବ କ'ଣ ବୁଝିଲେ କେଜାଣି ମୁଣ୍ଡ ହଲାଇ 'ହଉ, କାଲିକି ଆସିବ' ବୋଲି କହି ବିଦାୟ ଦେଇ ନିଜେ ଚଉକିରୁ ଉଠି ଚାଲିଗଲେ। ବାଟରେ ଫେରିବାବେଳେ ସାହେବଙ୍କ ପରିଚୟ ଓ ତାଙ୍କ ଖାମଖିଆଲି ଚଙ୍ଗ ବିଷୟରେ ଠିକାଦାର ବହୁତ କଥା ଗପି ଗପି ଚାଲିଲେ।

ସେ ସାହେବ ଏବେ କମ୍ପାନୀର ମ୍ୟାନେଜର। ସେ ସେହି କମ୍ପାନୀର ମାଲିକଙ୍କର ପୁଅ, ତାଙ୍କ ନାମ ଜୋନ୍ସ। ତାଙ୍କ ଜନ୍ମ ଏହି ଦେଶରେ, କିନ୍ତୁ ତାଙ୍କ ମାଆଙ୍କୁ ଏ ଦେଶ ଭଲ ନଲାଗିବାରୁ ସେ ବିଲାତରେ ରହିଲେ। ମଝିରେ ମଝିରେ ବର୍ଷ ଅଧକରେ ବଡ଼ ସାହେବଙ୍କ ପାଖକୁ ଆସି ମାସେ ପନ୍ଦର ଦିନ ରହି ଫେରି ଯାଉଥିଲେ। ଜୋନ୍ସ ଅଠ ବିଲାତରେ ମାଆଙ୍କ ପାଖେ ବିଲାତରେ ରହୁଥିଲେ; କିନ୍ତୁ ଟିକିଏ ବଡ଼ ହେବା ପରେ ତାଙ୍କ ବାପା ତାଙ୍କୁ ଆଣି ବରାବର ପାଖରେ ରଖିଲେ। ମାଆ ସେଥିରେ ବିରକ୍ତ ହୋଇ, ବଡ଼ ସାହେବଙ୍କୁ ଛାଡ଼ପତ୍ର ଦେଇ, ଅନ୍ୟତ୍ର ବିବାହ କରି ସବୁଦିନ ପାଇଁ ବିଲାତରେ ରହିଲେ।

ଜୋନ୍ସ ପଢ଼ାପଢ଼ିରେ ମନ ନଦେଇ ଅଧିକାଂଶ ସମୟରେ ମଦ ପିଇ ମାତାଲ ଥାଆନ୍ତି। ଦେଶୀ ଲୋକଙ୍କୁ ସନ୍ଦେହ ଚକ୍ଷୁରେ ଦେଖନ୍ତି ଓ ଘୃଣା କରନ୍ତି। ଅଫିସକୁ କମ୍ ସମୟ ଆସନ୍ତି, ବାକି ସମୟତକ ଘୋଡ଼ାଚଢ଼ି ବୁଲୁଥାଆନ୍ତି। ରାସ୍ତା ଉପରେ କୁଲିଶ୍ରେଣୀୟ ଲୋକଙ୍କୁ ଦେଖିଲେ ବିନାକାରଣରେ ଚାବୁକଟାଏ ମାରି ହସି ହସି ଘୋଡ଼ା ଦଉଡ଼ାଇ ଚାଲି ଯାଆନ୍ତି। ତାଙ୍କ ଲୋକଙ୍କଦ୍ୱାରା ସ୍ତ୍ରୀ ଓ ଝିଅଙ୍କୁ ଉଠାଇ ନେଇ ପାଶବିକ ଅତ୍ୟାଚାର କରି କିଛି ପଇସା ଦେଇ ଛାଡ଼ିଦେବା ତାଙ୍କର ଅଭ୍ୟାସ। ତାଙ୍କ ବାପା ଏସବୁ ଶୁଣି ତାଙ୍କୁ ବିବାହ କରାଇଦେବାକୁ ଯେତେ ଚେଷ୍ଟାକଲେ ସେ ମଙ୍ଗୁନାହାନ୍ତି। ମ୍ୟାନେଜର ଭାବରେ ତାଙ୍କ ବ୍ୟବହାର ମଧ୍ୟ ଅଦ୍ଭୁତ ଧରଣର। କିଏ କାମ ନକରି କେବଳ ଖୋସାମତ ବଳରେ ପୁରସ୍କାର ପାଉଛି ତ କିଏ ଅଣ୍ଟାଭଙ୍ଗା ପରିଶ୍ରମ କରି ଜୋରିମାନା ଦେଉଛି। ଭଲଲୋକେ ତାଙ୍କ ପାଖଆଖ ମାଡ଼ିବାକୁ ଡରନ୍ତି। କେତେବେଳେ ସାମନାରେ ପଡ଼ିଯିବାର ସମ୍ଭାବନା ଥିଲେ ବାଟଭାଙ୍ଗି ଚାଲିଯାଆନ୍ତି।

ଠିକାଦାର ପୁଣି କହିଲେ—କିରାଣୀ ଚାକିରି ଖାଲିଥିବାର ଶୁଣି ମୁଁ ଆମର ଦରକାର ପଡ଼ୁଛି ବୋଲି ତୁମକୁ ନେଇ ତାଙ୍କ ପାଖକୁ ଗଲି, ନହେଲେ ତାଙ୍କଠାରୁ ସବୁବେଳେ ଦୂରେଇକରି ରହିବା ଭଲ। ଚାକିରି କମ୍ବା ଠିକାକାମ ପ୍ରଭୃତି ତାଙ୍କହାତରୁ ମିଳିବ କି ନାହିଁ ଜାଣିବା କଷ୍ଟ। ସେ କାହାକୁ ଧରିଆଣି ଚାକିରି ଦେବେ ତ ଅନ୍ୟ କାହାକୁ ହଠାତ୍ ଗୋଇଠାମାରି ଚାକିରିରୁ ବାହାର କରିଦେବେ। ଅନେକ ସମୟରେ ବଡ଼ବାବୁଙ୍କୁ

ଅଣ୍ଟାଗୁଣ୍ଡା ଦେଲେ ଚାକିରି ମିଳେ; କିନ୍ତୁ ଅଣ୍ଟାଗୁଣ୍ଡା ଦେଇକରି ବି ସାହେବଙ୍କ ଖିଆଲ ଯୋଗୁ ଲୋକେ ଚାକିରି ନପାଇ ଫେରନ୍ତି ।

ଏବେ କେତେ ଦିନ ତଳେ ଅନ୍ୟ କମ୍ପାନୀର ଜଣେ ପୁରୁଣା ହିସାବ ରଖିଜାଣିବା କର୍ମଚାରୀଙ୍କୁ ବେଶି ଦରମା ମିଳିବା ଆଶା ଦେଇ କିଛି ଅଣ୍ଟାଗୁଣ୍ଡା ଆଦାୟ କରିବା ପରେ ବଡ଼ବାବୁ ଡକାଇ ଆଣିଲେ । ସେ ନିଜର ଚାକିରିଟି ଛାଡ଼ି ବଡ଼ବାବୁଙ୍କ କଥାରେ ମ୍ୟାନେଜର ସାହେବଙ୍କୁ ଆସି ଦେଖାକଲେ । ତାଙ୍କୁ ଦେଖିବା କ୍ଷଣି ତାଙ୍କ ମୁହଁର ଦାଢ଼ିକୁ ଦେଖି ସାହେବ ନାଗସାପ ପରି ଗର୍ଜିଉଠିଲେ । ସେ ଚପରାଶିକୁ ଡାକି କହିଲେ—ଏହାକୁ ଶୀଘ୍ର ବାହାରକୁ ନେଇଯାଅ । ବଡ଼ବାବୁ କାନ କୁଣ୍ଡାଇ କୁଣ୍ଡାଇ କହିଲେ—ଆମର ଜଣେ ହିସାବ ରଖିବା-ବାଲା ଦରକାର । ସେ ଭଲ ହିସାବ ଜାଣନ୍ତି । ସେ କଥା ଶୁଣି ସାହେବ ହୁକୁମ ଦେଲେ—ହଉ, ତାଙ୍କ ଦାଢ଼ି କଟାଇ ତାଙ୍କୁ ଘେନିଆସ ।

ଚପରାଶିଟି ଗୋଟିଏ ବାରିକ ଡାକିଆଣିଲା । ତାଙ୍କ ଦାଢ଼ି ଚଞ୍ଚାହେଲା । ସେ ଦାଢ଼ି କାଟି ଅଫିସ ଭିତରେ ପଶିବାବେଳେ ସାହେବ ତାଙ୍କ ମୁହଁକୁ ଚାହିଁବା କ୍ଷଣି ତାଙ୍କର ବାହାରକୁ ବାହାରିଥିବା କଳା କଳା ପାନଖିଆ ଦାନ୍ତ ଦୁଇଧାଡ଼ି ଉପରେ ତାଙ୍କ ଦୃଷ୍ଟି ପଡ଼ିଗଲା । ସେ ପୁଣି ରାଗିଯାଇ ହୁକୁମ ଦେଲେ—ଯାଅ, ଦାନ୍ତ ଉଠାଇ ଧଳାଦାନ୍ତ ଲଗାଇ ଆସ, ନଚେତ୍ ଏ ଅଫିସରେ ପ୍ରବେଶ କରିପାରିବ ନାହିଁ ।

ବିଚାରା ଭଦ୍ରଲୋକ ପୁରୁଣା ଚାକିରି ଛାଡ଼ି ବେଶି ଟଙ୍କା ଆଶାରେ ନୂଆ ଚାକିରି କରିବାକୁ ଆସିଛନ୍ତି । ବେକାରରେ ଆଠଜଣ କୁଟୁମ୍ବ ବସିବା । ଦରମା ଘରଖର୍ଚ୍ଚକୁ ଅଣ୍ଟୁନି ନାହିଁ ବୋଲି ତ ଏଠାକୁ ଆସିବାର ସ୍ଥିର କଲେ । ଏବେ ଆଉ ଉପାୟ କ'ଣ ? ସାହେବ, ବଡ଼ବାବୁଙ୍କ ଅ ନୟ ବିନୟ କିଛି ଶୁଣିବାକୁ ପ୍ରସ୍ତୁତ ନଥିବାରୁ ସେ ଡାକ୍ତରଖାନାରେ ଦାନ୍ତ ଉପାଡ଼ି ଚୀନା ଦାନ୍ତବାଲା ପାଖରେ ନୂଆ ଦାନ୍ତ ବସାଇ କିଛିଦିନ ପରେ ଆସିଲେ । ତାଙ୍କର ବହୁଦିନର ଅଭ୍ୟାସ ପାନଖିଆ ମଧ୍ୟ ଛାଡ଼ିବାକୁ ପଡ଼ିଲା । ସେ ମନେ ମନେ ଭାବିଲେ—ଏତେ ଦିନ ହେଲା ଅଭାବରେ ଛଟପଟ ହେଲଣି, ତାଙ୍କ ସ୍ଥାନରେ ବି ଅନ୍ୟଲୋକ ରହିଯାଇଲେଣି । ତଥାପି ଚାକିରି ମିଳି ଦୁଃଖ କଟିବା ଆଶାରେ ସେ ପୁଣି ସାହେବଙ୍କୁ ଦେଖାକଲେ ।

ଅଭାବରୁ ପେଣ୍ଟ କାମା ତଇଯାଇଥିଲା, ସେ ଧୋତି ଶାର୍ଟ ପିନ୍ଧି ଆସିଥିଲେ । ତାଙ୍କୁ ସାହେବ କହିଲେ—ଏ ଅଭଦ୍ର ପୋଷାକରେ କାହିଁକି ଆସିଛ, ଅଫିସକୁ ହାଫ୍‌ପେଣ୍ଟ ପିନ୍ଧି ଆସିବାକୁ ହୁଏ, ଯାଅ ହାଫ୍‌ପେଣ୍ଟ ପିନ୍ଧି ଆସ ।

ସେ ଧାରଉଧାର କରି ହାଫ୍‌ପେଣ୍ଟ ତିଆରି କରାଇ ପିନ୍ଧି ଆସିଲେ । ତାଙ୍କୁ ହୁଏତ ସାହେବଙ୍କ ଆଉ କେଉଁ ଖିଆଲରେ ଫେରିବାକୁ ପଡ଼ିଥାଆନ୍ତା । ଏହା ଭିତରେ ହିସାବ ରଖିବା କର୍ମଚାରୀ ଅଭାବରୁ କାର୍ଯ୍ୟାଳୟର କାର୍ଯ୍ୟ ଅଚଳ ହେବାକୁ ଆସିବା କଥା ବଡ଼ବାବୁ ବଡ଼ସାହେବଙ୍କ କାନରେ ପକାଇ ଦେଇଥିବାରୁ ବଡ଼ସାହେବ ସେ ସ୍ଥାନ ସାଙ୍ଗେ ସାଙ୍ଗେ

ପୂର୍ତ୍ତି କରିବାକୁ କ'ଣ ଆଦେଶ ଦେଇଥିଲେ, ତେଣୁ ସେ ସେଥର ନଫେର ଗୃହକାର୍ଯ୍ୟ ଖଣ୍ଡେ ପାଇଲେ ।

ଠିକାଦାର ନବକୁମାରଙ୍କୁ କହିଲେ—ଯଦି ଗୃହକାର୍ଯ୍ୟ ପାଇଁ ଆସିଛ ତେବେ ଧୈର୍ଯ୍ୟ ହରାଅ ନାହିଁ । ସ୍ଥାନ ଖାଲି ଅଛି । ପାଠପଢ଼ୁଆ ଲୋକ ତ ଆସି ଏ ମଶାମାଛିଙ୍କ ଜଙ୍ଗଲରେ ପଡ଼ିରହିବାକୁ ଚାହୁଁନାହାନ୍ତି । ସାହେବଙ୍କୁ ତ ଲୋକ ମିଳୁନାହାନ୍ତି—କେତେଦିନ ବା ସେ ସ୍ଥାନ ଖାଲି ରହିବ ? ତେଣୁ ସେ ତୁମକୁ ନିଶ୍ଚୟ ଦେବେ ବୋଲି ମୋର ବିଶ୍ୱାସ । ତୁମ ଚନ୍ଦ୍ରଭାଇଙ୍କ ଘରଟି ଶ୍ରେଷ୍ଠ । ତୁମେ ମୋ ଘରେ ଆସି ରହ । ମୁଁ ତୁମର ଖାଇବାପିଇବାର ବ୍ୟବସ୍ଥା କରିବି । ଗୃହକାର୍ଯ୍ୟ ମିଳିବା ପର୍ଯ୍ୟନ୍ତ ବସିବାଠାରୁ କାଟିବା ଭଲପରି ମୋର ଠିକା କୁଲିମାନଙ୍କ କାମ ତୁମେ ଟିକିଏ ଦେଖାଶୁଣା କରିବ । ଯେତେବେଳେ ହେଲେ ଗୃହକାର୍ଯ୍ୟ ମିଳିବ, ସେଥିପାଇଁ ବ୍ୟସ୍ତ ହେଲେ ଚଳିବ ନାହିଁ ।

ଶାଶୁ ବୋହୂ ଦୁହେଁ ଦେଉଳକୁ ଯାଇ ଯେପରି ନିଜ ନିଜର ଶୁଭମନାସି ଖୁସି ହୋଇ ଫେରନ୍ତି, ସେହିପରି ନବକୁମାରଙ୍କୁ ଗୃହକାର୍ଯ୍ୟ ନମିଳିବାରେ, ମାଗଣାରେ ଗୋଟିଏ ସାହାଯ୍ୟକାରୀ ମିଳିବା ଆଶାରେ ଠିକାଦାର ମନେ ମନେ ଖୁସି ହେଉଥାଆନ୍ତି । ନବକୁମାରଙ୍କୁ ବୋଧଦେବା ବାହାନାରେ ବିନା ଦରମାରେ ଜଣେ ସହକାରୀ ଯୋଗାଡ଼ ଉଦ୍ଦେଶ୍ୟରେ ଗପି ଗପି ଚାଲିଆଆନ୍ତି ।

ନବକୁମାରଙ୍କ ମନ ଅନ୍ୟଆଡ଼େ ଥାଏ । ଠିକାଦାରଙ୍କ କଥା ତାଙ୍କର ଏ କାନରେ ପଶି ସେ କାନରେ ବାହାରି ଯାଉଥାଏ । ବଡ଼ବାବୁ ଯେପରି ସନ୍ଦେହ ଚକ୍ଷୁରେ ଚାହିଁଲେ ଆଉ ଟିକକରେ ସେ ଷଡ଼୍‌ଯନ୍ତ୍ରୀ ବୋଲି ଧରାପଡ଼ିଯାଇଥାନ୍ତେ । ଅଳ୍ପକେ ରକ୍ଷାପାଇ ଯାଇଥିବାରୁ ମନେ ମନେ ଖୁସି ହେଉଥାଆନ୍ତି ।

ଠିକାଦାରଙ୍କର ଅବୈତନିକ ସହକାରୀ ହେବାର ସୌଭାଗ୍ୟ ଲଭକରି ସେ ନିଜକୁ ଧନ୍ୟବାଦ ଦେଲେ । ସାହେବଙ୍କର ଖିଆଲ ଢଙ୍ଗ, ଦେଶୀ ଲୋକଙ୍କର ଦଯ୍ନୀୟ ଅବସ୍ଥା ଓ ନିଜ ପ୍ରଦେଶର କଥା ଭାବି ତାଙ୍କ ମନ ବିଦ୍ରୋହ କରିଉଠୁଥାଏ । ସେ ଭାବିଲେ, ସହକାରୀ ଭାବରେ ସେ କୁଲିମାନଙ୍କ ସାଙ୍ଗେ ଖୋଲଖୋଲି ଭାବରେ ମିଶିବାର ସୁଯୋଗ ପାଇବେ । ସେମାନଙ୍କ ଭିତରେ ଏକତ୍ୱ ଜନ୍ମାଇ ସଂଗଠନଦ୍ୱାରା ସାହେବଙ୍କ ଶୋଷଣ ଓ ଅତ୍ୟାଚାର ବନ୍ଦକରି ତାଙ୍କ ଖିଆଲର ପ୍ରତିଶୋଧ ନେଇପାରିବେ ।

ସେ ଠିକାଦାରଙ୍କ ସଙ୍ଗେ ଚା' ବଗିଚାକୁ ଯାଆନ୍ତି । ସ୍ତ୍ରୀ ପୁରୁଷ କୁଲିମାନେ ସମସ୍ତେ କଅଁଳ ଚାହାପତ୍ର ସଂଗ୍ରହରେ ବ୍ୟସ୍ତ ଥାଆନ୍ତି । ପତ୍ର ତୋଳୁ ତୋଳୁ କିଏ ଟିକିଏ ଧିମେଇଗଲେ ଠିକାଦାର ପାଟିକରି ଉଠେ ।

ସନ୍ଧ୍ୟାବେଳକୁ 'ଚାହା' ପତ୍ର ସବୁ ମାପକରି ଠିକାଦାର ରଖିନିଏ ଓ ସେଇ ମାପ ଅନୁସାରେ ମଜୁରି ବା 'ନିରେଖ' ଦିଏ । ଏହି ମାପ ଓ ମଜୁରି ଲେଖାରେ ଭୁଲଭାଲ କରାଇ ଓ କମ୍ ଲେଖାଇ କୁଲିମାନଙ୍କୁ ଠକେ । ସେ ପତ୍ରସବୁ ଏକାଠି କରି ଗୋଦାମକୁ ନେଇ

ଓଜନ କରାଇ ଗୋଦାମରେ ଜମା ଦେଲା ବେଳକୁ ତା'ର ବେଶ୍ ଦୁଇପଇସା ଅଧିକା ଲାଭ ହୁଏ । ସେଠାରେ କୁଲିମାନେ ମଜୁରୀକୁ 'ନରେଖ' ବୋଲି କହନ୍ତି । ବୋଧହୁଏ ଦିନଯାକ ହାଡ଼ଭଙ୍ଗା ପରିଶ୍ରମ କରି ମିଳିଥିବା ଦୁଇଅଣା ଚାରିଅଣାର ମଜୁରୀକୁ ନରେଖି କରି ତାଙ୍କ ହାଲୁକ ଶୁଖିଯାଉଥିବାରୁ ଏପରି ନାମ ଦେଇଥିବେ । ନବକୁମାର ସବୁ ଜାଣନ୍ତି, କିନ୍ତୁ ନଜାଣିଲା ପରି ଥାଆନ୍ତି । ଠିକାଦାରଙ୍କୁ ଉପରେ କିଛି କହନ୍ତି ନାହିଁ; କିନ୍ତୁ କୁଲିମାନଙ୍କୁ ଗୁପ୍ତରେ ସତର୍କ କରାଇଦିଅନ୍ତି । ରାତିରେ କୁଲିମାନଙ୍କ ଘରକୁ ଯାଇ ସେମାନଙ୍କ ସୁଖ ଦୁଃଖ ବୁଝନ୍ତି । ଏପରି କେତେଦିନ ଯିବାପରେ ସେ କୁଲିମାନଙ୍କର ଅତି ଆପଣାର ହୋଇପଡ଼ିଲେ । ନିର୍ଜୀବ କୁଲିମାନଙ୍କ ଭିତରେ ଧୀରେ ଧୀରେ ପ୍ରାଣ ସଞ୍ଚାର ହେଲା ଓ ସେମାନେ ଆସ୍ତେ ଆସ୍ତେ ସଂଗଠିତ ହେବାକୁ ଲାଗିଲେ । ଜଣକ ପ୍ରତି କୌଣସି ଅନ୍ୟାୟ ହେଲେ ଅନ୍ୟମାନେ ପ୍ରତିବାଦ କରି ଶିଖିଲେ ।

ଠିକାଦାରଙ୍କର ଠକାଠକିରେ ମଧ୍ୟ ଅସୁବିଧା ହେଲା । ଠିକାଦାର ତାଙ୍କୁ ସନ୍ଦେହ କରି ସେ ଦେଇଥିବା ଘର ତାଙ୍କର ଦରକାର ଅଛି ଓ ସେଠାରୁ ଚାଲିଯିବା ପାଇଁ ତାଙ୍କୁ କହିଲେ । ଚନ୍ଦ୍ର ପ୍ରଧାନ ଦିନକୁ ଦିନ ତାଙ୍କ ପ୍ରତି ବେଶି ଆକୃଷ୍ଟ ହେଉଥିଲେ । ସେ ତାଙ୍କୁ ସାଙ୍ଗରେ ନେଇ ତାଙ୍କଘରକୁ ଲାଗିଥିବା ଗୁଳିଆଟିକି ସଜଡ଼ାସଜଡ଼ି କରି ସେଥିରେ ରଖାଇଲେ ଓ ଘରେ ଖାଇବାର ବ୍ୟବସ୍ଥା କଲେ ।

ସେ ଠିକାଦାରଙ୍କ ସାହାଯ୍ୟକାରୀ ପଦରୁ ନିଷ୍କୃତି ପାଇବା ପରେ କୁଲି ପୋଷାକ ପିନ୍ଧି ଦିନ ମଜୁରିଆ ଭାବରେ କୁଲିଙ୍କ ସଙ୍ଗେ ଯାଇ କାମ କଲେ ।

ଚନ୍ଦ୍ର ପ୍ରଧାନ ଅବିବାହିତ । ତାଙ୍କ ସଂସାରରେ ସେମାନେ ମାତ୍ର ଦୁଇଜଣ, ସେ ଓ ତାଙ୍କର ସାନଭଉଣୀ ଶରଧା । ଭଉଣୀଟି ଗାଁରେ ବାପ ମା'ଙ୍କ ପାଖରେ ରହି ଷଷ୍ଠ ଶ୍ରେଣୀରେ ପାଠପଢ଼ୁଥିଲା । ବାପ ମା' ଦୁହେଁ ପୁରୀ ରଥଯାତ୍ରା ଦେଖିବାକୁ ଯାଇ ହଇଜାରେ ଆକ୍ରାନ୍ତ ହୋଇ ସ୍ୱର୍ଗାରୋହଣ କଲେ । ସେ ଦୁଃସମ୍ବାଦ ପାଇ ଚନ୍ଦ୍ର ଛୁଟିନେଇ ଗାଁକୁ ଗଲେ ।

ଚନ୍ଦ୍ର ଚାଷୀଘରର ପିଲା ହୋଇ ଜନ୍ମ ହୋଇଥିଲେ । ଗଞ୍ଜାମର ଭଞ୍ଜନଗର ପାଖରେ ତାଙ୍କ ଘର । ବାପ ମା' କୃଷିବାସ କରି ଖୁବ୍ ଭଲରେ ଚଳୁଥିଲେ; କିନ୍ତୁ ଲାଗ ଲାଗ ବର୍ଷ ବର୍ଷ ଧରି ଖରାପୋଡ଼ା ବା ମରୁଡ଼ି ଲାଗିରହିବାରୁ କୁଣ୍ଡା ଗୋଟାଏ ବି ଜମିରେ ଗଜୁରିଲା ନାହିଁ । ଗଚ୍ଛିତ ଧାନ ଓ ଧନ ସରି ସେମାନେ ସାହୁକାରଠାରୁ ଆଣିଥିବା କରଜରେ ବୁଡ଼ିରହିଲେ । ଜମିବାଡ଼ି ନିଲାମ ହେଲା । ଅବସ୍ଥା ଅତି ଖରାପ ହେବାରୁ ଚନ୍ଦ୍ର ଚାକିରି ଖୋଜି ବୁଲିଲେ ।

ଚନ୍ଦ୍ର ଛାତ୍ର ହିସାବରେ ବିଶେଷ ମେଧାବୀ ନଥିଲେ । ବହୁ ଚେଷ୍ଟା କରି ମାଟ୍ରିକ ଖଣ୍ଡିକ ମଧ୍ୟ ପାଶ୍ କରି ପାରିନଥିଲେ । ପାଖ ଆଖ ସହରମାନଙ୍କରେ ତାଙ୍କୁ କୌଣସି ଚାକିରି ମିଳିଲା ନାହିଁ । ଚାକିରି ପାଇଁ ବୁଲୁ ବୁଲୁ ସେ ଅଞ୍ଚଳର ଜଣେ ଠିକାଦାରଙ୍କ ସଙ୍ଗେ ଦେଖାହେଲା । ସେ ଦଳ ଦଳ କରି ଲୋକ ସଂଗ୍ରହ କରି କୁଲି କାମ ପାଇଁ ଆସାମ ଚାହା ବଗିଚାକୁ ପଠାଉଥିଲେ ।

ଠିକାଦାରଙ୍କ ଆଗ ଦାନ୍ତ ଗୁଡ଼ିକ ସୁନାରେ ଛୁଆଣି । ହାତର ଆଙ୍ଗୁଠି ଗୁଡ଼ିକ ସୁନା ମୁଦିରେ ଭର୍ତ୍ତି । ବେକରେ ମୋଟସୁତିଆ ସୁନା ଚେନ୍, ହାତରେ ଦାମିକା ଘଣ୍ଟା, ସେ ଆଧୁନିକ ଧରଣର ପୋଷାକ ପିନ୍ଧିଥାଆନ୍ତି । ଠିକାଦାରଙ୍କ ସଙ୍ଗେ କଥାବାର୍ତ୍ତା ହେବାପରେ ସେ ତାଙ୍କ ସଙ୍ଗେ ଆସାମ ବାହାରିଲେ । ଭାଗ୍ୟରେ ଥିଲେ ଦିନେ ତାଙ୍କ ଭଳି ବିଭବଶାଳୀ ହୋଇପାରିବେ ବୋଲି ଭାବିଲେ । ଠିକାଦାର କାମରେ ପାଠର ମଧ୍ୟ ବେଶି ପ୍ରୟୋଜନ ନାହିଁ ବୋଲି ସେ ଜାଣିଲେ, କାରଣ ଠିକାଦାର ନିଜେ କୌଣସି ସ୍କୁଲକୁ ଖଣ୍ଡେ ନେଇନଥିଲେ । ପ୍ରଥମେ କୁଲିକାମ କରିବାକୁ ଯାଇ ବୁଦ୍ଧି ବଳରେ ଠିକାଦାର ହୋଇପାରିଛନ୍ତି ।

ଠିକାଦାର ମଧ୍ୟ ତାଙ୍କୁ ବହୁତ ଆଶା ଦେଇ କହିଲେ—ଆସାମରେ କାମର ଅଭାବ ନାହିଁ, ସେ ଯିବା ସଙ୍ଗେ ସଙ୍ଗେ କାମ ପାଇବେ । ଭାଗ୍ୟରେ ଥିଲେ ତାଙ୍କ ଭଳି ଠିକାଦାର ହୋଇପାରିବେ ।

ଠିକାଦାରଙ୍କ କଥିତ କଥାରେ ଭୁଲି, ବାପ ମା'ଙ୍କୁ ବହୁତ ଆଶାଦେଇ, ସେମାନଙ୍କଠାରୁ ବିଦାୟ ନେଇ, ଠିକାଦାରଙ୍କ ଖର୍ଚ୍ଚରେ ସେ ବୃହା ବଗିଚାର ଠିକା କୁଲି ଭାବରେ ଯୋଗଦେଇଥିଲେ । ଠିକାଦାରଙ୍କ ଟଙ୍କା ଶୁଝିବାକୁ ଅନେକ ଦିନ ଲାଗିଲା । ସେ ମିତବ୍ୟୟୀ ଭାବରେ ଚଳି ନିଜର ପେଟରୁ କାଟି ବାପାଙ୍କ ପାଖକୁ କିଛି କିଛି ଟଙ୍କା ପଠାଉଥିଲେ ।

ବହୁବର୍ଷ ପରେ ମଧ୍ୟ ତାଙ୍କର ଭାଗ୍ୟ ନବଦଳି ସେ ସେଇ କୁଲି ହୋଇ ରହିଥିଲେ । ଭଉଣୀର ବଢ଼ିବା ବୟସ, ଗାଁରେ କେହି ଯାହା ଭରସା ନାହିଁ । ତେଣୁ ତାକୁ ଏକୁଟିଆ ଛାଡ଼ି ଆସିବା ସମ୍ଭବ ନଥିଲା । ଗାଁରେ ତାକୁ ହାତକୁ ଦୁଇହାତ କରିଦେଇ ଆସିବାକୁ ମଧ୍ୟ ଚେଷ୍ଟା କଲେ; କିନ୍ତୁ ତାଙ୍କ ପରି ନିଃସମ୍ବଳ ଲୋକ ଗୋଟିଏ ଭଲପାତ୍ର ଯୋଗାଡ଼ କରିବା ସମ୍ଭବ ହେଲନାହିଁ । ସେ ପାତ୍ର ଖୋଜି ଖୋଜି ଛୁଟି ସରିଯିବାରୁ ଭଉଣୀକୁ ନେଇ ଆସାମ ଲେଉଟି ଆସିଥିଲେ ।

ଶରଧା ଭାଇ ଚନ୍ଦ୍ରଙ୍କ ଭଳି ସରଳ ପ୍ରକୃତିର ଥିଲା; କିନ୍ତୁ ବଡ଼ ମେଧାବତୀ । ଚନ୍ଦ୍ର ପିତାମାତାଙ୍କ ଅର୍ଥ ପ୍ରାଚୁର୍ଯ୍ୟ ଭିତରେ ପିଲାଦିନ କଟାଇଥିଲେ; କିନ୍ତୁ ପିତାମାତାଙ୍କ ଅଭାବ ଶରଧା ଅଙ୍ଗେ ଲାଗିଛି । ଅଭାବ ଅନଟନ ଭିତରେ କିପରି ବଞ୍ଚିରହିବାକୁ ହୁଏ ସେ ସମ୍ବନ୍ଧରେ ସେ ଅଭିଜ୍ଞତା ଲାଭକରିଥିଲା ।

ସେ ଚନ୍ଦ୍ରଙ୍କ ସଙ୍ଗେ ଆସିବାପରେ ଭଲରେ ଘର ଚଳାଇ କିଛି ପଇସାପତ୍ର ବଳାଇ ଘରର ଆସବାବପତ୍ର ମଧ୍ୟ ବଢ଼ାଇଥିଲା । ଘର ଦ୍ୱାର ସବୁ ପରିଷ୍କାର ପରିଚ୍ଛନ୍ନ, ତା'ର ମୁହଁ ସବୁବେଳେ ହସ ହସ, ସେ ନିଜର କୌଣସି ଅସୁବିଧା ଭାଇକୁ ଜଣାଇଦିଏନାହିଁ ।

ଚନ୍ଦ୍ର କାମକୁ ଗଲାବେଳେ କୁଲିପଡ଼ାରେ ତାକୁ ଏକୁଟିଆ ଛାଡ଼ିଯିବା ପାଇଁ ତା' ଛାତି ଥରେଇଲା ନାହିଁ । ତାକୁ ଏକୁଟିଆ ଛାଡ଼ିଗଲେ ତା' ଛାତି ଦୁରୁ ଦୁରୁ ହୁଏ । ଶରଧା

ବଡ଼ ପରିଶ୍ରମୀ । ସେ ଭାଇର ଏ ଅବସ୍ଥା ଦେଖି ତାଙ୍କ ସଙ୍ଗେ ଯାଇ କୁଲିକାମ କରିବାକୁ ଭାଇକୁ ଅନୁରୋଧ କଲା । ଭାଇ ପ୍ରଥମେ ଅମଙ୍ଗ ହେଲେ ମଧ୍ୟ ତାକୁ ପାଖେ ପାଖେ ଆଖି ଆଗରେ ରଖିପାରିବେ ଭାବି ସେଥିରେ ସମ୍ମତି ପ୍ରଦାନ କଲେ ।

## ଏଗାର

ନବକୁମାର ଚନ୍ଦ୍ରଙ୍କ ଘରେ ରହିବା ପରେ ଭାଇ ଭଉଣୀ ଦୁହେଁ ତାଙ୍କର ଯତ୍ନ ନିଅନ୍ତି । ଶରଧା ତାଙ୍କୁ ନବଭାଇ ବୋଲି ଡାକେ ଓ ସମ୍ମାନକରେ । ନବକୁମାର ନାନା ପ୍ରକାର ବହି ଓ ଖବରକାଗଜ ସଂଗ୍ରହ କରି ଆଣି ପଢ଼ନ୍ତି । ଶରଧା ବୁଝିପାରିଲା ଭଳି ବହି ଓ ଖବରକାଗଜ ତାକୁ ପଢ଼ିବାକୁ ଦିଅନ୍ତି ଓ ବେଳେ ବେଳେ ସେ ବୁଝି ପାରିବା ଭଳି ଇଂରେଜୀ ବହିରୁ ବିଷୟ ସବୁ ତର୍ଜମା କରି ତାକୁ ବୁଝାଇଦିଅନ୍ତି ।

ଶରଧା ଚନ୍ଦ୍ର ଓ ନବଭାଇଙ୍କ ସହିତ କାମକୁ ଯାଏ । ଅଫିସର ଓ ସାହେବଙ୍କର ଯୁବତୀ ସ୍ତ୍ରୀମାନଙ୍କ ଉପରେ ଆଖି । ଶରଧା ସୁନ୍ଦର ଓ ଉଚ୍ଚଘରର ଝିଅ । ତା'ର ଚାଲିଚଳନ ମାର୍ଜିତ । ତେଣୁ ସେ ଅନ୍ୟ କୁଲିଆଣୀଙ୍କଠାରୁ ବାରି ହୋଇଯାଏ । ସେ ଶ୍ରେଷ୍ଠ ପ୍ରକୃତିର କଳାକାଣ୍ଡୋଇ ସାଧାରଣ କୁଲିଆଣୀଙ୍କ ସଙ୍ଗେ ମିଶିନପାରି ସେମାନଙ୍କଠାରୁ ଦୂରେଇ ହୋଇ ରହିବାକୁ ଚେଷ୍ଟାକରେ । କମ୍ପାନୀ କର୍ମଚାରୀଙ୍କ ସଙ୍ଗେ କେତେକ କୁଲିଆଣୀଙ୍କ ପରି ହେଁ ହେଁ ଫେଁ ଫେଁ ନହୋଇ ସେମାନଙ୍କୁ ଦେଖିଲେ ମୁଣ୍ଡପୋତି ନିଜ କାମ କରିବାରେ ଲାଗିଯାଏ ।

ଶରଧା ଘରକୁ ଫେରିଲେ ଘରକାମ ସାରି ପଢ଼ାପଢ଼ିରେ ଲାଗେ । ବେଳେ ବେଳେ ନବକୁମାର ଭାଇଭଉଣୀଙ୍କୁ ବସାଇ ଜାତି ଓ ଦେଶର ଦୁରବସ୍ଥା କଥା ବୁଝାନ୍ତି । ଗାନ୍ଧି ଆନ୍ଦୋଳନ, ସାମ୍ୟବାଦୀ ଆନ୍ଦୋଳନ, ବିପ୍ଳବୀ ଆନ୍ଦୋଳନ ଓ ବଡ଼ ବଡ଼ ନେତାଙ୍କ ବିଷୟ ଆଲୋଚନା କରନ୍ତି । ସେ ସବୁ ଶୁଣି ଶୁଣି ଶରଧା ଉଦ୍‌ବୁଦ୍ଧ ହୁଏ ଓ ଦେଶ କାମରେ ନିଜକୁ ନିୟୋଜିତ କରିବ ବୋଲି ମନେ ମନେ ସଙ୍କଳ୍ପ କରେ । ଝାନ୍‌ସୀ ରାଣୀ, ସରୋଜିନୀ ନାଇଡୁ ପ୍ରଭୃତିଙ୍କ ପ୍ରତିଛବି ତା' ଆଖି ଆଗରେ ନାଚି ଉଠେ ଓ ତା' ମନରେ ଗୋରା ସରକାର ପ୍ରତି ବିଦ୍ୱେଷ ଜାତହୁଏ ।

ଦିନେ କାମରୁ ଫେରିବାପରେ ଗୋଧୂଳି ସମୟରେ ଚନ୍ଦ୍ର, ଶରଧା ଓ ନବକୁମାର କୁଲିପଡ଼ା ଠାରୁ ଦୂରରେ ଥିବା ବଜାରଟିରୁ କିଛି ସଉଦା ଆଣିବା ପାଇଁ ବାହାରିଲେ । ଶରଧାର ଜନ୍ମଦିନ । ସେଦିନ ଚନ୍ଦ୍ର ଭଉଣୀକୁ ଶସ୍ତା କାନଫୁଲ ହଳେ ଉପହାର ଦେବାକୁ କଥା ଦେଇଥିଲା । ତା'ର ପସନ୍ଦ ମୁତାବକ କାନଫୁଲ ବାଛିବାକୁ ତାକୁ ସାଙ୍ଗରେ ବଜାରକୁ

ନେଉଥିଲି । ନବ ମଧ୍ୟ ଚନ୍ଦ୍ର ଓ ଶରଧାଙ୍କ ସାହାଯ୍ୟ ପାଇଁ କୃତଜ୍ଞତା ଜ୍ଞାପନ କରିବାକୁ ଶରଧାର ମନ ମୁତାବକ କିଛି ଶସ୍ତା ଗହଣା ଉପହାର ଦେବାକୁ ମନସ୍ଥ କରିଥିଲି ।

ବଜାରକୁ ଗଲାବେଳେ ସେମାନେ ଗପ କରି କରି ଯାଉଥାନ୍ତି । ଶରଧା ପଚାରିଲା—ଗାନ୍ଧିଙ୍କ କାମକୁ ତାଙ୍କ ସ୍ତ୍ରୀ 'କସ୍ତୁରୀ-ବା' କଅଣ ପୂରା ପ୍ରାଣରେ ପସନ୍ଦ କରନ୍ତି ? ତା'ର ଉତ୍ତରରେ ନବ କହିଲା—ଆମ ଧର୍ମରେ ପସନ୍ଦ ଅପସନ୍ଦର ପ୍ରଶ୍ନ କେଉଁଠି ଉଠୁଛି ? ସ୍ତ୍ରୀ ସ୍ୱାମୀର ଅନୁଗାମିନୀ । କସ୍ତୁରବା ଜଣେ ଆଦର୍ଶ ହିନ୍ଦୁ ନାରୀ ଭାବରେ ସ୍ୱାମୀଙ୍କର ଛାଇପରି କାଯ୍ୟ-ମନୋବାକ୍ୟରେ ସ୍ୱାମୀଙ୍କର ପଥ ଅନୁସରଣ କରନ୍ତି । ବିନା ଆପତ୍ତିରେ ଆଦେଶ ପାଳନ କରନ୍ତି । ସବୁବେଳେ ସ୍ୱାମୀଙ୍କ କାର୍ଯ୍ୟର ସଫଳତା ପାଇଁ ଶୁଭମନାସି ଭଗବାନଙ୍କୁ ପ୍ରାର୍ଥନା କରନ୍ତି । ଗାନ୍ଧି ସୂତା କାଟିଲେ ସେ ସୂତା କାଟନ୍ତି । ଗାନ୍ଧି ଜେଲ ଗଲେ ସେ ଜେଲ ଯାଆନ୍ତି । ଗାନ୍ଧି ଘରଦ୍ୱାର ଛାଡ଼ି ଆଶ୍ରମରେ ରହୁଛନ୍ତି । ସେ ମଧ୍ୟ ସମସ୍ତ ସଂସାର ଜଞ୍ଜାଳ ପଛରେ ଫିଙ୍ଗି ଦିଲାଦିଲ ଛାଡ଼ି ଗାନ୍ଧି ଆଶ୍ରମରେ ରହୁଛନ୍ତି । ହିନ୍ଦୁ ସ୍ତ୍ରୀ କେବଳ ଏ ଜନ୍ମରେ ସ୍ୱାମୀକୁ ପାଇ ସନ୍ତୁଷ୍ଟ ନୁହେଁ, ସେ ଜନ୍ମେ ଜନ୍ମେ ସେଇ ସ୍ୱାମୀକୁ ପାଇବାପାଇଁ କଠୋର ଉପାସ ବ୍ରତ ସବୁ କରେ, ସ୍ୱାମୀକୁ ଯମ ହାତରୁ ଖସାଇ ଆଣିଥିବା ସାବିତ୍ରୀଙ୍କୁ ପୂଜା କରେ ।

ସେ ସବୁ ଶୁଣି ଶରଧା ଗମ୍ଭୀର ହୋଇ କହିଲା—ନବଭାଇ, ତୁମେ ଆଦର୍ଶ ପଛରେ ଧାଇଁଛ । ସେଥିରେ ତ ଗୋଟିଏ ସ୍ଥାନରେ ସ୍ଥିର ହୋଇ ରହିପାରିବ ନାହିଁ । ଏଠାରୁ ହୁଏତ ଅନ୍ୟ କୁଆଡ଼େ ଚାଲିଯିବ । ସେତେବେଳେ ଆମକୁ କଅଣ ସାଙ୍ଗରେ ନେବନାହିଁ ? ଆମକୁ କଅଣ ପୂରା ଭୁଲିଯିବ ?

ନବକୁମାର ହୁଏତ ଶରଧାର ମନକଥା ଠଉରେଇ ପାରିଲା ନାହିଁ । ସେ କହିଲା—ବାଇଆଣୀ ପରି ଏମିତିଆ କଅଣ ଗୁଡ଼ାଏ ପଚାରୁଛୁ ? କିଏ କୁଆଡ଼େ ଯାଉଛି ? ଗଲାବେଳ କଥା ତ ଅଛି ସେତେବେଳେ କଅଣ ହେବ ଦେଖାଯିବ—ଆଜିଠାରୁ କାହିଁକି ତୋର ଏତେ ଚିନ୍ତା ? ତୁ କଅଣ ଭାଇମାନଙ୍କ ପାଖେ ସବୁବେଳେ ପଡ଼ିଥିବୁ । ଭଗବାନ କଲେ ବାହାହେଇ କାହା ଘରକୁ କଅଣ ଯିବୁନାହିଁ ? ଏହା ଶୁଣିବା କ୍ଷଣି ଶରଧା ଉଦ୍‌ବେଗରେ କହି ଉଠିଲା, "ନାଁ, ନାଁ, ମୁଁ ତୁମକୁ ଛାଡ଼ି ଅନ୍ୟ କୁଆଡ଼େ ଯିବାକୁ ଚାହେଁନାହିଁ ।"

ସେମାନେ କଥା ହେଉ ହେଉ ଆସି ବଜାର ପାଖରେ ପହଞ୍ଚିଲେ । କଥାବାର୍ତ୍ତା ବନ୍ଦ ହୋଇଗଲା । ସେମାନେ ବଜାରରେ ଜିନିଷପତ୍ର ଦେଖି ଦେଖି ଦୋକାନକୁ ଦୋକାନ ବୁଲିଲେ । ସେ ଦୋକାନଗୁଡ଼ିକ ବି କମ୍ପାନି ଜମାଦାର ପ୍ରଭୃତି ଲୋକଙ୍କର । ସେମାନେ କୁଲିମାନଙ୍କୁ ଦୁଇପଇସାର ଜିନିଷ ସବୁ ଦୁଇଅଣାରେ ବିକନ୍ତି । ପାଖଆଖରେ ଆଉ ଦୋକାନ ବଜାର ନଥିବାରୁ ସେମାନଙ୍କ ଜିନିଷପତ୍ରର ଦାମ୍ ଅତ୍ୟଧିକ ହେଲେ ମଧ୍ୟ କୁଲିମାନଙ୍କର ସେଠାରୁ ନକିଣି ଅନ୍ୟ କେଉଁଠାରୁ କିଣିବାର ଉପାୟ ନଥାଏ । ଶରଧା ବାଛିବା ଅନୁସାରେ ତା' ପାଇଁ ଚନ୍ଦ୍ର ଦୁଇଟି ସୁନାପରି ଚକ୍ ଚକ୍ କରୁଥିବା ପଥରବସା କାନଫୁଲ କିଣିଦେଲେ । ସେ ସଙ୍ଗେ ସଙ୍ଗେ ତାକୁ କାନରେ ପିନ୍ଧିପକାଇଲା । ସେ ଦୁଇଟି ତା ମୁହଁକୁ ବଡ଼ ମାନିଲା ।

ନବକୁମାର କଅଣ ଦେବେ ଭାବୁଛନ୍ତି, ଶରଧା ଗୋଟିଏ କାଚ ଦୋକାନର ନବାଗ୍ତ ପାଣିକାଚକୁ ଦୃଷ୍ଟି ରଖିବାର ଦେଖି ସେ ତା'ର ହାତକୁ ହେବାଭଳି ଦୁଇମୁଠା କାଚ କିଣିଦେଲେ । ସେଠାରେ ପିନ୍ଧାଇବା ଲୋକଟି ନଥିବାରୁ ଶରଧା ତାକୁ ପିନ୍ଧିବାକୁ କହିବାରୁ ନବକୁମାର ସେଗୁଡ଼ିକ ଶରଧାକୁ ପିନ୍ଧାଇଦେଲେ । କାଚ ପିନ୍ଧିବାବେଳେ ତା' ଦେହରେ ଶିହରଣ ଖେଳିଗଲା । ସେ ଲାଜେଇଗଲା; କିନ୍ତୁ କଥାରେ କିଛି ପ୍ରକାଶ କଲାନାହିଁ ।

କଣାକଣି ସନ୍ଧ୍ୟାବେଳକୁ ମୁହିଁସଞ୍ଜ ହୋଇ ଅସିଲାଣି । ସେମାନେ ଫେରିବାକୁ ଉଦ୍ୟତ ହେଲେ । ନବକୁମାରଙ୍କ ଗୁପ୍ତ ସଂଗଠନ କାର୍ଯ୍ୟ ଅନ୍ୟ ବୃହୀ ବଗିବ୍ରମାନଙ୍କୁ ବ୍ୟାପୁଥାଏ । ସେଠାର କର୍ମୀମାନେ ଦିବ୍ରୁଗଡ଼ ସହରରେ ଏକଜୁଟ ହୋଇ ବେଳେ ବେଳେ ତାଙ୍କ ସଙ୍ଗେ ଆଲୋଚନା କରନ୍ତି । ସେପରି କେତେକ କର୍ମୀଙ୍କ ସଙ୍ଗେ ସେଦିନ ତାଙ୍କର ସାକ୍ଷାତ କରିବା ପାଇଁ ଆଗରୁ ଠିକ୍ ହୋଇଥିଲା । ସେ ଶରଧା ଓ ଚନ୍ଦ୍ରକଙ୍କଠାରୁ ବିଦାୟ ନେଇ ଦିବ୍ରୁଗଡ଼ ଅଭିମୁଖେ ଯାତ୍ରାକରି ସକାଳେ ବସାକୁ ଫେରିବେ ବୋଲି ଜଣାଇଲେ ।

ଦିବ୍ରୁଗଡ଼ ମାଡ଼ୁଆଡ଼ିପଟି ବଜାରର ଗୋଟିଏ ମାଲ୍‌ଗୋଦାମ ଘରେ ସମସ୍ତେ ଏକଜୁଟ ହେବାର କଥା ହୋଇଥିଲା । ସେ ସେଠାରେ ସେମାନଙ୍କ ସଙ୍ଗେ ଆଲୋଚନା କରିବା ପରେ ବ୍ରହ୍ମପୁତ୍ର ନଦୀକୂଳରେ ଯାଇ ବସିଲେ । ଚନ୍ଦ୍ରପକ୍ଷ ରାତି । ଜ୍ୟୋତ୍ସ୍ନା ଆଲୋକରେ ବ୍ରହ୍ମପୁତ୍ର ନଦୀର ସୁବିସ୍ତୃତ ବାଲୁକାମୟ ବକ୍ଷ ହୀରାଖଚିତ ଗାଲିଚ୍ଛ ପରି ଚକ୍ ଚକ୍ କରି ଉଠୁଛି । ନଦୀଟି ଦୁଇକୂଳ ଖାଇ ଖାଇ ତା'ର କାୟା ଏତେଦୂର ବିସ୍ତାର କରିଛି ଯେ ସେଥିରେ ପୁରୁଣା ଦିବ୍ରୁଗଡ଼ ସହରରୁ ଖଣ୍ଡେ ମଧ୍ୟ ଲୀନ ହୋଇଗଲାଣି । ନଦୀର ଆର କୂଳକୁ ଆଖି ପାଉନାହିଁ ।

ନବକୁମାର ଭାବିଲେ ଏଇ ବ୍ରହ୍ମପୁତ୍ର ଗଙ୍ଗା ଯମୁନା ସିନ୍ଧୁ ପ୍ରଭୃତି ନଦନଦୀମାନେ ଯୁଗ ଯୁଗ ଧରି ହିମାଳୟରୁ ମାଟି ଧୋଇଆଣି ଉର୍ବର ଭାରତ ଭୂଖଣ୍ଡକୁ ଗଢ଼ିଛନ୍ତି । ଏହି ନଦୀ-ମାନଙ୍କର ଦୁଇ କୂଳରେ ଭାରତର ସଭ୍ୟତା ଓ ସଂସ୍କୃତି ଗଢ଼ି ଉଠିଛି । ଏହି ନଦୀସବୁ ଭାରତର ବାପ ମା' । ପୁଣି ଏହିସବୁ ପ୍ରଳୟଙ୍କରୀ ବନ୍ୟା ସୃଷ୍ଟି କରି ସଂହାରକର୍ତ୍ତା ରୂପ ନେଇ ଲକ୍ଷ ଲକ୍ଷ ଲୋକଙ୍କର ଧନ ଜୀବନ ହାନି କରନ୍ତି । ବିଚିତ୍ର ଏ ଭଗବାନଙ୍କ ସୃଷ୍ଟି ! ଭଗବାନଙ୍କର ବା ଦୋଷ କଅଣ ? ଆମକୁ ଗଛ କାଟିବାକୁ କେଣେ ଯଦି ଶାଣଦିଆ କୁରାଢ଼ି ଖଣ୍ଡିଏ ଦେଲା ଓ ଆମେ ସେଥିରେ ଗଛ ନ କାଟି ଆମର ଗୋଡ଼ ହାଣିଲୁ, ତେବେ କୁରାଢ଼ି ଦେବାବାଲାର ଦୋଷ ବା କଅଣ ? ଏ ଦେଶର ମଣିଷକୁ ନଦୀ ମିଳିଛି, ଉର୍ବର ଜମି ମିଳିଛି, ନଦୀସବୁରେ ବନ୍ଧବାଡ଼ କରି ଯଦି ଏ ଦେଶର ସରକାର ବନ୍ୟା ନିୟନ୍ତ୍ରିତ କରି ସେ ଜଳକୁ କୃଷିବାସରେ ଲଗାଇବାର ସୁବିଧା କରନ୍ତେ ତେବେ କଅଣ ଲୋକେ ଏତେ କଷ୍ଟ ପାଆନ୍ତେ ? ସରକାର ତ ବିଦେଶୀ । ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ହେଲା ଏ ଦେଶରୁ ନାନା ଉପାୟରେ ଟଙ୍କା ଲୁଟି ନେଇ ନିଜର ବଢ଼ତି କରିବା, ସେମାନେ ବୃଥାରେ କାହିଁକି ଦେଶୀ ଲୋକଙ୍କ ପାଇଁ ମୁଣ୍ଡ ଘୂରାଇବେ ?

ବ୍ରହ୍ମପୁତ୍ର ନଦୀର ଆରପଟେ ନିପଟ ଜଙ୍ଗଲପୂର୍ଣ୍ଣ ବଡ଼ ବଡ଼ ପାହାଡ଼, ଜହ୍ନ ଆଲୁଅରେ କାଳିଆ ଭୂତ ପରି ଦିଶୁଛି । ସେଠାରେ ବି ମଣିଷ ଅଛନ୍ତି । ଇମ୍ଫାଲ ସହର ଅଛି । ତା' ପଛରେ ବର୍ମା ଦେଶ । ସେହି ସୀମାନ୍ତ ଜଙ୍ଗଲ ବନ୍ୟ ଜନ୍ତୁରେ ପୂର୍ଣ୍ଣ । ସେଠି ସବୁବେଳେ ବର୍ଷା । ଗଛରୁ ବିଷଧର ସାପସବୁ ଓହ୍ଲାଇ ଆସନ୍ତି । ବଡ଼ ବଡ଼ ଜୋକସବୁ ଜୀବଜନ୍ତୁ ଓ ମଣିଷ ମାଟିରେ ଯାଉଥିବାବେଳେ ସେମାନଙ୍କ ଉପରକୁ ଡେଇଁ ଅଜାଣତରେ ରକ୍ତ ପିଇନିଅନ୍ତି । ସେଠାରେ ବି ଇଂରେଜ ବଣିଆ ଜୋକ ପରି ପଶିଛି । ନିରୀହ ଆଦିବାସୀଙ୍କୁ ବଶ କରିବାକୁ ପାଦ୍ରୀ ପଠାଇ, ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ କରାଇ, ଇଂରେଜ ରାଜାଙ୍କୁ ଭକ୍ତି କରିବା ଶିଖାଇଛି ।

ଭାରତର ଲୋକଙ୍କ ଭିତରେ ବିଭେଦ ସୃଷ୍ଟି କରି, ଦୁଇଜଣଙ୍କ କଳିରେ ତୃତୀୟ ବ୍ୟକ୍ତି ହୋଇ ଲାଭ ଉଠାଇବା ଇଂରେଜଙ୍କ ଜନ୍ମଗତ ପ୍ରକୃତିରେ ପରିଣତ ହୋଇଯାଇଛି । କଂଗ୍ରେସ ଓ ମହାତ୍ମାଗାନ୍ଧିଙ୍କ ଏକ ଜାତିର ଭାରତକୁ ଦୁଇଭାଗ କରିବାକୁ ଶେଷରେ ଇଂରେଜ କୂଟନୀତି ପ୍ରୟୋଗ କଲେ । ଇଂରେଜ ସରକାର ଗୋଲଟେବୁଲ ବୈଠକ କରାଇ ହିନ୍ଦୁ ମୁସଲମାନ ବିଭେଦ ସୃଷ୍ଟି କରାଇଲେ । ହିନ୍ଦୁ ଗୋଟେ ଜାତି, ମୁସଲମାନ ଗୋଟେ ଜାତି, ପୁଣି ହରିଜନ ଆଦିବାସୀ, ଖ୍ରୀଷ୍ଟିଆନ୍ ଓ ଶିଖ ଅଉ ଗୋଟେ ଗୋଟେ ଜାତି କରି ସରକାର ଠିଆକରାଇବେ । ଇଂରେଜ ସରକାରଙ୍କ ଚକ୍ରାନ୍ତ ସବୁକୁ ପଣ୍ଡ ନକଲେ ତାଙ୍କ ଫାନ୍ଦରୁ ଏ ଦେଶ ମୁକୁଳିପାରିବ କିପରି ? ମେଣ୍ଢାଖିଆ ଗଧିଆଙ୍କୁ ଠେଙ୍ଗାଧରି ଗୋଡ଼ାଇ ଗୋଡ଼ାଇ ମାରିଲାପରି, ଛକି ଛକି ସେମାନଙ୍କୁ ହାଣି ମାରି ଭୟଭୀତ କରାଇ ଏ ଦେଶରୁ ପୁରା ନିକାଲି ନଦେଲେ ଭାରତଭୂମି ଆଉ ଭାରତ ହୋଇ ରହିବ ନାହିଁ ।

ଏପରି ବହୁ ସମୟ ନଦୀକୂଳେ ଏକୁଟିଆ ବସି ଚିନ୍ତାମଗ୍ନ ହେବାପରେ ସେଠାରୁ ଉଠିଲେ । ଜଣେ କର୍ମୀଙ୍କ ବସାରେ ଯାଇ ରାତ୍ରୀଯାପନ କଲେ ।

× × ×

ନବକୁମାରଙ୍କୁ ବିଦାୟ ଦେବା ପରେ ଭାଇ ଭଉଣୀ ଘରଆଡ଼େ ଚାଲିଲେ । ଦୁଇପଟେ ବୁଦୁବୁଦିଆ ଚାହା ବଗିଚା । ମଝିରେ ଗୋଟିଏ ଶ୍ରେଣୀଟିଆ ରାସ୍ତା ଅଙ୍କେଇ ବଙ୍କେଇ କୁଲିପଡ଼ା ଆଡ଼କୁ ପଡ଼ିଛି । ଭାଇ ଭଉଣୀ ଚନ୍ଦ୍ର କିରଣରେ ହସଖୁସିରେ କିଛିବାଟ ଗଲା ପରେ ଗୋଟିଏ ଗାଡ଼ିଆ ଦିଶିଲା । ଭାଇଙ୍କୁ ଝାଡ଼ା ଲାଗୁଥିଲା, ସେ ଭଉଣୀକୁ ଗୋଟିଏ ସ୍ଥାନରେ ରାସ୍ତାକଡ଼ରେ ଠିଆ କରାଇଦେଇ ନିଜ କାର୍ଯ୍ୟ ସାରି ଆସିବାକୁ ଗାଡ଼ିଆ ନିକଟକୁ ଚାଲିଗଲେ ।

ସେ ଯିବାର କିଛି ସମୟ ପରେ ଘୋଡ଼ା ଟାପୁର ଶବ୍ଦ ଶୁଣାଗଲା । ମ୍ୟାନେଜର ସାହେବ ଢଳ ଢଳ ଘୋଡ଼ା ଉପରେ ଚଢ଼ି ଆସୁଥିଲେ । ହଠାତ୍ ତାଙ୍କର ଅର୍ଦ୍ଧନିମୀଳିତ ଚକ୍ଷୁ ଏକୁଟିଆ ହୋଇ ଠିଆହୋଇଥିବା ଶରଧା ଉପରେ ପଡ଼ିଲା । ଶରଧା ଚାହାବୁଦା କଡ଼କୁ ଚାଲିଯାଇ ଅନ୍ଧୁଆଳି କରି ଠିଆହେବାକୁ ଚେଷ୍ଟାକଲା । ସାହେବ ଘୋଡ଼ାକୁ ଠିଆକରାଇ

ତରତରରେ ଘୋଡ଼ା ଉପରୁ ଓହ୍ଲାଇପଡ଼ି ବୁଢା ଆଡ଼କୁ ଦଉଡ଼ିଯାଇ ଶରଧାର ହାତକୁ ଧରିପକାଇଲେ । ତା'ର ନୂଆ କାଚମୁଠାଟା ସାହେବଙ୍କ ହାତ ଜୋର୍‌ରେ ଭଡ଼ ଭଡ଼ ହୋଇ ଭାଙ୍ଗିଗଲା । ଶରଧା ତା'ର ହାତକୁ ମୋଡ଼ି ଛୁଡ଼ ଛୁଡ଼ ବୋଲି ରଡ଼ିଛାଡ଼ିଲା ।

ସାହେବ ତା'ର ହାତ ନ ଛାଡ଼ି ଖଣ୍ଡିଆ ହିନ୍ଦୀରେ କହିଲେ, "ପରବାୟ ନେହିଁ, ପରବାୟ ନେହିଁ, ହାମ୍ ତୁମକୁ ଆଉର ଆଚ୍ଛା ଚୂଡ଼ି ଦେଗା, ଔର ପ୍ୟାରେ ଔର । ଫିକର ମତ୍ କରୋ, ହମ୍ ତୁମକୁ ଏତନା ପ୍ୟାର କରତା, କେତନା ରୋଜସେ ଧନ୍ଦା ଥା, ତୁମ ଆଜ ମିଲଗିଆ, ତୁମ କେତନା ସୁରତ ହୋ, ତୁମକୋ ଇଅରିଂ କେତନା ଆଚ୍ଛା ଦେଖତା, ହାମ୍ ଇସିସେ ଆଉର ଆଚ୍ଛା ଇଅରିଂ ଦେଗା, ଔର ଔର ଦିଲକେ ପ୍ୟାରେ ଔର ।" ଏହା କହିଲାବେଳେ ସେ ନିଶାରେ ଟଳଟଳ ହେଉଥିଲେ, ମୁହଁରୁ ଉତ୍କଟ ମଦର ଗନ୍ଧ ବାହାରୁଥିଲା ।

ଶରଧା ବଜାଲରେ ଖାଲି ଛଟିପିଟି ହେଉଥାଏ—ଛାଇ ଡାଇ ବୋଲି ଚିତ୍କାର କରୁଥାଏ । ସେ ବେଶି ଚିତ୍କାର କରିବାରୁ ତାକୁ ଧମକାଇବାକୁ ପକେଟରୁ ରିଭଲଭର ବନ୍ଧୁକ ବାହାର କରି ତା' ଆଡ଼କୁ ଦେଖାଇ କହିଲେ—ମତ୍ ଚିଲାଓ, ସଟ ଅପ୍ । ଏହା କହି ଶରଧାକୁ ଛୁଟି ତଳେ ପକାଇଦେଲେ । ସେ ଗୋଟେ ହାତରେ ବନ୍ଧୁକ ଧରି ଅନ୍ୟ ହାତରେ ତା'ର ଲୁଗା ଫିଟାଇବାକୁ ଉଦ୍ୟତ ହେଲାବେଳକୁ ଚନ୍ଦ୍ର ଦଉଡ଼ି ଦଉଡ଼ି ଆସି ସାହେବଙ୍କ ପାଖରେ ପହଞ୍ଚିଗଲେ ।

ସାହେବ ଚନ୍ଦ୍ରକୁ ଦେଖିବାମାତ୍ରେ ବନ୍ଧୁକଟା ଚନ୍ଦ୍ର ଆଡ଼କୁ ଦେଖାଇ ଘୋଡାଟା ଟିପିଲାବେଳକୁ ଆତ୍ମରକ୍ଷା ପାଇଁ ଚନ୍ଦ୍ର ସାହେବଙ୍କ ହାତର ଚକଟିକୁ ସାହେବଙ୍କ ଆଡ଼କୁ ଠେଲିଦେଲେ । ବନ୍ଧୁକଟା ବୁଲିଯାଇ ହଠାତ୍ ଗର୍ଜି ଉଠିଲା । ସାହେବଙ୍କ ଖପୁରିରୁ ପ୍ରାୟ ଅର୍ଦ୍ଧେକ ଉଡ଼ିଗଲା । ସେ ସେଇଠାରେ ଟଳିପଡ଼ିଲେ ।

ବନ୍ଧୁକର ଆବାଜରେ ଦୂରରେ ଠିଆହୋଇଥିବା ଘୋଡ଼ାଟା ଚମକିଯାଇ ଦଉଡ଼ି ଦଉଡ଼ି ପଳାଇଲା । ଚନ୍ଦ୍ର ଶରଧାକୁ ଉଠାଇ ତା'ର ହାତ ଟାଣି ଟାଣି ଦଉଡ଼ି ଆସି ଏକା ନିଶ୍ୱାସରେ ଘରେ ପହଞ୍ଚିଲେ । ଗାଡ଼ିଆ କୂଳରୁ ତାଙ୍କର ବଜାର ସଉଦା ଗଣ୍ଠିଲିଟି ଗୋଟାଇ ଆଣିବାକୁ ଆଉ ତର ମିଳିଲା ନାହିଁ । ଘରକୁ ଆସି ସେ ଦମ୍‌ମାରି ବସିପଡ଼ିଲେ । ବର୍ତ୍ତମାନ ସେ ଖୁଣୀ, ଆସାମୀ । ଆଉ କିଏ ମରିଥିଲେ ଅବା ଆତ୍ମରକ୍ଷା କଥା ବିଚାର ହୋଇଆନ୍ତା—ମୃତ ବ୍ୟକ୍ତି ନିଜେ ମ୍ୟାନେଜର ସାହେବ । ତାଙ୍କର ଲୁଚି ପଳାଇବାର ବି ଉପାୟ ନାହିଁ । ଯେପରି ହେଲେ ସେ ଧରାପଡ଼ିବେ । ସାହେବ ଜଜ୍‌ମାନଙ୍କର ତ ଏକତରଫା ବିଚାର । ସେ ଫାଶୀଖୁଣ୍ଟରେ ଝୁଲିବା ସୁନିଶ୍ଚିତ ।

ଯାହା ପାଇଁ ଏ ଘଟଣା ଘଟିଲା, ସେ ନିଆଶ୍ରା ବାଳିକା ଶରଧାର ଅବସ୍ଥା କଅଣ ହେବ ? ତା'ର ଆଉ କିଏ ଅଛି ? ସେ ବା ବର୍ତ୍ତମାନ ତା' ବିଷୟରେ କଅଣ ଠିକ୍ କରିପାରିବେ ? କାହା ସଙ୍ଗେ ଅବା ପରାମର୍ଶ କରିବେ ? ନବକୁମାର ପାଖରେ ଥିଲେ ଅବା ତାଙ୍କୁ

ପତ୍ରିର କିଛୁ ଛିର କରିଥାଆନ୍ତେ । କେବଳ ବା ଆଉ କାହିଁ ? ଯେ କୌଣସି ମୁହୂର୍ତ୍ତରେ ପୋଲିସ ଆସି ତାଙ୍କୁ ଧରନେବାର ସମ୍ଭାବନା ରହିଛି ।

ସେ କିଛି ସମୟ ଚୁପ୍ ହୋଇ ବସି ରହିବା ପରେ କାଗଜ ପେନସିଲ୍ ନେଇ କଅଣ ଲେଖି କାଗଜଟି ଖଙ୍ଗି ଶରଧା ହାତକୁ ଦେଇ କହିଲେ—"ଏଇଟି ଲୁଚାଇ କରି ଅଣ୍ଟାରେ ମାରି ରଖିଥା, କାଲି ସକାଳେ ନବକୁମାର ଆସିଲେ ଦେବୁ ।" ତା'ପରେ ଚନ୍ଦ୍ର ନବକୁମାରର କୋଠରୀରେ ପଶି ଆପତ୍ତିଜନକ କାଗଜପତ୍ର ଓ ଚିଠିପତ୍ର ସବୁ ଏକାଠି କରି ଚୁଲିରେ ଜାଳିଦେଲେ ।

ଶରଧାକୁ ଏସବୁ ସିନେମାର ଦୃଶ୍ୟପରି ଲାଗୁଥାଏ । ସେ କିଛି ଭାବିପାରୁ ନଥାଏ । ଯନ୍ତ୍ରଚାଳିତ ପରି ଭାଇ ଯାହା କହୁଥାଆନ୍ତି ତାହା କରିଯାଉଥାଏ । ଭାଇଙ୍କ ଆଦେଶରେ ସକାଳର ଯାହା ବଳକା ଖାଦ୍ୟ ଥିଲା ଭାଇ ଭଉଣୀ ତାକୁ ଏକାଠି ବସି ଖାଇଲେ । ଖାଇବା ପରେ ଯା' ଶୁଅ, ବୋଲି ଭାଇ ଆଦେଶ ଦେବାରେ ସେ ଶୋଇବାକୁ ଗଲା ।

× × × ×

ଘୋଡ଼ାଟି ଦଉଡ଼ି ଦଉଡ଼ି ଯାଇ କ୍ଲବ ଘର ଦୁଆର ସାମନାରେ ଠିଆହେଲା । ସଇଶ ଆସି ଘୋଡ଼ାଟିକୁ ଧରନେଲା । ଘୋଡ଼ା ଉପରେ ସବାର ନଥିବାର ଦେଖି ସେଠାରେ ହଇଚଇ ପଡ଼ିଗଲା । ଜୋନ୍‌ସ କ୍ଲବ ଘରେ ସନ୍ଧ୍ୟା ପୂର୍ବରୁ ବୋତଲ ଉପରେ ବୋତଲ ଉଡ଼ାଇ ଦେଇଥିଲେ । ହୁଇସ୍କି, ଜିନ୍, ରମ୍, ଯାହା ମନହେଲା ଗୋଟାକ ପରେ ଗୋଟାଏ ଚାଲିଥିଲା । ମଦ ବିଷୟରେ ଜୋନ୍‌ସଙ୍କର ସେଦିନ ବାଛବିଚାର କିଛି ନଥିଲା । ସନ୍ଧ୍ୟାବେଳେ ବାପା ଆସି କ୍ଲବରେ ପହଞ୍ଚିବାରୁ ସେ ପିଲବା ବନ୍ଦକରି ବାହାରକୁ ଆସି ଘୋଡ଼ାଉପରେ ବସି କୁଲିପଡ଼ାଆଡ଼େ ଘୋଡ଼ା ଦଉଡ଼ାଇ ଦେଇଥିଲେ । କୁଲିପଡ଼ାକୁ ଏପରି ଅବସ୍ଥାରେ ଆଗରୁ କେତେଥର ଯାଇ କୁଲିମାନଙ୍କ ଝିଅ ବୋହୂଙ୍କୁ ଭିଡ଼ାଭିଡ଼ି କରି ଜବରଦସ୍ତ ପାଶବିକ ଅତ୍ୟାଚାର କରୁଥିବା ଜୋନ୍‌ସଙ୍କର ବଦ୍‌ନାମ ଥିବାରୁ ସେ ଆଡ଼କୁ ଯିବାକୁ ଉଦ୍ୟତ ହେଲାବେଳେ ତାଙ୍କ ବାପା ବାରଣ୍ଡାକୁ ଦଉଡ଼ି ଆସି ସେଆଡ଼େ ଯାଅନା ଯାଅନା ବୋଲି ପାଟିକରି କହିବାସତ୍ତ୍ୱେ ସେ ବାପାଙ୍କ କଥା ନମାନି ସେଇଆଡ଼େ ଚାଲିଯାଇଥିଲେ ।

କୁଲିମାନଙ୍କ ଭିତରେ ଜୋନ୍‌ସଙ୍କ ପ୍ରତି ଭିତରେ ଭିତରେ ରାଗ କୁହୁଳୁଥିବା କଥା ଗୋଇନ୍ଦାପୋଲିସଙ୍କଦ୍ୱାରା ଜୋନ୍‌ସଙ୍କ ବାପାଙ୍କ କର୍ଣ୍ଣଗୋଚର ହୋଇଥିଲା । ତେଣୁ ଖାଲି ଘୋଡ଼ାଟି ଦେଖି ଆଶଙ୍କାରେ ତାଙ୍କ ମୁଣ୍ଡ ଘୂରିଗଲା । ସେ ଘୋଡ଼ା ଉପରେ ବସି ଘଟଣା କ'ଣ ଜାଣିବାକୁ କୁଲିପଡ଼ାଆଡ଼େ ଚାଲିଲେ । ତାଙ୍କ ପଛେ ପଛେ କ୍ଲବର ଲୋକମାନେ ଘୋଡ଼ା ବା ସାଇକଲ ପ୍ରଭୃତିରେ ବା ଦଉଡ଼ାଦଉଡ଼ି କରି ତାଙ୍କ ପଛେ ପଛେ ଗଲେ । ରାସ୍ତା କଡ଼ରେ ରକ୍ତାକ୍ତ ଅବସ୍ଥାରେ ଜୋନ୍‌ସଙ୍କ ମୃତଦେହ ଧୂଳିରେ ଲୋଟୁଥିଲା । ତାଙ୍କ ମୃତଦେହକୁ ଘୋଡ଼ା ଉପରେ ଲଦି ତାଙ୍କର ପିତା କେତେକ ଅନୁଚରଙ୍କ ସଙ୍ଗରେ ନେଇ ଘରକୁ ଲେଉଟିଲେ ।

ପଛରେ ରହିଥିବା ଲୋକମାନେ ଆତତାୟୀର ଅନୁସନ୍ଧାନ କରୁ କରୁ ଗାଡ଼ିଆ କୂଳରୁ ଚନ୍ଦ୍ରଙ୍କ ବନ୍ଧୁକଟି ପାଇଲେ । ସେଇଟି ନେଇ ପୋଲିସ ଥାନାରେ ଜମାକରିଦେଲେ । ପୋଲିସ ସଙ୍ଗେ ସଙ୍ଗେ ଅନୁସନ୍ଧାନ ଚଳାଇଲେ । ନବକୁମାର, ଚନ୍ଦ୍ର ଓ ଶରଧା ସେ ବାଟରେ ବଜାରକୁ ଯିବାବେଳେ ବହୁତ ଲୋକ ସେମାନଙ୍କୁ ଦେଖିଥିଲେ । ଫେରିଲାବେଳେ ଭାଇ ଭଉଣୀଙ୍କୁ ମଧ୍ୟ କେତେ ଲୋକ ଦେଖିଥିଲେ । ସେମାନଙ୍କଠାରୁ ପୋଲିସ ସାକ୍ଷୀ ଗ୍ରହଣ କରି ସେ ତିନିଜଣଙ୍କ ନାମରେ ଡାଏରୀରେ ଟିପିଲେ ।

ସେ ଘଟଣା ଗୋଟିଏ ଇଂରେଜ ବିଦ୍ରୋହୀ ଷଡ଼ଯନ୍ତ୍ରର ଆକାର ଧାରଣକଲା । ଚନ୍ଦ୍ର ହୁଏତ ନବକୁମାରର ନିର୍ଦ୍ଦେଶରେ ବନ୍ଧୁକଟି ଗାଡ଼ିଆ ନିକଟରେ ରଖି ଭଉଣୀକୁ ଘରକୁ ପଠାଇ ଦେଇ ମ୍ୟାନେଜର ସାହେବକୁ ହତ୍ୟା କରିବାକୁ ବୁଦାମୂଳେ ଲୁଚି ରହିଥିଲା । ନବକୁମାର ଓ ଚନ୍ଦ୍ର ମାଡ଼ିବସିବା ପରେ ଚନ୍ଦ୍ର ସାହେବ ପକେଟରୁ ବନ୍ଧୁକ ଛଡ଼ାଇନେଇ ଗୁଳି କରିଛି । ଗୁଳି କରିବା ପରେ ହୁଏତ କିଏ ଆସିବାର ସନ୍ଦେହ କରି ତରବରରେ ବନ୍ଧୁକ ଛାଡ଼ି ଭଉଣୀପାଖକୁ ଚାଲିଯାଇଛି । ନବକୁମାର ଫେରାର ହୋଇଛି ।

ରାତି ଦୁଇଟାବେଳେ ବନ୍ଧୁକଧାରୀ ଘୋଡ଼ାସବାର ପୋଲିସ ଦଳ ଚାହା କମ୍ପାନୀ ମାଲିକଙ୍କ ସହିତ କୁଲିପଡ଼ାକୁ ଆସି ଚନ୍ଦ୍ର ପ୍ରଧାନଙ୍କ ଘର ଘେରାଉ କଲେ । ବନ୍ଧୁକଧାରୀ ପୋଲିସମାନେ ପଡ଼ା ଦାଣ୍ଡରେ ପଇଁତରା ମାରିଲେ । ଯେଝା ଘରେ ସେ ତୁନି ହୋଇ ଶୋଇ ରହିବାପାଇଁ ଓ କବାଟ ଫିଟାଇ ଦାଣ୍ଡକୁ ନ ବାହାରିବା ପାଇଁ ଲୋକମାନଙ୍କୁ ସତର୍କ କରାଇ-ଦେଲେ ।

ଶରଧା ଭାଇର ଆଦେଶରେ ଶୋଇବାକୁ ଯାଇଥିଲା । ସେ ଡରରେ ଗୋଟାପଣେ ଥରୁଥିଲା । ଭାଇକୁ କିଛି ପଚାରିବାକୁ ସାହସ କରିନଥିଲା । କାକୁସ୍ଥ ହୋଇ ପଡ଼ି ରହି ରହି ନିଦଲାଗିଯାଇଥିଲା । ଚନ୍ଦ୍ର କିନ୍ତୁ ଶାନ୍ତ ଭାବରେ ପରିସ୍ଥିତି ବିଚାର କରି ଚଉକିଟି ଉପରେ ବସି ନିଜର ଶେଷକାଳ କଥା ଭାବୁଥିଲେ । ପ୍ରାଣଦଣ୍ଡ ପାଇଁ ତାଙ୍କର ଆଦୌ ଖେଦ ନଥିଲା । କେବଳ ନିଜ ଭଉଣୀ ନୁହେଁ, ଆଜି ସେ ଜଣେ ହିନ୍ଦୁ ଅବଳାର ସତୀତ୍ୱ ରକ୍ଷା କରିବାକୁ ଯାଇ ଫାଶୀ ଖୁଣ୍ଟରେ ଝୁଲିବାକୁ ଯାଉଛନ୍ତି । ଭାରତ ଜନନୀର ଶତ୍ରୁ ଜଣେ ପାଷାଣ୍ଡ ଅତ୍ୟାଚାରୀ ଇଂରେଜର ମୃତ୍ୟୁ ନିଜ ଆଖି ଆଗରେ ଦେଖିପାରିଛନ୍ତି । ଏହାଦ୍ୱାରା ବହୁ ଭାରତୀୟ ନାରୀ ଗୋଟାଏ ଅତ୍ୟାଚାରୀ ଲମ୍ପଟ ଇଂରେଜ ହାତରୁ ରକ୍ଷା ପାଇପାରିଛନ୍ତି । ସେକଥା ସ୍ମରଣ କରି ତାଙ୍କ କାର୍ଯ୍ୟ ପାଇଁ ସେ ଗର୍ବ ଅନୁଭବ କରୁଥିଲେ ।

ତାଙ୍କ ଦୁଆର ଧଡ଼ ଧଡ଼ ହେବା ସଙ୍ଗେ ସଙ୍ଗେ ଆଗରୁ ପ୍ରସ୍ତୁତ ଥିଲାପରି ଦୁଆରଟି ଫିଟାଇ ବେଡ଼ି ପିନ୍ଧିବା ପାଇଁ ଚନ୍ଦ୍ର ତାଙ୍କର ଦୁଇଟିଯାକ ହାତ ପୋଲିସଆଡ଼କୁ ବଢ଼ାଇ ଦେଲେ । ସେ କହିଲେ—ଭଗବାନଙ୍କ ଆଇନରେ ମୁଁ ନିର୍ଦ୍ଦୋଷ । ମୁଁ ଜଣେ ଅବଳା ନାରୀର ସତୀତ୍ୱ ରକ୍ଷା କରିବାକୁ ଯାଇ ନିଜର ଆତ୍ମରକ୍ଷା କରିବାକୁ ହାତ ଛୁଟିଲାବେଳେ ସାହେବର

ବନ୍ଧୁକଧରୀ ହାତ ତା' ନିଜଆଡ଼କୁ ବୁଲାଯାଇ ତା'ର ପ୍ରାଣ ନେଇଛି । ଅବଶ୍ୟ ତୁମ ଆଇନ ମୋ କଥା ଶୁଣିବ ନାହିଁ—ତୁମେ ମୋତେ ଫାଶୀ ଦେବ—ଦିଅ, ମୁଁ ସେଥିପାଇଁ ପ୍ରସ୍ତୁତ ।

ପୋଲିସମାନେ ହାତକଡ଼ା ପକାଇସାରି ଚନ୍ଦ୍ର ପ୍ରଧାନଙ୍କୁ ଧକ୍କା ଧକ୍କି ଓ ମଗ୍ରମରି କରି ଘୋଷାରି ଘୋଷାରି ନେବାକୁ ଉଦ୍ୟତ ହେଲାବେଳକୁ, ଜୋନ୍‌ସଙ୍କ ପିତା, ଗୃହର କର୍ତ୍ତାମାନଙ୍କ ମାଲିକ, ଚନ୍ଦ୍ରଙ୍କ ସାମନାରେ ଆସି ଠିଆହୋଇଯାଇ ପୋଲିସକୁ ବାଧାଦେଲେ । ସେ ନିର୍ଭୀକ ଯୁବକର ସତ୍ୟ ଉକ୍ତି ଶୁଣି ସ୍ତମ୍ଭିତ ହୋଇଯାଇଥିଲେ । ସେ ପୋଲିସଙ୍କୁ କହିଲେ—"ତାଙ୍କୁ ମାରନାହିଁ । ତାଙ୍କ ପ୍ରତି ଅତ୍ୟାଚାର କରନାହିଁ ।" ବୃଦ୍ଧଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଗଲା ।

ପୋଲିସବାଲା ଘରର ଏମୁଣ୍ଡ ସେମୁଣ୍ଡ ସବୁ ଖାନତଲାସ କଲେ । କେଉଁଠାରୁ କିଛି ଆପତ୍ତିଜନକ କାଗଜପତ୍ର ବା ହାତହତିଆର ନପାଇ ନବକୁମାରଙ୍କ ହାତବାକ୍ସ ଖଣ୍ଡିକ ଭାଙ୍ଗି ତାଙ୍କ ସାର୍ଟିଫିକେଟଗୁଡ଼ିକ ଜବତ କରିନେଲେ । ତା'ପରେ ଚନ୍ଦ୍ରକୁ ବନ୍ଦୀକରି ସାଙ୍ଗରେ ଧରି ନେଇଗଲେ ।

ସେହି ଗୋଳମାଳ ଭିତରେ ଶରଧାର ନିଦ ଭାଙ୍ଗି ସେ କବାଟ କୋଣରେ ଠିଆ ହୋଇ ସବୁ ଦେଖିଲା । ଭାଇଙ୍କର ତା' ପାଇଁ ହାତକଡ଼ି ପିନ୍ଧିବା ଦେଖି ତା'ର କୋହ ଆସିଲା । ସେ ତା'ର କୋହ ଚାପିରଖି ନିଜକୁ ସମ୍ଭାଳି ନେଲା । ଭାଇ ଗଲାବେଳେ ତା ଆଡ଼କୁ ଚାହିଁ ତାଙ୍କ ଆଖିରୁ ଦୁଇଟୋପା ଲୁହ ଖସିପଡ଼ିଲା, ଭଉଣୀ ନୀରବରେ ତାଙ୍କୁ ନମସ୍କାର କରି ବିଦାୟଦେଲା ।

ପରଦିନ କାଲି ଅନ୍ଧାରରୁ ନବକୁମାର ଦକ୍ସ୍‌ରୁ ଫେରି ଦୁଆର ଠକ୍ ଠକ୍ କଲେ । ଶରଧା ଦୁଆର ଖୋଲୁ ଖୋଲୁ ନବକୁମାରଙ୍କୁ କୁଣ୍ଢାଇ ପକାଇ ଭେଁକରି କାନ୍ଦି ଉଠିଲା । ଘରର ଜିନିଷପତ୍ରର ଅବସ୍ଥା ଦେଖି ସେ ଚମକିପଡ଼ିଲେ । କିଛି ସମୟ ପରେ ନିଜକୁ ସମ୍ଭାଳିନେଇ ଶରଧା ଗୋଟି ଗୋଟି କରି ସବୁକଥା ଆମୂଳଚୂଳ ବର୍ଣ୍ଣନା କରିଗଲା ।

ନବକୁମାର ତାଙ୍କ କର୍ତ୍ତବ୍ୟ କିଛି ସ୍ଥିର କରିନପାରି କାଠଭଳି ଅଭିଜ ଠିଆହୋଇ ରହିଲେ । ଶରଧାର ଭାଇଙ୍କ ଚିଠିକଥା ମନେପଡ଼ିବାରୁ ଅଣ୍ଟାରୁ ବାହାରକରି ଚିଠିଖଣ୍ଡି ତାଙ୍କ ହାତକୁ ବଢ଼ାଇଦେଲା । ନବକୁମାର ଚିଠିଟି ପଢ଼ିଲାବେଳେ କୌତୁହଳବଶତଃ ଶରଧା ତାଙ୍କ ମୁହଁକୁ ଚାହିଁରହିବାରୁ ନବକୁମାର ପଢ଼ିସାରି ସେ ଖଣ୍ଡି ଶରଧାକୁ ପଢ଼ିବାକୁ କହିଲେ । ଚିଠି ପଢ଼ିସାରି ଦୁହେଁ ଦୁହିଁଙ୍କ ମୁହଁକୁ ନିର୍ବାକ୍ ହୋଇ ଚାହିଁ ରହିଲେ । ଚିଠିରେ ଥିଲା—

ଭାଇ,

ମୁଁ ଫାଶୀମଞ୍ଚରେ ଝୁଲିବାକୁ ଚାଲିଲି । ଶରଧା ନିଃସହାୟା, ତା'ର ଆଉ କେହି ନିଜର ହୋଇ ନାହିଁ । ମୁଁ ଜାଣେ ତୁମ ଜୀବନର ମଧ୍ୟ ସ୍ଥିରତା ନାହିଁ । ତଥାପି ତାକୁ ତୁମ ବେକରେ ବାନ୍ଧିଦେବା ଛଡ଼ା ମୋର ଆଉ କୌଣସି ଉପାୟ ନାହିଁ । ତୁମେ ତାକୁ କାତ

ଫିଙ୍ଗାଇଯାଉଛି, ଏବେ ଧର୍ମପତ୍ନୀ ଭାବେ ଗ୍ରହଣ କର। ତୁମ ଦୁହିଁଙ୍କୁ ଭଗବାନ ଆଶୀର୍ବାଦ କରନ୍ତୁ।

ଇତି
ତୁମର ଶୁଭକାଂକ୍ଷୀ
ଚନ୍ଦ୍ର

ଚିଠିର ଏଇ ଦୁଇଟି ଧାଡ଼ି ଦୁହିଁଙ୍କ ମନରେ ଝଡ଼ଝଞ୍ଜା ସୃଷ୍ଟି କଲା।

ଶରଧା ଖୁଣୀ ମାମଲା ସହିତ ସଂପୃକ୍ତ। ସେ ନିଜେ ମଧ୍ୟ ପୋଲିସର ସନ୍ଦେହ ଦୃଷ୍ଟିରେ ଅଛନ୍ତି। ତାଙ୍କର ନାଁ ଗାଁ ଠିକଣା ପ୍ରଭୃତି ଥିବା ସମସ୍ତ ସାର୍ଟିଫିକେଟ ଏବେ ପୋଲିସ ହାତରେ। ସେ କରିବେ କ'ଣ ? ସେ ଶରଧାକୁ ନେଇ କପରି କେଉଁଆଡ଼େ ଯିବେ ? ଏପରି ପରିସ୍ଥିତିରେ କିଛି ନିର୍ଦ୍ଦିଷ୍ଟ ନିଷ୍ପତ୍ତିରେ ପହଞ୍ଚିବା କଷ୍ଟ। କିନ୍ତୁ ହାତରେ ସମୟ ଅତି ଅଳ୍ପ। ଯେ କୌଣସି ମୁହୂର୍ତ୍ତରେ ପୋଲିସ ଆସି ସେ ଦୁହିଁଙ୍କୁ ଥାନାକୁ ନେଇଯାଇପାରନ୍ତି।

ସେ ଆସିଲାବେଳେ ପଡ଼ାଯାକ ଲୋକ କୋକୁଆ ଭୟରେ ଥିଲାପରି ଦୁଆର ଝରକା ବନ୍ଦ-କରି ଶୋଇଥିଲେ, ତେଣୁ ଘରକୁ ଫେରିବାର ତାଙ୍କୁ କେହି ଦେଖିନାହାନ୍ତି। ଏବେ ସମସ୍ତେ ଶେଯରୁ ଉଠି କାମପାଇଁ ଚୂହା ବଗିଚାକୁ ଯିବାକୁ ସଜବାଜ ହେଲେଣି। କିନ୍ତୁ ଚନ୍ଦ୍ରଙ୍କ ଘରଆଡ଼କୁ ଆସିବାକୁ ସାହସ କରୁନାହାନ୍ତି। କେହି ପଚାରିଲେ ସେ ଡିବ୍ରୁଗଡ଼ରୁ ଫେରିନାହିଁ ବୋଲି କହିବାକୁ ଶରଧାକୁ କହି, ସେ ଘର ଭିତରେ ଲୁଚି ରହି ସେଠା ଛାଡ଼ି ଚାଲିଯିବାର ବ୍ୟବସ୍ଥା କରିବାକୁ ଲାଗିଲେ। କୁଲିପଡ଼ାରେ ସେ ଘଟଣା ଏତେ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା ଯେ, ସମସ୍ତେ ଚୁପ୍‌ଚାପ୍ ହେଲେ ମଧ୍ୟ ଡରରେ ବଡ଼ପାଟିରେ କେହି କଥାବାର୍ତ୍ତା କରୁନଥାନ୍ତି। ଜଣେଅଧେ ଲୁଚିଛପି ଶରଧାକୁ ଦେଖିବାକୁ ଆସିଲେ, ନବକୁମାର କଥା ପଚାରିଲେ, କିନ୍ତୁ ଶରଧାକୁ ତୁନି ହୋଇ ଘର ଭିତରେ ମୁଣ୍ଡପୋତି ବସିଥିବାର ଦେଖି, ଇରୁଣ୍ଡି ବନ୍ଦ ନକରି ଦୁଆରମୁହଁରୁ ଫେରିଗଲେ।

ସେ ପଡ଼ାରୁ ସମସ୍ତେ କାମକୁ ଚାଲିଯିବା ପରେ ବୁଢ଼ାବୁଢ଼ୀ ଓ ପିଲାମାନେ ବାହାରକୁ ନ ବାହାରି ଭୟରେ ଘର ଭିତରେ ରହିଲେ। ଦାଣ୍ଡଘାଟ ସବୁ ଶୂନ୍‌ଶାନ୍। ସେଠାରେ ଯେପରି ଶ୍ମଶାନର ନିସ୍ତବ୍ଧତା ବିରାଜମାନ କରୁଥିଲା। ନବକୁମାର ଝରକାବାଟେ ଉଣ୍ଡି ଦେଖିବାପରେ ନିଜେ ଖଣ୍ଡେ ଶାଢ଼ୀ ପିନ୍ଧିପକାଇ ଓଢ଼ଣା ଟାଣିଦେଲେ, କାନଫଟାଳିକ ମୁଣ୍ଡରେ ମୁଣ୍ଡାଇଲେ, ଶରଧାକୁ ପୁଅବେଶ କରି ସଙ୍ଗରେ ଧରି କେହି ନଦେଖିବା ସମୟରେ ପଡ଼ାଦାଣ୍ଡ ପାରହୋଇ ଚଲାରାସ୍ତାରେ ଯାଇ ସଡ଼କକୁ ଉଠିଲେ। ତାଙ୍କର ଅନିର୍ଦ୍ଦିଷ୍ଟ ପଥରେ ଯାତ୍ରା ଆରମ୍ଭ ହେଲା।

ଡିବ୍ରୁଗଡ଼ ଷ୍ଟେସନରେ ପହଞ୍ଚିଲାବେଳକୁ ଗାଡ଼ି ହୁଇସିଲ୍ ଦେଉଥିଲା। ସେମାନେ ସଙ୍ଗେ ସଙ୍ଗେ ଗାଡ଼ିରେ ଚଢ଼ିଗଲେ। ନବକୁମାର କାହାସଙ୍ଗେ କଥାବାର୍ତ୍ତା ନକରି ଗାଡ଼ିର ଗୋଟିଏ କଣିଆ ସିଟ୍ ନିକଟକୁ ଯାଇ ଘୋରଘାରି ହୋଇ ଶୋଇରହିଲେ। ତାଙ୍କ ପାଖରେ ଶରଧା ବସିରହିଲା। ଷ୍ଟେସନ ପରେ ଷ୍ଟେସନ ପାରହୋଇ ହୁଇସିଲ୍ ଦେଇ ଦେଇ ଗାଡ଼ି

ପଶ୍ଚିମ ଦିଗକୁ ମୁହାଁଇଲା । ନବକୁମାରକୁ କେହି ଉଠାଇବାକୁ ଗୃହିଁଲେ, "ମୋ ମାଉସୀ ଦେହ ଭାରି ଖରାପ, ତାକୁ ଉଠାଅ ନାହିଁ ।" କହି ଶରଧା ସେମାନଙ୍କୁ ବାଧା କରୁଥାଏ । ନବକୁମାର ଦେହ ଖରାପର ଅଭିନୟ କରି ମଝିରେ ମଝିରେ ଉହୁଁ ଉହୁଁ ହେଉଥାନ୍ତି ।

କାଂଟରେ ଷ୍ଟେସନମାନଙ୍କରେ ହକରମାନଙ୍କଠାରୁ ଶରଧା ଜଳଖିଆ କିଣିଆଣେ । ସେ ଖାଏ ଓ ଲୁଚାଇ ଲୁଚାଇ ନବକୁମାରଙ୍କୁ ଦିଏ । ଏହିପରି ଦୁଇଦିନ ବିତିବା ପରେ ଆସାମ ବଙ୍ଗଳା ଡେଇଁ ଗାଡ଼ି 'ବର୍ଦ୍ଧମାନ' ଷ୍ଟେସନରେ ପହଞ୍ଚିଲା । ଘଡି ଅଧ, ଗାଡ଼ି କଲିକତା-ଆଡ଼େ ଯିବ ।

ଘୃ ବଗିଗୃ ମାଲିକଙ୍କ ଯୋଗୁ, ଚନ୍ଦ୍ର କଥାର ସତ୍ୟତା ଉପଲବ୍ଧି କରି, ଶରଧା ଓ ନବକୁମାର ନିର୍ଦ୍ଦୋଷ ବୋଲି ଷଡ଼ଯନ୍ତ୍ର ମୋକଦ୍ଦମା ଟିକିଏ ଧିମେଇଥିଲା । ସେତିକିବେଳେ ବିନା ଖୋଜାଖୋଜିରେ ନବକୁମାର ଗୃଲିଆସି ପାରିଲେ । କିନ୍ତୁ ମୋକଦ୍ଦମା ଭାର ପୋଲିସ ସାହେବଙ୍କ ହାତକୁ ଯିବାପରେ ସେ ଶରଧା କଥା ନଉଠାଇ, ନବକୁମାର ଓ ଚନ୍ଦ୍ର ଷଡ଼ଯନ୍ତ୍ର କରି ମ୍ୟାନେଜରଙ୍କୁ ମାରିଛନ୍ତି ବୋଲି ନବକୁମାରଙ୍କ ନାମରେ ଓ୍ୟାରେଣ୍ଟ ପରଓ୍ୱାନା ଜାରି କରିଥିଲେ । ନବକୁମାର ଆସାମରୁ ଖସିଆସିବା ପରେ ପୋଲିସ ନିଶ୍ଚୟ ତାଙ୍କୁ ଖୋଜୁଥିବେ ଓ ଆସାମର ଖୁଣୀ ସମ୍ବାଦ କଲିକତାରେ ପହଞ୍ଚିଯିବଣି ବୋଲି ସନ୍ଦେହକରି, କଲିକତା ଯିବା ନିରାପଦ ନୁହେଁ ବୋଲି ସେ ସ୍ଥିରକଲେ ।

'ବର୍ଦ୍ଧମାନ' ଷ୍ଟେସନରେ ଗାଡ଼ିରୁ ଓହ୍ଲାଇବା ପୂର୍ବରୁ ନବକୁମାର ଓ ଶରଧା ନିଜନିଜର ପୂର୍ବ ପୋଷାକ ଧରି ଜଣ ଜଣ କରି ରେଳଡବାର ପାଇଖାନାରେ ପଶି, ପୋଷାକ ବଦଳାଇ ପକାଇଲେ । ତା'ପରେ ତରତରରେ ଜିନିଷପତ୍ର ଧରି ପ୍ଲାଟଫର୍ମକୁ ଗୃଲିଆସିଲେ । ପ୍ଲାଟଫର୍ମର ଆରପଟେ ପାଟନା ଯିବାକୁ ଗାଡ଼ି ଆସି ଠିଆହୋଇଥିଲା । ସେମାନେ ସ୍ୱାଭାବିକ ବେଶରେ ସେଥିରେ ଯାଇ ବସିପଡ଼ିଲେ ।

ପାଟନା କ୍ୟାମ୍ପ ଜେଲରୁ ଫେରିଲାବେଳେ ସେ ପାଟନା ସହିତ କିଛିଟା ପରିଚିତ ଥିଲେ । ଷ୍ଟେସନରେ ଓହ୍ଲାଇ ପୂର୍ବପରିଚିତ କେହି ଆଖିରେ ପଡ଼ିପାରନ୍ତି ବୋଲି ଏପଟ ସେପଟକୁ ଗୃହିଁଲେ । ହଠାତ୍ ଗାନ୍ଧିଟୋପି ପିନ୍ଧା ଲୋକଟିଏ ଦେଖିବାକୁ ପାଇଲେ । ସେ ମୁଣ୍ଡ ଟେକି ତା'ର ମୁହଁକୁ ଗୃହିଁଲାକ୍ଷଣି, ଲୋକଟି ତାଙ୍କଆଡ଼କୁ ଦଉଡ଼ି ଆସି 'ନବଭାଇୟା' କହି ଆନନ୍ଦରେ ଗଦ୍‌ଗଦ ହୋଇ ତାଙ୍କୁ କୁଣ୍ଢାଇପକାଇଲା । ସେ ଜଣେ ଗାନ୍ଧିବାଦୀ କର୍ମୀ । ନାମ ସେବକରାମ ପାଣ୍ଡେ । ପାଟନା କ୍ୟାମ୍ପ ଜେଲରେ ନବକୁମାର ବନ୍ଦୀଥିଲାବେଳେ ସେ ମଧ୍ୟ ରାଜବନ୍ଦୀଥିଲା । ଦୁହିଁଙ୍କର ଅନେକ ସମୟରେ ସ୍ୱେଚ୍ଛାସେବକ ଭାବରେ ରୋଗୀମାନଙ୍କର ସେବା କରିବା ସମୟରେ ଦେଖାହେଉଥିଲା । ଦୁହିଁଙ୍କ ଭିତରେ ଖୁବ୍ ଭଲ ଭାବ ଥିଲା । ସେବକରାମ ଟିକିଏ ମାନ୍ଦା ପିଲା । କିନ୍ତୁ ନବକୁମାର ବଡ଼ ମେଧାବୀ । ତେଣୁ ସେ ନବଭାଇୟାର ଅନୁଗାମୀ ହୋଇଉଠିଥିଲା ।

ଏହା ଭିତରେ ବହୁତଗୁଡ଼ାଏ ଦିନ ବିତିଗଲାଣି । କେତେ କେତେ ଘଟଣା ଘଟି-ଗଲାଣି । ସେବକରାମ ବହୁତ ଏପଟ ସେପଟ ହୋଇ ହୋଇ ଶେଷରେ ପାଟନା ନିକଟରେ ଥିବା ଗୋଟିଏ ଗାନ୍ଧି ଆଶ୍ରମରେ ଆଶ୍ରୟ ନେଇ ସ୍ୱାଧୀନତା ସଂଗ୍ରାମରେ ନିଜକୁ ନିୟୋଜିତ କରିଛି । ସେଠାର ଜଣେ ବଡ଼ ନେତା ଓ୍ୱାର୍ଦ୍ଧା ଯିବାକୁ ବାହାରିଥିବାରୁ ତାଙ୍କୁ ଛାଡ଼ିବାକୁ ସେ ପାଟନା ଷ୍ଟେସନକୁ ଆସିଥିଲା ।

ଏତେ ଦିନ ପରେ ନବକିଶୋରଙ୍କୁ ଦେଖି ସେବକରାମ ପଛକୁ ଟିକିଏ ଏକାବେଳକେ ଭୁଲିଯାଇଥିଲା । କୋଳାକୋଳି ସରିବାପରେ ତା'ର ଆଖି ଶରଧା ଉପରେ ପଡ଼ିଲା, ସେ ନିଜକୁ ସଙ୍କୁଚିତ କରିନେଲା । ନବକୁମାର ତାକୁ କହିଲେ—କିଓ, ସେ କିଏ ଚିହ୍ନିପାରୁନ ? ସେ ପରା ତୁମ ଭାଉଜ !

ସେବକରାମ ଶରଧାର ଗୋଡ଼ଛୁଇଁ ପ୍ରଣାମ କରି ଦୁହିଁଙ୍କୁ ତା' ସାଙ୍ଗରେ ଆଶ୍ରମକୁ ଯାଇ ଅତିଥି ହେବାକୁ ନିମନ୍ତ୍ରଣ କଲା । ବାଟରେ ଗୋଟିଏ ଖଦଡ଼ ଭଣ୍ଡାର ପାଖରେ ରହିଯାଇ 'ବାଟରେ ଆମ ଖଦଡ଼ ଲୁଗାପଟା ବ୍ୟାଗଟି ହଜିଗଲା ଓ ସେଠାରୁ ଆଉ କେତେଖଣ୍ଡ ଲୁଗା କିଣିବା ନିତାନ୍ତ ଦରକାର' କହି ନବକୁମାର ଦୋକାନରେ ପଶିଲେ । ଦୋକାନରୁ ଗୋଟିଏ ଖଦଡ଼ ବ୍ୟାଗ, ଦୁଇଖଣ୍ଡି ଧଳାଶାଢ଼ୀ, ଦୁଇଖଣ୍ଡି ଧୋତି, ଖଣ୍ଡିଏ ଜହର ଜାକେଟ ଓ ଗାନ୍ଧିଟୋପିଟିଏ କିଣି ଫେରିଲେ ।

ସେମାନେ ଆଶ୍ରମରେ ପହଞ୍ଚି ସେବକରାମର କୋଠରୀରେ ଅପେକ୍ଷା କଲେ । ସେବକରାମ ତାଙ୍କ ବିଷୟ ଆଶ୍ରମ ଅଧିକାରୀଙ୍କୁ ଜଣାଇବାକୁ ଗଲା । ସେତିକିବେଳେ ନବକୁମାର ଖଦଡ଼ ପୋଷାକ ଓ ଟୋପି ପିନ୍ଧିପକାଇଲେ । ଶରଧା ମଧ୍ୟ ଖଦଡ଼ ଶାଢ଼ୀଟିଏ ପିନ୍ଧିପକାଇଲା । ସେମାନଙ୍କର ପୂର୍ବ ପୋଷାକକୁ ବ୍ୟାଗରେ ରଖିଦେଇ ସେମାନେ ସେବକରାମର ଫେରିବାକୁ ଅପେକ୍ଷା କଲେ ।

ଅଳ୍ପ ସମୟ ଭିତରେ ସେବକରାମ ଭିକାରୀଜୀଙ୍କ ଲଡ଼କା ଆଉ ବହୂଜୀ ଆସିଛନ୍ତି ବୋଲି ଆଶ୍ରମର ଚାରିଆଡ଼େ ପ୍ରଚାର କରିଦେଲା । ନବକୁମାର ଓ ଶରଧା ତା' ସଙ୍ଗେ ଯାଇ ଅଧିକାରୀଙ୍କ ସହିତ ସାକ୍ଷାତ କଲେ । ଅଧିକାରୀ ସେ ଦୁହିଁଙ୍କୁ ଆଶ୍ରମକୁ ସ୍ୱାଗତ କରି ଆଗମନର କାରଣ ପଚାରିଲେ । ସେ ଦୁହେଁ ସେ ଆଶ୍ରମରେ କିଛିଦିନ ରହି ବିଭିନ୍ନ ସେବାକାର୍ଯ୍ୟରେ ତାଲିମ ନେବାକୁ ଆସିଛନ୍ତି ବୋଲି ଉତ୍ତର ଦେଲେ । ତାହା ଶୁଣି ଅଧିକାରୀ ଖୁସିହୋଇ ସେମାନଙ୍କ ରହିବା ଓ ଖାଇବାର ବ୍ୟବସ୍ଥା କରିଦେଲେ ଓ ତାଲିମର ବନ୍ଦୋବସ୍ତ କଲେ ।

ସେଠାର କର୍ମୀମାନଙ୍କ ଭିତରୁ ଅନେକେ ନବକୁମାର ଓ ଭିଖାରୀବାବୁଙ୍କୁ ଜେଲରେ ଜାଣିଥିଲେ । ଭିଖାରୀବାବୁଙ୍କ ଆଦର୍ଶ ଆଶ୍ରମ କଥା ବି କେତେକଙ୍କୁ ଜଣାଥିଲା, ତେଣୁ ଜଣେ ଆଦର୍ଶ ଗାନ୍ଧିବାଦୀଙ୍କ ପୁଅବୋହୂ ଭାବରେ ସେ ଆଶ୍ରମର କର୍ମୀ ଓ ଅଧିକାରୀଙ୍କଠାରୁ ଆଦର ସମ୍ମାନ ଲାଭକରିବା ସ୍ୱାଭାବିକ ।

ଶରଧା ମହିଳା କର୍ମୀଙ୍କ ଗହଣରେ ସେବାକାର୍ଯ୍ୟ ଶିଖିଲି । ଗାଆଁ ଗଣ୍ଡାରେ ଗରିବ ପ୍ରସୂତିମାନଙ୍କ ସେବା କରିବା ପାଇଁ ପିଲାଜନ୍ମ କରାଇବା ପ୍ରଭୃତି ଧାଈ ଓ ନର୍ସିଙ୍ଗ ଟ୍ରେନିଙ୍ଗ ଦିଆଯାଉଥିଲା । ସେ ସେଥିରେ ଯୋଗଦେଇ ଅଳ୍ପ ଦିନ ଭିତରେ ସେ କାର୍ଯ୍ୟ ହାସଲକରି ସାର୍ଟିଫିକେଟ ପାଇଲା ।

ନବକୁମାର ମଧ୍ୟ ନିଜକୁ ସ୍ୱଳ୍ପାକ୍ଷର ପ୍ରୌଢ଼ଶିକ୍ଷା ପ୍ରଭୃତିରେ ବୁଡ଼ାଇ ରଖିଲେ । ସେ ଅହିଂସାର ମୁଖା ପିନ୍ଧି ଯେତେ ଲୁଚି ରହିଲେ ମଧ୍ୟ ସରକାରୀ ଜାଲ ଆଗରୁ ବେଶିଦିନ ଏପରି ଲୁଚି ରହିପାରିବେନାହିଁ ବୋଲି ଜାଣିପାରୁଥିଲେ । ରାତିରେ ବିଶ୍ରାମବେଳେ ଶରଧାକୁ ସେକଥା ବୁଝାଇ କହୁଥିଲେ ଓ ତାଙ୍କ ଅନୁପସ୍ଥିତିରେ ସେ କିପରି ନିଜକୁ ଚଳାଇ ଦେଶ କାମରେ ଲାଗିପାରିବ ସେଥିପାଇଁ ପ୍ରସ୍ତୁତ କରୁଥିଲେ ।

ଶରଧା ପ୍ରଥମେ ପ୍ରଥମେ ବହୁତ ପରିଶ୍ରମ କରିପାରୁଥିଲେ; କିନ୍ତୁ ତାଙ୍କ ଦେହରେ ଗର୍ଭଲକ୍ଷଣ ଦେଖାଦିବାପରେ ତାଙ୍କୁ ଆଶ୍ରମରେ ଲଘୁକାମ ସବୁ ଦିଆଗଲା । ନବକୁମାର ସେକଥା ଜାଣିପାରିବାପରେ ମା' ଓ ପିଲାଙ୍କର ଭାଗ୍ୟରେ କଅଣ ଅଛି ଓ ସେମାନଙ୍କ ଭବିଷ୍ୟତ କଅଣ ହେବ ସେ କଥା ଠିକ୍ କରିପାରୁନଥିଲେ । ସେ ବହୁ ଚିନ୍ତା କରିବା ପରେ ପିତାଙ୍କ ନିକଟକୁ ଖଣ୍ଡିଏ ପତ୍ରଦେଇ ସେଥିରେ ତାଙ୍କର ବିବାହ ଓ ଭବିଷ୍ୟତ ସନ୍ତାନ କଥା ଲେଖି ଜଣାଇଦେଇ ପତ୍ରର ସମ୍ବାଦକୁ ଗୋପନ ରଖିବା ପାଇଁ ଲେଖିଥିଲେ ।

ନବକୁମାରଙ୍କ ବିରୁଦ୍ଧରେ ଥିବା ମ୍ୟାନେଜରର ଖୁଣୀର ଓ୍ୱାରେଣ୍ଟ ପରଓ୍ୱାନା ଆସାମ ପୋଲିସ ଭାରତର ସବୁ ପୋଲିସମାନଙ୍କୁ ଜଣାଇ ଦେଇଥିଲେ । ତାଙ୍କର ସାର୍ଟିଫିକେଟରୁ ମିଳିଥିବା ଫଟୋ ଓ ଅନ୍ୟ ବିବରଣୀ ସବୁ ଥାନାରେ ଝୁଲୁଥିଲା । ଆସାମ ପୋଲିସର ଓ୍ୱାରେଣ୍ଟ ପରଓ୍ୱାନା ଦେଖିଲାପରେ ବଙ୍ଗଳା ପୋଲିସ ପୂର୍ବ ରେକର୍ଡ ଦେଖି ପୂର୍ବ ପୋଲିସ ସାହେବ ହତ୍ୟା ମୋକଦ୍ଦମା ଯେଉଁଥିରେ କି ତାଙ୍କୁ ଓଡ଼ିଆ ବୋଲି ହେୟ ମନେକରି ଛାଡ଼ିଦେଇଥିଲେ ସେଥିରେ ପୁଣି ଦୋଷୀ ସାବ୍ୟସ୍ତ କରି ତାଙ୍କ ନାମରେ ମୋକଦ୍ଦମା ରୁଜୁ କଲେ ଓ ସବୁ ପ୍ରଦେଶକୁ ଜଣାଇଦେଲେ । ଆସାମ, ବଙ୍ଗଳା ଓ ବିହାର ଓଡ଼ିଶା ଏହି ତିନୋଟି ରାଜ୍ୟର ପୋଲିସ ନବକୁମାରଙ୍କୁ ଧରିବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । ଗାନ୍ଧିବାଦୀମାନେ ସନ୍ତ୍ରାସବାଦୀ କାର୍ଯ୍ୟର ତୀବ୍ର ବିରୋଧ କରୁଥିବାରୁ ପୋଲିସ ପାଟନା ଗାନ୍ଧି ଆଶ୍ରମରେ ଖୋଜାଖୋଜି କରିନଥିଲେ ।

## ବାର

ଅନେକ ଦିନୁ ଭିଖାରୀବାବୁ ନବକୁମାରଙ୍କର କୌଣସି ସମ୍ବାଦ ନପାଇ ତାଙ୍କ ଆଶା ପ୍ରାୟ ଛାଡ଼ିଦେଇଥିଲେ । ନବକୁମାର ସାହେବ ଖୁଣୀ ସହିତ ସଂପୃକ୍ତ ବୋଲି ମଧ୍ୟ ସେ ଜାଣିନଥିଲେ କି ନବକୁମାର ତାଙ୍କ ଚିଠିରେ ମଧ୍ୟ ସେ ସମ୍ପର୍କରେ କିଛି ସୂଚନା ଦେଇନଥିଲେ । ନବକୁମାରଙ୍କ ଚିଠି ପାଇଲା ପରେ ନବକୁମାର ଓ ପୁତ୍ରବଧୂଙ୍କ କଥା ଜାଣି ସେ ବଡ଼ ଉଲ୍ଲସିତ ଓ ଆଶାନ୍ୱିତ ହୋଇଉଠିଲେ । ଚିଠିକୁ ଗୋପନ ରଖିବା ଅନୁରୋଧ ସେ ପୂରାପୂରି ଭୁଲିଗଲେ । ସେ ଚିଠିଟି ଆଶ୍ରମରେ ସ୍ପନ୍ଦନ ଖେଳାଇଦେଲା । ଅଳ୍ପସମୟ ପରେ ସେ ଖବର ଆଖ ପାଖ ଗାଁରେ ବ୍ୟାପିଗଲା । ପଦନବାବୁଙ୍କ କାନରେ ସେ କଥା ବାଜିଲା । ଜଣେ ଗୁଇନ୍ଦାପୋଲିସ ଚର ଖବରରେ ସେ ନବକୁମାରଙ୍କୁ ପୋଲିସ ଖୋଜୁଥିବା କଥା ଜାଣିଥିଲେ । ନବକୁମାରଙ୍କୁ ଧରାଇଦେବାପାଇଁ ଏକ ବଡ଼ ପୁରସ୍କାର ମିଳିବାର ଘୋଷଣା ମଧ୍ୟ ହୋଇଥିଲା । ପଦନବାବୁ ଆଗରୁ ଆଶ୍ରମକୁ ଆସି ଭିଖାରୀବାବୁଙ୍କୁ ନବକୁମାରଙ୍କ ସମ୍ବାଦ ପଚାରି ନିରାଶରେ ଫେରିଯାଉଥିଲେ ।

ପଦନବାବୁ ସେ ଖବର ପାଇବାପରେ ଭିଖାରୀବାବୁଙ୍କ ନିକଟକୁ ଆସି ଚିଠି ମିଳିଥିବା ପ୍ରସଙ୍ଗରେ ବହୁ ସହାନୁଭୂତି ସୂଚକ କଥା କହିଲେ । ତାଙ୍କ ଅନୁରୋଧରେ ଭିଖାରୀବାବୁ ଅଣ୍ଟାରୁ କାଢ଼ି ଚିଠି ଖଣ୍ଡିକ ପଦନବାବୁଙ୍କ ହାତକୁ ବଢ଼ାଇଦେଲେ । ନବକୁମାର ଠିକଣା ଦେଇନଥିଲେ ମଧ୍ୟ ଚିଠିଟି ପଢ଼ିବା ବାହାନାରେ ପଦନବାବୁ ଚିଠି ଉପରର ଡାକ ମୋହରରୁ ଠିକଣାଟା ଠଉରେଇନେଲେ । ଭିଖାରୀବାବୁଙ୍କ ସଙ୍ଗେ ମଧୁର ଆଳାପ ପରେ ପଦନବାବୁ ପୋଲିସଥାନାଆଡ଼େ ଚାଲିଲେ । ପୋଲିସ ଠିକଣାଟି ଟିପିରଖି ଉପରି ହାକିମଙ୍କୁ ଜଣାଇଦେଲେ ।

ପାଟନା ପୋଲିସ ଖବର ପାଇବାମାତ୍ରେ ସେ ଆଶ୍ରମ ଉପରେ ସତର୍କ ଦୃଷ୍ଟି ରଖିଲେ । ଅହିଂସ ଆଶ୍ରମ ଭିତରୁ ଜଣେ ବିପ୍ଳବୀଙ୍କୁ ଧରିଲେ ନାଟକ ହଇଚଇ ସୃଷ୍ଟି ହୋଇପାରେ ମନେକରି ନବକୁମାରଙ୍କୁ ଆଶ୍ରମ ବାହାରେ ଅନ୍ୟ କେଉଁସ୍ଥାନରେ ସୁବିଧା ଦେଖି ଧରିପକାଇବା ପାଇଁ ଛକିକରି ରହିଲେ ।

ନବକୁମାର ଆଶ୍ରମ ହତା ବାହାରକୁ ପ୍ରାୟ ଯାଆନ୍ତି ନାହିଁ । ଦିନେ ଆଶ୍ରମର ଜଣେ କର୍ମୀ ନିଜ ଗ୍ରାମରୁ ଫେରିବାବେଳେ ମୋଟର ଦୁର୍ଘଟଣାରେ ଆହତ ହୋଇ ପାଟନା ସରକାରୀ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବାର ସମ୍ବାଦ ଆସି ପହଞ୍ଚିଲା । ଆଶ୍ରମର ଦୁଇଜଣ କର୍ମୀ ନବକୁମାରଙ୍କୁ ସେମାନଙ୍କ ସଙ୍ଗେ ସେଠାକୁ ଯିବାକୁ ଲଗାଇଲେ । ନବକୁମାର ନିଜ ବିପଦ କଥା ସେମାନଙ୍କୁ ଜଣାଇନପାରି ବାଧ୍ୟହୋଇ ସେମାନଙ୍କ ସଙ୍ଗେ ଗଲେ । ସେ ଆଶ୍ରମରେ

ରହିଲାପରେ ଦାଢ଼ି ବଢ଼ାଇଥିଲେ ଓ ଗାନ୍ଧି ପୋଷାକରେ ପୋଲିସ ତାଙ୍କୁ ଚିହ୍ନିନପାରନ୍ତି ବୋଲି ଆଶା କରି ଗୃହଆଡ଼କୁ ଲକ୍ଷ୍ୟକରି ଯାଉଥିଲେ ।

କିଛି ବାଟ ଯିବାପରେ ଗୋଟିଏ ନିଛାଟିଆ ସ୍ଥାନରେ ଦୁଇଜଣ ବନ୍ଧୁକଧାରୀ ପୋଲିସ ଗାତରୁ ସାପ ବାହାରିପଡ଼ିବା ଭଳି ହଠାତ୍ ଆବିର୍ଭୂତ ହୋଇ ନବକୁମାରଙ୍କୁ ବେଢ଼ିଗଲେ । ତାଙ୍କ ହାତରେ ବେଡ଼ି ପିନ୍ଧାଇ, ତାଙ୍କୁ ବନ୍ଧୁକର ବାଓନେଟ୍ ମୁନ ଆଗରେ ଚଲାଇ ଚଲାଇ ଟିକିଏ ଦୂରରେ ଥିବା ଗୋଟିଏ ଘୋଡ଼ାଗାଡ଼ିକୁ ନେଇଗଲେ ।

ଅନ୍ୟ ସହକର୍ମୀ ଦୁଇଜଣ ତାଟକା ହୋଇ ଠିଆହୋଇ ରହିଲେ । ତା'ପରେ ପୋଲିସଙ୍କ ପଛରେ ଦଉଡ଼ିଯାଇ ତାଙ୍କୁ କାହିଁକି ବାନ୍ଧି ନେଉଛନ୍ତି ବୋଲି ପଚାରିବାରେ ସେମାନେ ଆଦେଶ ପାଳୁଛନ୍ତି ଓ ସେ ବିଷୟରେ ଆଉ କିଛି ଜାଣନ୍ତିନାହିଁ ବୋଲି କହିଲେ । ସେମାନେ ବେଶି ପଚରାପଚରି କରିବାରୁ ଓ ୱାରେଣ୍ଟ ଦେଖାଇବାକୁ ଜିଦ୍ ଧରିବାରୁ ଜଣେ ଜମାଦାର ରାଗିକରି କହିଲେ, "ସେ ଖୁନୀ ଆସାମୀ, ତୁମେ ଶୀଘ୍ର ଏଠାରୁ ପଳାଅ, ନହେଲେ ତୁମେ ବି ବିପଦରେ ପଡ଼ିବ ।" ବିଚରା ନିରୀହ ଗାନ୍ଧିକର୍ମୀ ଦୁଇଟି ଆଉ ରୋଗୀ ଦେଖିବାକୁ ନଯାଇ ଯେଉଁ ବାଟେ ବାଟେ ଯାଇଥିଲେ ସେଇ ବାଟେ ବାଟେ ଆଶ୍ରମକୁ ଫେରି ଅଧିକାରୀଙ୍କୁ ଜଣାଇଲେ ।

ଆଶ୍ରମବାସୀ ସେ ଘଟଣାରେ ମଧ୍ୟ ସ୍ତମ୍ଭୀଭୂତ ହେଲେ । ଶରଧାକୁ ସେ ସମ୍ବାଦ ନଜଣାଇ ସମସ୍ତେ ସେକଥା ତା'ଠାରୁ ଲୁଚାଇ ରଖିବାକୁ ଚେଷ୍ଟା କଲେ; କିନ୍ତୁ ଶରଧାକୁ ସେକଥା ଅଛପା ରହିଲା ନାହିଁ । ଶରଧା ସେ ପ୍ରସଙ୍ଗରେ କାହା ସଙ୍ଗେ ଆଲୋଚନା ନକରି ଅବିଚଳିତ ଭାବରେ ଆଶ୍ରମ କାର୍ଯ୍ୟରେ ନିଜକୁ ବୁଡ଼ାଇରଖିଲା ।

ଆଶ୍ରମର ଅଧିକାରୀ ଜଣେ ଦୁଇଜଣ ସାଥୀ ଓ ସ୍ଥାନୀୟ ଗାନ୍ଧିବାଦୀ ଓକିଲଙ୍କୁ ଧରି ନବକୁମାରଙ୍କୁ ଜାମିନରେ ଆଣିବାପାଇଁ ଥାନାକୁ ଗଲେ । ପୋଲିସ ଥାନାରୁ ନବକୁମାରଙ୍କ ବିରୁଦ୍ଧରେ ଥିବା ଗୁରୁତର ଅଭିଯୋଗମାନ ଶୁଣିବା ପରେ, ତାଙ୍କୁ ସାମୟିକ ଫେରାଇ ଆଣିବାର ଆଶା ବିଫଳ ହେବାର ଜାଣି ଆଶ୍ରମକୁ ଫେରିଲେ ।

ଅଧିକାରୀ ଆଶ୍ରମକୁ ଫେରିବାପରେ ଶରଧାଙ୍କ ବିଷୟ ଚିନ୍ତାକରି ସମସ୍ତ ବିଷୟ ବର୍ଣ୍ଣନା କରି ଭିଖାରିବାବୁଙ୍କ ନିକଟକୁ ଖଣ୍ଡେ ଜରୁରୀ ପତ୍ର ଲେଖିଲେ । ନବକୁମାରଙ୍କ ପତ୍ରପାଇ ଭିଖାରିବାବୁ ଖୁସି ହୋଇଥିଲେ; କିନ୍ତୁ ମଦନବାବୁ ତାକୁ ପଢ଼ି ମୁରୁକେଇ କରି ହସି ସେଠାରୁ ଉଠି ଚାଲିଯିବା ପରେ ମଦନବାବୁ ସିଧା ଥାନାକୁ ଯାଇଥିବାର ସମ୍ବାଦ ପାଇ ଭିଖାରିବାବୁଙ୍କ ମନକୁ ପାପ ଛୁଇଁଲା ଯେ ସେ ମଦନବାବୁଙ୍କୁ ଚିଠି ଦେଖାଇ ବୋଧହୁଏ ଭୁଲ୍ କରିଛନ୍ତି । ଚିଠିକଥା କାହାକୁ ନ ଜଣାଇବା ପାଇଁ ନବକୁମାର ଲେଖିବାରେ ହୁଏତ କିଛି ରହସ୍ୟ ଥିଲା । ସେହିଦିନଠାରୁ ନାନା ବୃଥା ଆଶଙ୍କାରେ ତାଙ୍କ ମନଟା କିପରି ଛଟପଟ ହେଉଥାଏ । ଅଜଣା ବିପଦ ଆଶଙ୍କାରେ ମନଟା ଚଞ୍ଚଳ ହୋଇଉଠୁଥାଏ । କୌଣସି କାମରେ ମନ ଲାଗୁନଥାଏ । କେତେଦିନ ପରେ ଯେତେବେଳେ ପାଟନା ଆଶ୍ରମରୁ ଚିଠିଟା

ଆସିଲା, ସେ ଚିଠିଟା ଧରିଲାବେଳକୁ ତାଙ୍କ ହାତଟା ଥରିଉଠିଲା । ସେ ବହୁତ କଷ୍ଟରେ ଲଫାପାଟି ଚିରିଦେଇ ଚିଠିଟି ପଢ଼ିବାକୁ ଚେଷ୍ଟାକଲେ । ସେ ଚିଠି ଖଣ୍ଡିକ ଯେପରି କେଉଁଠୁ ଆସି ତାଙ୍କ ମୁଣ୍ଡରେ ଅଚାନକ ଚଡ଼କ ପକାଇଦେଲା । ଏ ସଂସାରରେ ସେ ଏକାକୀ ହୋଇ ଯାଇଥିଲେ । ତାଙ୍କର ଗୃହସଂସାର ଜଞ୍ଜାଳ ବୋଲି କିଛି ନଥିଲା । ସେ ଏକମନ ଏକପ୍ରାଣରେ ଦେଶସେବାରେ ଲାଗିଥିଲେ । ପୁଅବୋହୂଙ୍କ ସମ୍ବାଦ ମିଳି ତାଙ୍କୁ କ୍ଷଣିକ ଆନନ୍ଦ ଦେଇଥିଲା; କିନ୍ତୁ ସେତେବେଳେ ସେମାନେ ପୁଣି ତାଙ୍କୁ ଜଞ୍ଜାଳ ଭିତରକୁ ଟାଣିଆଣିପାରନ୍ତି ବୋଲି ସେ ଆଶଙ୍କା ସୁଦ୍ଧା କରିନଥିଲେ । ଏବେ ହଠାତ୍ ସବୁ ବୋଝ ତାଙ୍କ ମୁଣ୍ଡରେ ଆସି ଲଦି ହୋଇଗଲା ।

ପୁଅ କ'ଣ କରିଛି କି ନକରିଛି ତାଙ୍କୁ ଜଣାନାହିଁ । ଖୁଣୀ କେଶ୍, ଖୁନ୍ ହୋଇଥିବା ଲୋକ ପୁଣି ଗୋରାସାହେବ । ମକଦ୍ଦମାର ଫଳ ଯାହାହେଉ, ମକଦ୍ଦମା ତ ଲଢ଼ିବାକୁ ହେବ । ସେଥିପାଇଁ ବଡ଼ ଓକିଲ ଦରକାର, ପଇସା ଖର୍ଚ୍ଚ ଦରକାର, ତାଙ୍କର କି ସମ୍ବଳ ଅଛି ଯେ ସେ ଲଢ଼ିପାରିବେ ! ତାଙ୍କର ସମସ୍ତ ବନ୍ଧୁ ତାଙ୍କୁ ଅହିଂସାବାଦୀ ବୋଲି ଜାଣନ୍ତି । ଏ ହିଂସାକାଣ୍ଡର ମକଦ୍ଦମାରେ ଜଡ଼ିତ ହେବାରେ ସେମାନେ ତାଙ୍କୁ କଅଣ ମନେକରିବେ ଓ କି ସାହାଯ୍ୟ ବା କରିବେ । ମକଦ୍ଦମା ବା କେଉଁ ସହରରେ ପଡ଼ିବ—ପାଟନା, କଲିକତା କି ଦଗ୍ବୁଗଡ଼ । ସେ ବା ସେଠାରେ ଯାଇ କେଉଁଠି ଆଶ୍ରୟ ନେବେ ? ବୋଝ ଉପରକୁ ନଳିତା ବଡ଼ାପରି ପୁଅର ମକଦ୍ଦମା ସାଙ୍ଗକୁ ଅନ୍ତଃସତ୍ତ୍ୱା ବୋହୂ । ସେ କି ପ୍ରକୃତିର ଝିଅ, କାହାର ଝିଅ, କି ଶିକ୍ଷା ପାଇଛି, ତା'ର ପ୍ରକୃତି କଅଣ ? ତାକୁ ଆଣି କିପରି ଚଳାଇବେ ? ତାଙ୍କର ତ ନିଜର ଘର ନାହିଁ—ତାକୁ ଆଣି ଆଶ୍ରମରେ ରଖିଲେ ସେ ଆଶ୍ରମବାସୀଙ୍କ ସଙ୍ଗେ କିପରି ଚଳିବ ? ଆଶ୍ରମ ଲୋକେ ତାକୁ କି ବ୍ୟବହାର କରିବେ ? ଏ ସବୁ ଭାବି ଭାବି ସେ ଭାବନାର ଅଳକୂଳ କିଛି ପାଇଲେନାହିଁ ।

ସେ ଦିନେ ଦୁଇଦିନ କାହାକୁ କିଛି ନକହି ଚୁପ୍ ହୋଇ ବସିରହିଲେ । ତା'ପରେ ଭାବିଲେ ବସିରହିଲେ ତ କିଛି ଲାଭ ହେବନାହିଁ—କିଛି ଗୋଟାଏ କରିବାକୁ ହେବ । ସେ ଆଶ୍ରମବାସୀଙ୍କୁ ଡାକି ସବୁ ବୁଝାଇ କହିଲେ ଓ ଯଦି ରାଜିହୋଇ ବୋହୂ ତାଙ୍କ ସାଙ୍ଗରେ ଆସେ ତାକୁ ଆଶ୍ରମରେ ନିଜ ଭଉଣୀପରି ବ୍ୟବହାର କରି ସ୍ଥାନଦେବାକୁ ସେମାନଙ୍କୁ ଅନୁରୋଧକଲେ ।

ଆଶ୍ରମବାସୀ ଭିକାରୀବାବୁଙ୍କୁ ନିଜ ବାପଠାରୁ ଅଧିକ ମନେକରନ୍ତି । ତାଙ୍କ ସୁଖରେ ସେମାନେ ସୁଖୀ ଓ ତାଙ୍କ ଦୁଃଖରେ ଦୁଃଖୀ । ସେମାନେ ସମସ୍ତେ ତାଙ୍କୁ ଓଲଟି ଧୈର୍ଯ୍ୟ ଧରିବାପାଇଁ ବୁଝାଇଲେ । ପାଟନା ଯିବାପାଇଁ ସମସ୍ତ ବନ୍ଦୋବସ୍ତ କରିଦେଲେ । ପାଟନା ଆଶ୍ରମକୁ ତାଙ୍କର ଯିବା ବିଷୟ ଜଣାଇ ଚିଠି ଲେଖାଗଲା ।

ସେ କଲିକତା ବାଟେ ପାଟନା ଯିବାପାଇଁ ଖୋର୍ଦ୍ଧାରୋଡ଼ରେ ଟିକେଟ କାଟି ପୁଣି କଲିକତା ଏକ୍ସପ୍ରେସ୍‌ର ଥାର୍ଡ଼କ୍ଲାସ ଡବାରେ ବସିଲେ । ସେ ବନ୍ଦୀହୋଇ ଝରକାରେ

ଲୁହାବାଡ଼ ଦିଆ ଗାଡ଼ିରେ ଅନ୍ୟ ବନ୍ଦୀଙ୍କ ସଙ୍ଗେ ହଜାରିବାଗ୍ ଓ ହଜାରିବାଗ୍‌ରୁ ପାଟନା ନିଆହୋଇଥିଲେ । ଏବେ ଏକୁଟିଆକି ଗାଡ଼ିରେ ବସି ଯାଉ ଯାଉ ନିଜକଥା ଓ ଦେଶକଥା ସବୁ ତାଙ୍କ ମନରେ ନାଚଉଠିଲା । ଗାନ୍ଧି କଅଣ ଦେଶକୁ ସ୍ୱାଧୀନ କରିପାରିବେ ? ଦେଶ କ'ଣ ତାଙ୍କ ଜୀବଦ୍ଦଶାରେ ସ୍ୱାଧୀନ ହୋଇପାରିବ ? ସନ୍ତ୍ରାସବାଦୀ ଯୁବକମାନଙ୍କ ନୀତି କଅଣ ଠିକ୍ ? କେତେଟା ସାହେବ ମାରି, ସେ ବାଟରେ କ'ଣ ସେମାନେ ସ୍ୱରାଜ ଆଣିପାରିବେ ? ଯୁବକମାନେ ଗାନ୍ଧୀନୀତି ଛାଡ଼ି ଏ ବିପଦସଙ୍କୁଳ ବାଟ କାହିଁକି ଧରୁଛନ୍ତି ? କେଉଁ ବାଟଟା ଠିକ୍, କେଉଁଟା ଭୁଲ୍ ?

କଲିକତା (ହାବଡ଼ା) ଷ୍ଟେସନରେ ଓହ୍ଲାଇ ସହର ଭିତରକୁ ଯିବାକୁ ତାଙ୍କ ମନ ବଳିଲା ନାହିଁ । ପ୍ଲାଟଫର୍ମରେ ପଡ଼ିରହି ସେ ଦିନଯାକ ଛଟପଟ ହେଲେ । ସନ୍ଧ୍ୟାବେଳକୁ ପୁଣି ପାଟନା ଗାଡ଼ିରେ ଯାଇ ବସିଲେ । ପାଟନା ଷ୍ଟେସନକୁ ସେ ଆଶ୍ରମର ଅଧିକାରୀ ଆସିଥିଲେ, ତାଙ୍କୁ ପ୍ରଣାମ ଜଣାଇ ଆଶ୍ରମକୁ ପାଛୋଟି ନେଲେ । ସେ ଆଶ୍ରମରେ ପହଞ୍ଚିବା ପରେ ତାଙ୍କୁ ସାକ୍ଷାତ କରିବାକୁ 'ବୋହୂ' ଡକାହୋଇ ଆସିଲା । ସାଧାସିଧା ଧଳା ଖଦଡ଼ ଶାଢ଼ୀ ପିନ୍ଧି ସେ ଆସି ତାଙ୍କୁ ମୁଣ୍ଡିଆ ମାରିଲା । ସେ ତା' ମୁଣ୍ଡଛୁଇଁ ଆଶୀର୍ବାଦ କଲେ । ସେ ଚାଲିଯିବା ପରେ ଅନ୍ୟମାନଙ୍କଠାରୁ ତା'ର ମଧୁର ବ୍ୟବହାର, କର୍ତ୍ତବ୍ୟପରାୟଣତା, ସ୍ୱାମୀଭକ୍ତି, ଧୈର୍ଯ୍ୟ ଓ ଦେଶପ୍ରୀତି ବିଷୟରେ ଭୂରି ଭୂରି ପ୍ରଶଂସା ଶୁଣିଲେ । ସେଠାରେ ସେ ଜଣେ ଆଦର୍ଶ ନାରୀକର୍ମୀ ଭାବରେ ସମ୍ମାନିତା ବୋଲି ଜାଣି ଖୁସିହେଲେ ।

ଧୂଆଧୋଇ ହୋଇ ଜଳଖିଆ ଖାଇ ବନ୍ଧୁଙ୍କ ସଙ୍ଗେ ଜେଲ ହାକିମ ପାଖକୁ ଗଲେ । ଅନୁସନ୍ଧାନରୁ ବୁଝିଲେ ପୃଥକୁ କଲିକତା ନିଆଯାଇଛି । କଲିକତା ଓ ଦିବ୍ରୁଗଡ଼ ପୋଲିସ କର୍ତ୍ତୃପକ୍ଷଙ୍କ ବୁଝାମଣା ପରେ ତା'ର କଲିକତା କଚେରୀରେ ସାହେବ ବିଚାରପତିଙ୍କଦ୍ୱାରା ବିଚାର ହେବାର ସ୍ଥିରହୋଇଛି ।

ହାକିମଙ୍କରୁ ଖବର ନେଇ ଫେରିଆସିବା ପରେ କଲିକତା ଗାନ୍ଧିଆଶ୍ରମର କେତେକ ନେତାଙ୍କ ନିକଟକୁ ଭିଖାରୀବାବୁଙ୍କ ଯିବା ବିଷୟ ଜଣାଇ ଓ ତାଙ୍କୁ ସାହାଯ୍ୟ କରିବାକୁ ଅନୁରୋଧ କରି ଚିଠି ଲେଖାଗଲା । ବୋହୂ ବିଷୟ କଅଣ ହେବ ବିଚାର ହେବାରୁ ଆଶ୍ରମବାସୀ ତାଙ୍କୁ ସେଇଠାରେ ରଖିବା ପାଇଁ ଆଗ୍ରହ ପ୍ରକାଶକଲେ । ସେ ବୋହୂର ମତ ଜାଣିବାପାଇଁ ବୋହୂକୁ ଡକାଇବାରୁ, ସେ କାନ୍ଦ କାନ୍ଦ ହୋଇ କହିଲା—ଏମାନେ ସମସ୍ତେ ମତେ ଭଲ ପାଆନ୍ତି, ଆଦର କରନ୍ତି; କିନ୍ତୁ ମୁଁ ଆପଣଙ୍କର ବୋହୂ, ମୋର ସ୍ୱାମୀ ବିପଦରେ ପଡ଼ିଛନ୍ତି, ମୋର ସ୍ଥାନ ଆପଣଙ୍କ ପାଦତଳେ । ଆପଣ ମୋର ବାପ ମା' । ଆପଣଙ୍କ ବୃଦ୍ଧାବସ୍ଥାରେ ଆପଣଙ୍କ ପାଖେ ରହି ଆପଣଙ୍କ ପଦସେବା କରିବା ମୋର କର୍ତ୍ତବ୍ୟ । ମୁଁ ଆପଣଙ୍କ ପରି ସମଦୁଃଖୀଙ୍କ ପାଖରେ ରହିଲେ ସ୍ୱାମୀ ବିଚ୍ଛେଦ ଦୁଃଖ ଭୁଲିଯାଇ ପାରିବି । ମୋତେ ଛାଡ଼ି ଚାଲିଯାଆନ୍ତୁ ନାହିଁ ।

ବୋହୂର କଥାରେ ତାଙ୍କ ହୃଦୟ ବାତ୍ସଲ୍ୟ ସ୍ନେହରେ ପୂର୍ଣ୍ଣ ହୋଇଗଲା । ସେ ତା'ର ପିଠି ଆଉଁସି ଆଉଁସି କହିଲେ—ହଉ ହଉ ମା, ମୋର ଆଉ କିଏ ଅଛି, ତୁ ଶେଷରେ ମିଳିଛୁ, ମୁଁ ତତେ ଛାଡ଼ିକରି କପରି ଚାଲିଯିବି ? ଆ ମୋ ସଙ୍ଗରେ ଯିବୁ । ମୋ ଦୁଃଖରେ ଭାଗିହେବୁ । ତୋତେ ଦେଖି ମୋର ଦୁଃଖ ଲାଘବ ହେବ ।

ବୋହୂକୁ ସାଙ୍ଗରେ ଧରି ସେ କଲିକତା ଷ୍ଟେସନରେ ପହଞ୍ଚିଲେ । କଲିକତା ଆଶ୍ରମରୁ ଜଣେ ଦୁଇଜଣ ତାଙ୍କୁ ଦେଖାକରିବାକୁ ଆସିଥିଲେ । ସେମାନଙ୍କ ସଙ୍ଗେ ସେ ବହୁ ସମୟଧରି ସମସ୍ତ ବିଷୟ ଆଲୋଚନା କଲେ । ସେମାନେ ପୂର୍ବରୁ ନବକୁମାରଙ୍କ ମୋକଦ୍ଦମା ବିଷୟ ବୁଝିକରି ଆସିଥିଲେ । ଜଣେ ଜାତୀୟବାଦୀ ନାମଜାଦା ଓକିଲ ସ୍ୱତଃପ୍ରବୃତ୍ତ ହୋଇ ବିନା ପାରିଶ୍ରମିକରେ ନବକୁମାରଙ୍କ ପକ୍ଷରୁ ଓକିଲ ହୋଇ ମୋକଦ୍ଦମା ଚଳାଇବା ପାଇଁ ପ୍ରତିଶ୍ରୁତି ଦେଇଥିବା ସମ୍ବାଦ ଭିଖାରୀବାବୁଙ୍କୁ ଜଣାଇଲେ । ଭିଖାରୀବାବୁ ବୋହୂକୁ ଆଶ୍ରମରେ ରଖାଇସାରି ମୋକଦ୍ଦମାର ବିଚାର ତାରିଖ ଦିନ କଲିକତା ଫେରିବେ ବୋଲି କହି ସେମାନଙ୍କୁ ବିଦାୟଦେଲେ ।

ସେ ବୋହୂକୁ ଧରି ଆଶ୍ରମରେ ପହଞ୍ଚିବା ସଙ୍ଗେ ସଙ୍ଗେ ଆଶ୍ରମବାସୀ ତାଙ୍କୁ ଦେଖି ପୁଣି କୋଟିନିଧି ଫେରିପାଇଲା ପରି ଗଦ୍‌ଗଦ ହୋଇ ତାଙ୍କ ଚାରିପଟେ ଘେରିଗଲେ । କିଏ କେତେ ପ୍ରଶ୍ନ ପଚାରି ପକାଇଲେ । କର୍ମୀଙ୍କ ଭିତରୁ ଜଣେ ବୃଦ୍ଧା ରାଧାକୁ ଆଦର କରି ସାଙ୍ଗରେ ନେଇ ତାଙ୍କ ପାଇଁ ପ୍ରସ୍ତୁତ ହୋଇଥିବା କୋଠରିରେ ରଖାଇଲେ । ଅନ୍ୟମାନେ ବି ତା'ର ମନ ଖରାପ ଥିବ ଜାଣି ତାକୁ କେହି କିଛି ପ୍ରଶ୍ନ ନପଚାରି କେବଳ ତା'ର ସୁବିଧା ଅସୁବିଧା ପଚାରି ବୁଝିବାକୁ ଲାଗିଲେ ।

ରାଧା ଆଶ୍ରମବାସୀଙ୍କର ତା'ର ଶ୍ୱଶୁରଙ୍କ ପ୍ରତି ଭକ୍ତି ଶ୍ରଦ୍ଧା ଦେଖି ନିଜକଥା ପ୍ରାୟ ଭୁଲିଯାଇଥିଲା । ବୃଦ୍ଧାଙ୍କର ମାତୃପ୍ରତିମ ବ୍ୟବହାର ଦେଖି ତାକୁ ପୁଣି ନିଜ ବାପ ମା'ଙ୍କ ପାଖକୁ ଫେରି ଆସିବା ପରି ବୋଧହେଲା ।

× × × ×

କଲିକତା ସେସନ୍‌ସ କୋର୍ଟରେ ବିପ୍ଳବୀ ନବକୁମାରଙ୍କ ବିଚାର । ନବକୁମାର କାଠଗଡ଼ା ଭିତରେ ନିର୍ଭୀକ ଭାବରେ ଠିଆହୋଇଛନ୍ତି । ଦର୍ଶକମାନଙ୍କ ପାଇଁ ସଂରକ୍ଷିତ ସ୍ଥାନ ଭରିପୂର । ଦର୍ଶକ ଭାବରେ ଗାନ୍ଧିବାଦୀ କର୍ମୀମାନଙ୍କ ଭିତରେ ଭିଖାରୀବାବୁ ମନ୍ତ୍ରମୁଗ୍ଧ ପରି ବସିରହିଛନ୍ତି । ଗୋରା ବିଚାରପତି କଳା କୋଟ୍ ପିନ୍ଧି, ମୁଣ୍ଡରେ କୁଞ୍ଚୁକୁଞ୍ଚିଆ ଧଳା ମସ୍ତକ ଆଚ୍ଛାଦନୀ ପରଚୁଲା ଲଗାଇ କୋଠରିରେ ପ୍ରବେଶ କଲେ । ସେ ବିଚାରକ ଆସନ ଅଲଙ୍କୃତ କରିବା ପର୍ଯ୍ୟନ୍ତ ସମସ୍ତେ ଠିଆହୋଇ ରହିଥିଲେ ।

ଯେଉଁ ଦୁଇଟି ମାମଲାରେ ନବକୁମାର ଅଭିଯୁକ୍ତ, ସେ ମାମଲାରେ ପୂର୍ବରୁ ବିଚାର ହୋଇ ଚନ୍ଦ୍ର ପ୍ରଧାନଙ୍କ ସମେତ ଅନ୍ୟ କେତେକଙ୍କର ଫାଶୀଦଣ୍ଡ ହୋଇସାରିଥିଲା । ନବକୁମାର ପଛରେ ଧରାପଡ଼ିବାରୁ ତାଙ୍କର ବିଚାରରେ ଡେରିହୋଇଥିଲା ।

ବିଚାର ଆରମ୍ଭ ହେଲା । ସରକାରୀ ପକ୍ଷ ଓକିଲ ମୋକଦ୍ଦମା ପେଶ୍ କଲେ । ସରକାରୀ ଭଡ଼ାଟିଆ ସାକ୍ଷୀମାନେ ଦୁଇଟିଯାକ ମୋକଦ୍ଦମାରେ ନବକୁମାରଙ୍କ ବିରୁଦ୍ଧରେ ସାକ୍ଷ୍ୟ ପ୍ରଦାନ କଲେ । ସରକାରୀ ଓକିଲ ନବକୁମାରଙ୍କୁ ଦୋଷୀ ସାବ୍ୟସ୍ତ କରିବା ପାଇଁ ଏକ ସୁଦୀର୍ଘ ବକ୍ତୃତା ଦେଲେ । ନବକୁମାରଙ୍କ ଓକିଲ ଜବାବସୁଆଲ କଲେ ।

ଏପରି ଆଠଦିନ ଧରି ମୋକଦ୍ଦମାର ଶୁଣାଣି ଚାଲିଲା । ନବକୁମାରଙ୍କ ଓକିଲ ବହୁ ଆଇନ କାନୁନ ଦର୍ଶାଇ ସେ ଯେଉଁସବୁ ଘଟଣା ସହିତ ସମ୍ପୃକ୍ତ ନୁହନ୍ତି ଓ ସେପରି କୌଣସି ଘଟଣା କାଳରେ ସେ ଉପସ୍ଥିତ ନଥିଲେ ବୋଲି ଯୁକ୍ତି ବାଢ଼ି ତାଙ୍କୁ ନିର୍ଦ୍ଦୋଷରେ ଖଲାସ କରିଯିବା ପାଇଁ ହାକିମଙ୍କୁ ଅନୁରୋଧ କଲେ ।

ମୋକଦ୍ଦମା ସରିଲା । ରାୟ ବାହାରିବା ଦିନ ଆସିଲା । ବିଚାରକଙ୍କ କୋଠରୀ ଦର୍ଶକରେ ଭରପୂର ହେଲା । ସେଠାରେ ଛୁଞ୍ଚି ପଡ଼ିବାକୁ ମଧ୍ୟ ସ୍ଥାନ ନ ଥିଲା । ବିଚାରକ ପଞ୍ଚଶ ପୃଷ୍ଠା-ସମ୍ବଳିତ ଦୀର୍ଘ ସନ୍ଦର୍ଭ ପାଠକଲେ । ଦର୍ଶକମାନଙ୍କ ଭିତରେ ଫୁସ୍‌ଫାସ ଚାଲିଲା ।

ହାକିମଙ୍କର ରିପୋର୍ଟ ଲୋକଙ୍କୁ ଭୁଲାଇବା ଭଳି ଏପରି ସୁନ୍ଦର ଭାବରେ ଲେଖା-ଯାଇଥିଲା ଯେ ବେଳେ ବେଳେ ତାହା ଶୁଣି କାହା କାହା ମନରେ ନବକୁମାର ନିର୍ଦ୍ଦୋଷରେ ଖଲାସ ହୋଇପାରନ୍ତି ବୋଲି ଆଶାର ଉଦ୍ରେକ ହେଲା । ଅବଶ୍ୟ ଏପରି ମୋକଦ୍ଦମାରେ ଇଂରେଜ ବିଚାରପତିଙ୍କ ରାୟ ଆଗରୁ ଶୁଣିଥିବା ଲୋକେ ନୀରବରେ ବସିଥାଆନ୍ତି । ସେମାନଙ୍କ ମନରେ ନିରାଶାର ତେଉ ହିଁ ଖେଳିଯାଉଥାଏ ।

ଶେଷରେ ରାୟ ବାହାରିଲା—ନବକୁମାରଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ମିଳିଲା । ଫାଶୀ ନ ହୋଇ କଳାପାଣି ବା ଆଣ୍ଡାମାନ ଦ୍ୱୀପପୁଞ୍ଜକୁ ଦ୍ୱୀପାନ୍ତର ହୋଇଥିବାରୁ କେହି କେହି ମନରେ ଅଳ୍ପ ଆଶ୍ୱସ୍ତି ଅନୁଭବ କଲେ । ସମସ୍ତେ ନବକୁମାରଙ୍କ ପ୍ରଫୁଲ୍ଲ ମୁଖମଣ୍ଡଳକୁ ଚାହିଁ ଦୁଃଖରେ ମୁଣ୍ଡ ପୋତିଦେଲେ ।

ନବକୁମାର ଦର୍ଶକମାନଙ୍କ ଭିତରେ ପିତାଙ୍କୁ ଦେଖି ତାଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ନୁଆଁଇ ପ୍ରଣାମ ଜଣାଇଲେ ଓ ଅନ୍ୟମାନଙ୍କୁ ଉଦ୍ଦେଶ୍ୟ କରି 'ବନ୍ଦେ ମାତରଂ' ଧ୍ୱନି ଦେଲେ । ଦର୍ଶକ-ମାନଙ୍କର ବନ୍ଦେ ମାତରଂ ପ୍ରତିଧ୍ୱନିରେ ସେ ଗୃହ ପ୍ରକମ୍ପିତ ହେଲା ।

ବିଚାରପତି ତାଙ୍କର ଆସନରୁ ଉଠି ଭିତର କୋଠରୀକୁ ଚାଲିଗଲେ । ରକ୍ଷୀମାନେ ନବକୁମାରଙ୍କୁ କଡ଼ା ପହରା ସହିତ କାରାଗାରକୁ ନେଇଗଲେ । ଦର୍ଶକମାନଙ୍କ ମଧ୍ୟରୁ ଅଧିକାଂଶ ମୁହଁ ଶୁଖାଇ ଯେଝା ଘରକୁ ଫେରିଲେ ।

ପରଦିନ ଅନୁମତି ନେଇ ପୁତ୍ର ସହିତ ଶେଷ ମିଳନ ପାଇଁ ପିତା କାରାଗାରକୁ ଗଲେ । ନବକୁମାରଙ୍କ ହସ ହସ ମୁହଁ । ମନରେ ତିଳେହେଲେ ଅନୁତାପ ନାହିଁ, ଦୁଃଖ ନାହିଁ । ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରି ଭାରତମାତା ପାଇଁ କାରାବରଣ କରିବାରେ ସେ ଗର୍ବ ଅନୁଭବ କରୁଥିଲେ । ସେ ବାପାଙ୍କୁ ଦେଖି ପ୍ରଣାମ କରିସାରିବା ପରେ ତାଙ୍କ ପାଇଁ ଦୁଃଖ ନକରିବାକୁ ଅନୁରୋଧ କଲେ । ସେ କେଉଁ ପରିସ୍ଥିତିରେ ପଡ଼ି କପଟ ଶତ୍ରୁଧାରୀ ବିବାହ କରିଥିଲେ

ସେତିକି ବର୍ଣ୍ଣନା କରି, "ଶରଧା ଅତି ଝିଅ‌ଟିଏ ଓ ସରଳା, ତା'ର ଆଉ କେହି ନାହିଁ, ସେ ତୁମକୁ ଲାଗିଲା । ମୁଁ ତୁମର ଏ ବୟସରେ, ଏତେ ଗୁରୁଦାୟିତ୍ୱ ତୁମ ମୁଣ୍ଡରେ ଲଦି ଯାଉଛି । ପୁଅ ହୋଇ ଦିନେ ତୁମର ସେବା କରିପାରିଲି ନାହିଁ—ମୋତେ କ୍ଷମା କରିବ ।"—ବୋଲି କହି ପିତାଙ୍କୁ ବିଦାୟଦେଲେ ।

କଲିକତାର ଓଡ଼ିଆ ଓ ଆଶ୍ରମବନ୍ଧୁମାନଙ୍କୁ ସେମାନଙ୍କ ସ୍ନେହ ଓ ଅକାତର ସାହାଯ୍ୟ ପାଇଁ ଧନ୍ୟବାଦ ଦେଇ ଭିଖାରିବାବୁ ଆଶ୍ରମକୁ ଲେଉଟିଲେ ।

ଆଶ୍ରମରେ ଅପ୍ରୀତିକର ବିଷାଦର ଛାୟା ଖେଳିଯାଇଥିବା ସେ ଅନୁଭବ କଲେ । ଶରଧାର ଗର୍ଭପାତ ହୋଇ ଦେହ ଭଲ ନଥିବା କଥା ବୃନ୍ଦାକର୍ମୀଙ୍କଠାରୁ ସେ ଶୁଣିବାକୁ ପାଇଲେ । ଯେ କୌଣସି ସ୍ତ୍ରୀଲୋକ ପାଇଁ ଗର୍ଭର ପ୍ରଥମ ତିନିମାସରେ ଶାରୀରିକ ପରିଶ୍ରମ ଓ ଯାନ-ବାହନରେ ଦୂର ଯାତ୍ରା କରିବା ମନା । ଶରଧା ବାଧ୍ୟହୋଇ ଦୀର୍ଘ ପଥ ଯାତ୍ରା କରିଥିଲେ ଓ ଆଶ୍ରମରେ ପହଞ୍ଚିବାପରେ କଠିନ ପରିଶ୍ରମ କରୁଥିଲେ ଓ ନବକୁମାରଙ୍କ ମକଦ୍ଦମା ବିଷୟ ଚିନ୍ତାକରି ମାନସିକ ଯନ୍ତ୍ରଣାରେ ଛଟପଟ ହେଉଥିଲେ । ସେହି ସବୁ କାରଣରୁ ଶ୍ୱଶୁରଙ୍କ ଅନୁପସ୍ଥିତିରେ ତାଙ୍କର ଯନ୍ତ୍ରଣା ଆରମ୍ଭ ହୋଇ ଗର୍ଭପାତ ହୋଇଗଲା । ସେ ଶଯ୍ୟାଶାୟୀ ହୋଇପଡ଼ିଥିଲେ ।

ବୋହୂର ଗର୍ଭପାତ ବିଷୟ ଶୁଣିବା ପରେ ତାଙ୍କର ବଂଶ ରକ୍ଷାର ସମସ୍ତ ଆଶା ଧୂଳିସାତ୍ ହୋଇଗଲା । ସେ ଶରଧାକୁ କି ସାନ୍ତ୍ୱନା ଦେବେ, ଠିକ୍ କରିପାରିଲେ ନାହିଁ । ତାହାର ଆବେଗ୍ୟ ଲାଭପାଇଁ ସେ ଭଗବାନଙ୍କ ନିକଟରେ ପ୍ରାର୍ଥନା କଲେ ଓ ନିଜ ମନକୁ ବୋଧଶୋଧ ଦେବାପାଇଁ ଗୀତାପାଠ କରିବା ପରେ ନିଜ କର୍ତ୍ତବ୍ୟରେ ଲାଗିଲେ ।

ଆଶ୍ରମରେ ଆଶ୍ରମବାସୀଙ୍କ ଛଡ଼ା ଆଖପାଖ ଗାଁଗଣ୍ଡାରୁ ଅନ୍ୟଲୋକେ ମଧ୍ୟ ଆଶ୍ରମକୁ ଆସି କୃଷିକାର୍ଯ୍ୟ ଓ ଅନ୍ୟ ଛୋଟ ଛୋଟ କାମରେ ସାହାଯ୍ୟ କରନ୍ତି । ସେମାନଙ୍କ ଭିତରେ ପଦ୍ମନ ବାବୁଙ୍କ ଚରସବୁ ମଧ୍ୟ ଥାଆନ୍ତି । ସେମାନଙ୍କ ଭିତରେ ଏପରି ପରନିନ୍ଦୁକ ଥାଆନ୍ତି ଯେ ଛି ପରର ଛିଦ୍ର ଖୋଜିବୁଲନ୍ତି ଓ ସାଧୁଲୋକଙ୍କ ନାମରେ ବି ମିଥ୍ୟା ପ୍ରଚାର କରି ସାନ କଥାଟିକୁ ବଡ଼କରି କହି ଆତ୍ମସୁଖ ଅନୁଭବ କରନ୍ତି । ସେମାନେ ଭିଖାରିବାବୁଙ୍କଠାରୁ ସମସ୍ତ ସ୍ନେହ ସହାନୁଭୂତି ପାଇବା ସତ୍ତ୍ୱେ ଆଶ୍ରମବାସୀଙ୍କ ନାମରେ ମିଥ୍ୟା ରଟନା କରିବା ଓ ଯୋଡ଼ାଯୋଡ଼ି କରି ବଦ୍‌ନାମ ଗାଇବୁଲିବାକୁ ପଛାଇଲେ ନାହିଁ । ଭିଖାରିବାବୁଙ୍କ ବୋହୂ ବିଷୟରେ ଆଖପାଖ ଗାଁରେ ବହୁପ୍ରକାର ଗୁଜବ ପ୍ରଚାର ହୋଇଗଲା—"ପୁଅମାନଙ୍କୁ ହରାଇ ଭିଖାରିବାବୁ ଗୋଟାଏ ଛତରଖାଇକୁ ବୋହୂ ବୋଲି ଗୋଟାଇ ଆଣିଛନ୍ତି । ତାଙ୍କ ବଡ଼ପୁଅ ଖୁଣ୍ କରି କଳାପାଣି ପାଇଲା, ସେ କେଉଁଠି ସେଇଟାକୁ ମାଇପ କରି ରଖିଥିଲା । ସେ ମାଇପିଟା ପେଟରେ କାହା ପିଲା ଥିଲା କେଜାଣି, ନିଜ ପୁଅର ପିଲା ତା' ପେଟରେ ଅଛି ବୋଲି ଭାବି ଭିଖାରିବାବୁ ଗୋଟାଏ ଛତରଖାଇକୁ ବୋହୂ ବୋଲି ଗୋଟାଇ ଆଣିଛନ୍ତି । ସେ କାଉଁରୀ କାମରୂ ଦେଶରୁ ଆସିଛି, ସାକ୍ଷାତ ଡାହାଣୀଟାଏ—ସେ ପିଲା ପେଟରେ ରଖନ୍ତା !

ତାଙ୍କୁ କାହିଁ କେଉଁଠି କଣ୍ଟାରେ ଘେରିବାଇ ଖାଇଗଲା । ସେ ସବୁବେଳେ ଚୁପ୍‌ଚାପ୍ ରହେ; କିନ୍ତୁ ଗୁଣୀ ମନ୍ତ୍ର ସବୁ ତାକୁ ଜଣା, ସେ ମନକୁମନ ଏକୁଟିଆ କଥଣ କଥାବାର୍ତ୍ତା ହେଉଥାଏ । ଗୁଣୁଗୁଣୁ କରି ମନ୍ତ୍ର ବୋଲୁଥାଏ । ସେ ଆଶ୍ରମର ନାଁ ବୁଡ଼ାଇଦେବ । ଗାଁ ଗଣ୍ଡାରେ ବୁଲି ରାତିରେ କଞ୍ଚା ରକତ ଶୋଷିନବ ।"

ଦେହ ସୁସ୍ଥ ଲାଗିବା ପରେ ଶରଧା ଆଶ୍ରମ କାମରେ ଲାଗିଲା । ଆଶ୍ରମବାସୀ ରୋଗରେ ପଡ଼ିଲେ ଦିନରାତି ସେମାନଙ୍କର ସେବାକଲା । ଗରିବ ଓ ହରିଜନମାନଙ୍କ ସେବା କରିବା ପାଇଁ ଅନ୍ୟମାନଙ୍କ ସଙ୍ଗେ ସେଠାକୁ ଯାଇ ହରିଜନ ସାହି ସଫାସୁତୁରା କରିବାଠାରୁ ସେଠାରେ କିଏ ବାଧିକ ପଡ଼ିଲେ ତା'ର ସେବାକଲା । କିଏ ପିଲା ଜନ୍ମକରିବାକୁ ଥିଲେ ତା'ର ଯତ୍ନନେଇ ପ୍ରସବ କରାଇବା କାର୍ଯ୍ୟ ପ୍ରଭୃତି ଆରମ୍ଭ କରିଦେଲା । ଗରିବଗୁରୁବା ସବୁ ପ୍ରଥମେ ତାକୁ ଡରୁଥିଲେ; କିନ୍ତୁ ତା'ର ସରଳ ବ୍ୟବହାରରେ ତା' ସମ୍ବନ୍ଧରେ ହେଉଥିବା ପ୍ରଚାରରେ କାନ ନଦେଇ ତାକୁ ନୂଆ ମାଆ ବୋଲି ଡାକିଲେ । ଦିନେ ଗୋଟିଏ ହରିଜନ ସାହିରୁ ପ୍ରସବ କରାଇବା ପାଇଁ ତାକୁ ଡାକରା ଆସିଲା । ପ୍ରଥମେ ପ୍ରଥମେ ସେ ଆଶ୍ରମର କାହାକୁ ଜଣକୁ ହେଲେ ସାଙ୍ଗରେ ଧରି ଯିବାଆସିବା କରୁଥିଲା । ରାସ୍ତାଘାଟ ଓ ହରିଜନଙ୍କ ସଙ୍ଗେ ପରିଚିତ ହେବା ପରେ କେହି ସଙ୍ଗୀ ନମିଳିଲେ ଏକୁଟିଆ ଯିବା ଆସିବା କରିବା ଆରମ୍ଭ କରିଦେଇଥିଲା ।

ସେଦିନ ଡାକରା ଆସିଲାବେଳେ ସେ ତା'ର ଦୈନନ୍ଦିନ କାର୍ଯ୍ୟ ଶେଷକରି ଔଷଧପତ୍ର ଯୋଗାଡ଼କରି ବାହାରିବାକୁ ଟିକିଏ ଡେରି ହେବାରୁ ତାକୁ ଖବର ଦେବାକୁ ଆସିଥିବା ଲୋକଟି ମଧ୍ୟ ଆଗରୁ ସେ ଗାଆଁକୁ ଫେରିଯାଇଥିଲା । ସାଙ୍ଗରେ ଯିବାକୁ ଆଶ୍ରମର କାହାକୁ ନ ପାଇ ସେ ଏକୁଟିଆ ବାହାରିଲା । ଡାକରା ଆସିଥିବା ଗାଆଁକୁ ପଦନବାବୁଙ୍କ ବାଡ଼ିପଟେ ଗୋଟିଏ ଚାଲିବାଟ ଥାଏ । ସାଧାରଣ ରାସ୍ତାରେ ଗଲେ ବହୁତ ବୁଲିବୁଲି କରି ଯିବାକୁ ପଡ଼େ— ସେ ଚାଲି ରାସ୍ତାଟିରେ କମ୍ ବାଟ ପଡ଼େ । ତା'ର ପରିଧେୟ ଖଣ୍ଡେ ସାଧା ଧଳା ଖଦଡ଼ ଶାଢ଼ୀ । ହାତରେ ଔଷଧପତ୍ର ଓ ପ୍ରସୂତି କରାଇବାର ସାଧାରଣ ଯନ୍ତ୍ରପାତି ଥିବା ଗୋଟିଏ କଳା ଟିଣ ବାକ୍ସ । ସେ ବାକ୍ସଟି ଧରି ତରତରରେ ଶରଧା ସେ ବାଟରେ ଯାଉଥିଲା ।

ଉପରବେଳା—ଘଣ୍ଟା କ ପାଞ୍ଚଟା ବାଜିବ । ସେ ଗାଆଁର ବାଡ଼ିପଟେ ସ୍ତ୍ରୀଲୋକ-ମାନେ ବାଡ଼ପିଣ୍ଡାରେ ବସି ଗପରେ ମାତିଥିଲେ । ଛୋଟ ଛୋଟ ପିଲମାନେ ପିଣ୍ଡାତଳେ ଧୂଳିଖେଳ ଖେଳୁଥିଲେ । ଉର୍ଦ୍ଧି ଓ ଶୁଣି ଦୁଇଟି ଦଶ ଏଗାର ବର୍ଷର ଝିଅ । ଟିକିଏ ଦୂରରେ ପୁଚି ଖେଳୁଥିଲେ, ପୁଚିରେ 'ଯାଆ ଯାଆ ରୁ ଘୁଞ୍ଚିରେ' କହୁ କହୁ ଦୁହିଁଙ୍କ ଭିତରେ କଳହ ଆରମ୍ଭ ହୋଇଗଲା । ଉର୍ଦ୍ଧିର ବର୍ଣ୍ଣ ଟିକିଏ ମଇଳା; କିନ୍ତୁ ଗଠନ ସୁନ୍ଦର । ତା'ର ସାଙ୍ଗମାନେ ତା' ଉପରେ ରାଗିଗଲେ, କାଳିଆ ଉର୍ଦ୍ଧି ବୋଲି ଚଡ଼ାନ୍ତି । ସେ ମଧ୍ୟ ସେଥିରେ ଚିଡ଼ଉଠି ଗାଳିଗୁଲଜ କରେ ବା ଆଉଠାରୁ ଶିଖିଥିବା ଢଗମାନ ବୋଲେ ।

ଶୁଣିଛି ଗୋରୀ ଓ ସୁନ୍ଦରୀ; କିନ୍ତୁ ପିଲାଦିନୁ ତା' ଅଖିରେ କଣ୍ଟା ବାଜି ଗୋଟିଏ ଆଖି ଫୁଟିଯାଇଥାଏ । ନଜାଣିଥିବା ଲୋକ ତା'ର ସେ ଆଖିକୁ ଦିଶୁନଥିବା କଥା ଜାଣିପାରନ୍ତି ନାହିଁ; କିନ୍ତୁ ତା'ର ସାଙ୍ଗମାନେ ତାକୁ କାଣୀ ଶୁଣି ବୋଲି ଟାପରୀ କରନ୍ତି ।

ପୁଚି ଖେଳରେ ଶୁଣି ରଗିଯାଇ ତରୀକୁ କାଳିଆ ତରୀ, ଗୁନ୍ଦୁରୀ ଅପା, କେତେ ଢଙ୍ଗ କାଢୁଚୁ ବୋଲି କହିଲା । ତରୀ ତା' କଥାରେ ଚିଡ଼ିଯାଇ ଶୁଣିକୁ ଟାପରୀ କରି ଢଗ ମେଲିଦେଲା—

କାଣୀ ଝାଣୀ ବଗପକ୍ଷୀ, କାଣୀ ଯାଇଥିଲା ଦହିଁ ଦେଖି
ଦହିଁ କହିଲେ ହଉ ହଉ, ଆଉ ଆଖିଟି ଫୁଟିଯାଉ ।

ଶୁଣିକୁ ଢଗ ଆସେନାହିଁ । ସେ ରଗିକରି ତାକୁ କହିଲା—ଓହୋ, ତୋର ଖୁବ ଗର୍ବ ହୋଇଯାଇଛି, ନାହିଁ । ତୋ ଆଖି ଦୁଇଟାକୁ ଦେଖି ଏବେ ରଜାପୁଅ ଆସି ତୋ କାଳି-କୋଚଟ ରୂପକୁ ଦେଖିକରି ନେଇଯିବ !

ତରୀ ସେଥିରେ ଦବିନଯାଇ ତାକୁ ଚିଡ଼ାଇ ଦେଇ ମାରି ମାରି ଅଉ ଏକ ଢଗ ବୋଇଲା—ହୁଁ ହୁଁ, ତୋ ପାଇଁ ସୁନ୍ଦର ବର ବାହାହୋଇ ବେଦୀରେ ବସିଲାବେଳେ ତୋ ବୋଉ ଜୋଇଁକୁ କହିବ—

ହେଣ୍ଡିରେ ହେଣ୍ଡିରେ, କାଣୀ ଝିଅ ଦେଲି ଭଣ୍ଡିରେ

ସେଥିରେ ତୋ ବର ତା' ମୋଟାସୋଟା ଗୋଡ଼ରୁ ଲୁଗା କାଢ଼ିଦେଇ ତୋ ବୋଉକୁ ଦେଖାଇ କହିବ—

ଶାଶୁଏ କାହିଁକି ହସନ୍ତି
କାଣୀ ଝିଅକୁ ଗୋଦରୀ ବର ଏଇଠି ଅଛନ୍ତି ।

ଏ ବାକ୍ୟଯୁଦ୍ଧ ହୁଏତ କାମୁଡ଼ାକାମୁଡ଼ି, ରାମ୍ପୁଡ଼ା ରାମ୍ପୁଡ଼ି ପ୍ରଭୃତି ଶାରୀରିକ ଯୁଦ୍ଧରେ ପରିଣତ ହୋଇଥାନ୍ତା, କିନ୍ତୁ ଏପରି ବୋଲିବୋଲି ହେଲାବେଳେ ତାଙ୍କ ଆଖି କଳା ବାକ୍ସ ଧରି ଦୂରରେ ଆସୁଥିବା ଶରଧା ଉପରେ ପଡ଼ିଗଲା । ସେମାନେ—ଆଲୋ ବୋଉ ଲୋ, ଆଗ୍ରମ ଡାହାଣୀଟା ଆସୁଚି, ରକ୍ତ ଶୋଷିନବ ଲୋ ! ବୋଲି କହି ଢଗଡମାଳି ବନ୍ଦକରି ସେଠାରୁ ଦଉଡ଼ି ପଳାଇବାକୁ ଉଦ୍ୟତ ହେଲେ । ତାଙ୍କ ଯୁଦ୍ଧ ସେଇଠି ଶେଷ ହୋଇଗଲା ।

ସେତିକିବେଳକୁ ବାଡ଼ିଦୁଆରେ ବସିଥିବା ଶାଶୁ ହାତକୁ ବୋହୂଟିଏ ତା'ର କଅଁଳା ପୁଅଟିକୁ ଧରାଇ ଦେଉଥିଲା । ଶାଶୁ ପିଲାଙ୍କ ପାଟିରେ ଚମକିପଡ଼ି, 'ଆଲୋ, ଡାହାଣୀଟାର ମୋ ଧନ ଉପରେ ଆଖି ପଡ଼ିଲେ ତାକୁ ଶୋଷିନବ ଲୋ' ବୋଲି କହି ବୋହୂକୁ ପିଲାଟାକୁ ବଢ଼ାଇଦେଇ ଦଉଡ଼ିକରି ଘର ଭିତରକୁ ନେଇଯିବାକୁ ଆଦେଶ ଦେଲା ।

ସ୍ତ୍ରୀଲୋକମାନେ ଚୁପ୍ ଚୁପ୍ ବସିରହିଲେ । ସେ ବାଟରେ ଆଡ଼େଇ ହୋଇ ମୁଣ୍ଡ ପୋତି ପୋତି ଶରଧା ଚାଲିଯିବାପରେ ତା' ନାମରେ ଚୁଗୁଲି ଆରମ୍ଭ ହୋଇଗଲା । ସେ ଶାଶୂ ବା କାଳିଆ ମା' ବୁଢ଼ୀ କହିଲା, "ଆଜି କ.ଦୁର୍ଯ୍ୟୋଗରୁ ମଣିଷ ରକ୍ଷାପାଇଲା । ମୋ ଉଡିଆଣି ପିଲାଟାକୁ ଭିତରକୁ ପଠାଇ ଦେଇନଥିଲେ ଯଦି ଆଶ୍ରମ ଡାହାଣୀଟାର ଆଖି ତା' ଉପରେ ପଡ଼ିଯାଇଥାଆନ୍ତା ତା'ହେଲେ ମୋ ଅବସ୍ଥା କଅଣ ହୋଇଥାଆନ୍ତା ? କେତେ ଉପାସ ବ୍ରତ କରି, କେତେ ଦିଲ୍ ମଠ ମରି ଏତେ କଷ୍ଟରେ ବଂଶ ରଖିବାକୁ ଏତେ ଦିନେ ଏଇ ମେଞ୍ଚଡ଼ ପିଲା ଖଣ୍ଡିକ ମିଳିଛି । ସେ ଯାଇଥାଆନ୍ତା । ଭଗବାନ ବଡ଼ଲୋକ, ଶୁଣି ତାର୍ ପାଟିକରି ଆମକୁ ଜଣାଇ ଦେଇନଥିଲେ କଥା ସରିଥିଲା ।"

ବନାବୋଉ କହିଲା, "ନଜାଣିକରି ପର ନାଆଁରେ ଏପରି ନିନ୍ଦାକଥା କହିବା ଭଲ ନୁହେଁ । ଲକ୍ଷ୍ମୀକାନ୍ତବାବୁ କେଡ଼େ ଭଲଲୋକ । କେତେ ଲୋକଙ୍କର ଉପକାର କରୁଛନ୍ତି । ସେ କଅଣ ଅଜାଣିମାର ଲୋକ ହୋଇଛନ୍ତି ଯେ ଡାହାଣୀଟାଏ ବୋହିକରି ଆଶ୍ରମକୁ ଆଣିଥାଅନ୍ତେ ? ବର୍ତ୍ତମାନ ତାଙ୍କର ଦୁଃଖବେଳ । ତାଙ୍କ ପଛରେ ଏପରି କହିଲେ ଭଗବାନ ତୁମକୁ ଦୋଷୀ କରିବେ ।"

କାଳିଆ ମା ତା' କଥା ଖଣ୍ଡନ କରିବାକୁ ଯାଇ କହିଲା, "ମୁଁ କଅଣ ଶୁଣାଶୁଣି କଥା କହୁଛି ନା ଲଗେଇ ଜୁଟେଇ ମିଛ କହୁଛି ? ମୁଁ କେତେଥର ରାତିରେ ଏବାଟରେ ସେ ଯିବାର ମୋ ବାଡ଼ି ଝରକାବାଟେ ଦେଖିଲିଣି । ସେ ପଛେ ପଛେ ଚାଲିଥାଏ, ତା' ଆଗେ ଆଗେ ଜଳି ଲିଭି ଚିରଗୁଣୀ ନିଆଁ ଟାଏ ବାଟ ଦେଖାଇ ଚାଲିଥାଏ ।"

ବନାବୋଉ ହସିପକାଇ କହିଲା, "ଆଲୋ, ତୁ କଅଣ ଟର୍ଚ୍ଚ ଆଲୁଅ ଦେଖିନାହୁଁ ଯେ ଆକାଶରୁ ଖସିପଡ଼ିଲାପରି କଥା କହୁଛୁ । ଆଶ୍ରମବାଲା ତ ରାତିନାହିଁ ଦିନନାହିଁ ଯିଏ ବାଧିକା ପଡ଼ିଲେ ତା'ର ସେବା କରିବାକୁ ଯାଆନ୍ତି । ସେମାନେ ଟର୍ଚ୍ଚ ବତୀଟିଏ ଧରି ଯାଉଥିବେ । ଆଜିକାଲି ଯୁଗରେ ତୁ କଅଣ ଡ଼ାହାଣୀ ଚିରଗୁଣୀ କଥା ବିଶ୍ୱାସ କରୁଛୁ !"

କାଳିଆ ମା ରାଗିଯାଇ କହିଲା, "ତୁ ବିଶ୍ୱାସ କର ବା ନକର ମୁଁ କିନ୍ତୁ ସେ ସବୁ ସତ ବୋଲି ଜାଣେ । ହଇଲୋ, ଯିଏ ସବୁ ମରି ଶୁଦ୍ଧ ଶ୍ରାଦ୍ଧ ନହୋଇ ଅମୋକ୍ଷ ହୋଇ ରହୁଛନ୍ତି ସେମାନେ କଅଣ ସ୍ୱର୍ଗକୁ ଯାଇ ପାରୁଛନ୍ତି ? ସେମାନେ ପରା ଭୂତ-ପ୍ରେତ ହୋଇ ବୁଲୁଛନ୍ତି । ଡାହାଣୀ ଚିରଗୁଣୀ ବ୍ରହ୍ମରାକ୍ଷସ ସବୁ ତ ସେଇ ଦଳର । ପ୍ରକୃତି ଅନୁସାରେ ସେମାନେ ଭିନ୍ନ ଭିନ୍ନ ରୂପ ନିଅନ୍ତି । ପିଲା ପେଟରେ ଥାଇ ଯୋଉ ମାଆ ମରେ ସେ ଚିରଗୁଣୀ ହୁଏ । ଅଭିଆଡ଼ିଆ ବ୍ରାହ୍ମଣ ମଲେ ବ୍ରହ୍ମରାକ୍ଷସ ହୁଏ । ତୁ କଅଣ ଶୁଦ୍ଧ ଶ୍ରାଦ୍ଧ ମନ୍ତ୍ର ଶୁଣିନାହୁଁ ? ଲୋକ ମରିଗଲେ ତା' ପୁଅ କର୍ମକଲାବେଳେ କର୍ମିଣିଆ 'ଅମୁକ ପ୍ରେତ ତୃପ୍ୟନ୍ତାଂ' ବୋଲି କାହିଁକି କହେ ? ଅଭିଆଡ଼ିଆ ବ୍ରାହ୍ମଣ ମଲେ ତା' ଚିତାରେ ଫୁଲମାଳ ପକାଇ ଅଗ୍ନି କୁମାରୀ କନ୍ୟାକୁ ବିଭାହେଲ ବୋଲି ବିବାହ ମନ୍ତ୍ର କାହିଁକି ବୋଲାହୁଏ ? ବ୍ରହ୍ମରାକ୍ଷସ ଗାଁ ମୁଣ୍ଡ ବରଗଛ ଉପରୁ ଗୋଡ଼ ଲମ୍ବାଇ ବସି ସେବାଟେ ଯାଉଥିବା ଲୋକକୁ ଧରି ଖାଇବା କଥା କଅଣ ତୁ

ଶୁଣିନାହୁଁ ? ଗୁଣି ଗାରେଡ଼ି ଜାଣୁଥିବା ଗୁଣିଆମାନେ ଭୂତ ପ୍ରେତଙ୍କ ସଙ୍ଗେ ମିଶନ୍ତି, ତାଙ୍କୁ ଆୟତ୍ତରେ ରଖନ୍ତି । ବେଳେ ବେଳେ ସେମାନଙ୍କ ସଙ୍ଗେ ମିଶିବାକୁ ଅଖାଦ୍ୟ ଖାଇ ସେମାନଙ୍କ ପରି ଚଲାଚଲ ହୁଅନ୍ତି । ତୁ ମୋ କଥା ମିଛ ଭାବିପାରୁ, ସରକାରୀ ଚାକିରିଆ ଗୋବରା ମଲିକ କଥା କଅଣ ମିଛ ? ଆଶ୍ରମ ଡାହାଣୀ କଅଣ କରେ ସେ ନିଜ ଆଖିରେ ଦେଖିଛି । ସେ କହୁଥିଲା, ଦିନେ ଚନ୍ଦ୍ରପକ୍ଷ ରାତିରେ ବୁଲି ପହରାଦେଲାବେଳେ ଆଶ୍ରମ ଡାହାଣୀ ବାଉରି ସାହିଆଡ଼ୁ ରକ୍ତ ଘୂଳ ଜୁଡ଼ୁବୁଡ଼ୁ ହୋଇ ଆସୁଥିଲା । ସେ ଚନ୍ଦ୍ରପକ୍ଷ ରାତିରେ ଗୋବରାକୁ ଦେଖିପକାଇ ଆଡ଼େଇହୋଇ ଦୂରକୁ ଚାଲିଗଲା । ଗୋବରା ଗୋଟିଏ ଗଛ ଆରପଟେ ଲୁଚିକରି ଠିଆହେଲା । କିଛି ସମୟ ପରେ ଗଛ ଫାଙ୍କରେ ଲୁଚିକରି ଚାହିଁଲାବେଳକୁ ତାକୁ ଲାଗିଲା ବହୁତ ଦୂରରେ ଡାହାଣୀଟା ତଳକୁ ମୁଣ୍ଡ ଓ ଗୋଡ଼ ଉପରକୁ କରି ହାତରେ କଅଣ ଖୋଜୁଛି । ନିଶାଚରୀ ଡାହାଣୀମାନେ ଭୂତଙ୍କୁ ଖୁସି କରିବାକୁ ବିଷ୍ଠା ଚାଟିବା କଥା ଗୋବରାକୁ ଜଣାଥିଲା । ଲୁଚିପଶିଥିଆ ଗଛ ଗୁଳରେ ମୁହଁ ଦିଶୁନଥିଲା କି ମଣିଷ ଚିହ୍ନି ହେଉନଥିଲା; ତଥାପି କାଳେ ନିଶାଚରୀ ତା' ଉପରେ ନଜର ରଖିଥିବ ବୋଲି ସେ ଘରମୁହାଁ ହୋଇ ଏକା ନିଶ୍ୱାସକେ ସେଠାରୁ ଦଉଡ଼ି ଦଉଡ଼ି ପଳାଇ ଆସିଲା । ଏକଥା କଅଣ ମିଛ ?"

ବନାବୋଉ କହିଲା, ତୁ ଖାଲି ଗୋବରା ପରି ସରକାରୀ ଲୋକଙ୍କ କଥା ଆଶ୍ରମବାସୀଙ୍କ ବିଷୟରେ ଶୁଣୁ ନା ଅନ୍ୟମାନଙ୍କ କଥା ଶୁଣି ଦୁନିଆଁର ଖବର କିଛି ରଖୁ ? ମୁଁ ଶୁଣିଚି ସେ ଝିଅଟି ବଡ଼ ପାଠୋଇ, ବଡ଼ ଘରର ପିଲା । ସେ ବହୁତ ବହି ପଢ଼େ, ବହୁତ କଥା ଜାଣେ । ପାଠ ପଢ଼ୁଆ ଦେଶପ୍ରେମୀ ଲୋକ କଅଣ ସେପରି କାମ କରନ୍ତି ?

ସେ ଡାକ୍ତରୀ ଧାଈ ବିଦ୍ୟା ଜାଣେ । ପିଲା ଜନ୍ମ କରାଇବାରେ ଭାରି ପାରିବାର । ସେ ଜାତି ଅଜାତି ନମାନି ଗରିବ ଦୁଃଖୀଙ୍କ ସେବା କରିବା ପାଇଁ ଡାକ ଶୁଣିବାମାତ୍ରେ ଯାଇ ଠିଆହୁଏଚି ।

ଗୋବରା ଦେଖିଲାବେଳେ ସେ ବାଉରି ସାହିରେ କାହାର ପିଲା ଜନ୍ମ କରାଇ ରକ୍ତ ଜୁଡ଼ୁବୁଡ଼ୁ ହୋଇ ଫେରିକି ଆସୁଥିବ । ସେ ତ ସବୁବେଳେ ସମସ୍ତଙ୍କୁ ପରିଷ୍କାର ରହିବାକୁ କହେ । ସେ ଆସିବା ଦିନଠୁ ଆଶ୍ରମରେ ଗୋଟେ ସିଙ୍ଘାଣିନାକୀ ମଇଲା କୋଚରା ପିଲା ଦିଶୁନାହାନ୍ତି । ସେ ସେମାନଙ୍କୁ ନିଜ ହାତରେ ପରିଷ୍କାର କରିଦିଏ । ସେ ବି ଭାରି ନିଷ୍ଠାରେ ଚଳେ । ଆଶ୍ରମରେ ତ ମାଛ ମାଉଁସ ମନା—ସେ ବିଷ୍ଠାଚାଟିବା ଗୋବରା ଆଖିକୁ କିପରି ଜଳ ଜଳ ହୋଇ ଏତେ ବାଟରୁ ଦିଶିଲା ? ଏ ସବୁ ଖଲଲୋକଙ୍କ ମନଗଢ଼ା କଥା ।

ସେ କଥା ଶୁଣି କାଳିଆ ମା ରାଗିବାଇ ହୋଇ କହିଲା, "ରଖ୍ ତୋର ପରିଷ୍କାର, ପାଠୋଇ ! ସମସ୍ତେ ଜ୍ଞାନଦେଈ ମାଲୁଣୀ କଥା ଜାଣନ୍ତି—ସେ କଅଣ ପରିଷ୍କାର ନଥିଲା ନାଁ ପାଠୋଇ ନଥିଲା ? ସେତ ଭେଣ୍ଡାକୁ ମେଣ୍ଢା କରିଥିଲା ।" ଏହାକହି ଡମଡମ ହୋଇ ସେଠାରୁ ଉଠି ଚାଲିଗଲା । ଶ୍ରୋତାମାନେ ବି ଉଠୁ ଉଠୁ ହେଲେ । ସେମାନଙ୍କ ଆଲୋଚନା ସଭା ଭାଙ୍ଗିଲା ।

ଶରଧା ବିଷୟରେ ଏପରି ଆଲୋଚନାର ପଦେଅଧେ ଯେ ତା' କାନରେ ନପଡ଼େ ତା ନୁହେଁ, କିନ୍ତୁ ସେ କଥାକୁ କାନ ନଦେଇ ସେ ତା'ର କାମ ରୋଗୀସେବା ଓ ପଢ଼ାପଢ଼ି ଭିତରେ ନିଜକୁ ବୁଡ଼ାଇ ରଖେ । ସେ ଶଶୁରଙ୍କ ସବୁ କାମ ନିଜ ହାତରେ କରିବାକୁ ଭଲପାଏ । ଶଶୁରଙ୍କ ସେବା ଓ ସୁଖ ସୁବିଧା ପାଇଁ ତୀକ୍ଷ୍ଣ ଦୃଷ୍ଟି ଦେଇଥାଏ । ଦିନକୁ ଦିନ ତା'ର ଶାନ୍ତ ପ୍ରକୃତି, ଧୀର ବିଚାର ଓ ତେଜସ୍ୱୀ ପ୍ରତିଭା ସେଠାର ଲୋକଙ୍କୁ ପ୍ରଭାବିତ କଲା । ସମସ୍ତେ ଭକ୍ତିରେ ତାକୁ ଶରଧା ଦେବୀ ବୋଲି ଡାକିଲେ ଓ ସମ୍ମାନ ଦେଲେ ।

ତା'ର କାହା ପ୍ରତି ହିଂସା ଦ୍ୱେଷ ନଥାଏ, କାହାକୁ ଡର ନଥାଏ । ଉଚ୍ଚ ଜାତିର ଅଳସୁଆ ପରନିନ୍ଦୁକ ମୂର୍ଖ ସ୍ତ୍ରୀଲୋକମାନଙ୍କ ପ୍ରତି ତା'ର ଦୟା ହୁଏ । ସେ ସେମାନଙ୍କୁ, ପ୍ରତିଦିନ ବିଲବାଡ଼ିରେ ଖଟୁଥିବା ସ୍ତ୍ରୀ ଲୋକ ଓ ଗରିବଗୁରୁବ କୁଲିଆଣୀଙ୍କ ସଙ୍ଗେ ମନେ ମନେ ତୁଳନା କରେ । ଅଶିକ୍ଷିତ ଖଟିଖିଆମାନେ ବେଳେବେଳେ ନିଜ ନିଜ ଭିତରେ କଳିଗୋଳ କରନ୍ତି, ସଂସାରର ସାମାନ୍ୟ ସୁଖସମ୍ଭୋଗ ପଛରେ ଦଉଡ଼ି ବିପଦରେ ପଡ଼ନ୍ତି । ମାନଇଜ୍ଜତ ହରାନ୍ତି, କିନ୍ତୁ ତାଙ୍କ ଭିତରେ ଛନ୍ଦକପଟ କିଛି ନଥାଏ, ପରଚର୍ଚ୍ଚା କରିବାକୁ ବା କୁତ୍ସା ରଟନା କରିବାକୁ ବେଳ ନଥାଏ । ଦିନଯାକ ପରିଶ୍ରମ କରି କରି ଘରକୁ ଲେଉଟି ଆସି ରୋଷେଇ, ଘରକାମ ଓ ପିଲାଙ୍କ ଧନ୍ଦା ବୁଝି ବୁଝି ସେମାନେ ହାଲିଆ ହୋଇ ଶୋଇ ପଡ଼ନ୍ତି ।

ସେ ଯାହାହେଉ ମଣିଷ ହିଁ ମଣିଷ । ପରିସ୍ଥିତିର ଉପରେ ତା'ର ପ୍ରକୃତିର ଅଦଳ ବଦଳ ହୁଏ । ସେଇ ସ୍ତ୍ରୀ 'ମା' ବା ଦେବୀପ୍ରତିମା ରୂପେ ପୂଜାପାଏ । ସେ ପୁଣି ରାକ୍ଷସୀ ହୋଇ ନିଜ ପିଲାର ରକ୍ତ ଶୋଷିବାର ବଦ୍‌ନାମ ମୁଣ୍ଡାଏ । ଦେଶର ପରିସ୍ଥିତି ବଦଳିଲେ, ନାରୀଶିକ୍ଷାର ପ୍ରଚାର ହେଲେ ଓ ନାରୀ କର୍ମରତା ହୋଇ ସୁସ୍ଥ ବାତାବରଣ ଭିତରେ ରହି ସ୍ୱାଧୀନତାର ସ୍ୱାଦୁ ଚାଖିଲେ ସବୁ ନାରୀ ଦେବୀ ପାଲଟିଯିବେ ।

ଏହି ଦେଶରେ ବହୁ ପତିବ୍ରତା ବୀରନାରୀଙ୍କର ମହତ୍ତ୍ୱ ଇତିହାସ ପୁରାଣରେ ଲିପିବଦ୍ଧ ହୋଇ ରହିଛି । ଦିନେ ଏଇ ଖୋର୍ଦ୍ଧାଭୂଇଁର ନାରୀ ସ୍ୱାମୀ ଓ ପୁଅକୁ ବୀରଟୀକା ପିନ୍ଧାଇ ସଗର୍ବରେ ହସି ହସି ଯୁଦ୍ଧକୁ ପଠାଉଥିଲା । ଭାରତର ନାରୀ ଦରକାର ପଡ଼ିଲେ ନିଜେ ସାଞ୍ଜୁ ପିନ୍ଧି, ଖଣ୍ଡାଧରି ଯୁଦ୍ଧକୁ ବାହାରୁଥିଲା । ଆଜି ପରାଧୀନ ଭାରତରେ ସେମାନଙ୍କ ଅବସ୍ଥା ଏପରି ହୋଇଛି । ପୁରୁଷମାନଙ୍କ ଅବସ୍ଥା ବି ସେମାନଙ୍କଠାରୁ ଭିନ୍ନ ନୁହେଁ । ତେଣୁ ସେମାନଙ୍କ ସଙ୍ଗେ ମିଶି, ମାଡ଼ ଗାଳିକୁ ଖାତିର ନକରି, ସେମାନଙ୍କୁ ବୁଝାଇ ସୁଝାଇ ବାଟକୁ ଆଣିବା, ପ୍ରତ୍ୟେକ ପାଠୁଆ ଦେଶପ୍ରେମୀଙ୍କ କର୍ତ୍ତବ୍ୟ ବୋଲି ସେ ଧରିନେଇଥିଲା । ପ୍ରୌଢ଼ ଶିକ୍ଷାର ପ୍ରସାର ପାଇଁ ନିଜକୁ ନିୟୋଜିତ କରିବାକୁ ସେ ସଂକଳ୍ପବଦ୍ଧ ହୋଇଥିଲା । ଜ୍ଞାନର ପରିସର ବୃଦ୍ଧିରେ ଦେଶରୁ ନିରକ୍ଷରତା ଓ ପରସ୍ପର ବିବାଦର କାଳିମା ଲୋପହେବ ବୋଲି ତା'ର ଦୃଢ଼ ବିଶ୍ୱାସ ହୋଇଥିଲା ।

# ଡେରା

ମୋକଦ୍ଦମାର ରାୟ ବାହାରିବା ପରେ ପରେ ନବକୁମାରଙ୍କୁ କଲିକତା ଦମଦମ ଜେଲରୁ ପାଣି ଜାହାଜରେ ଆଣ୍ଡାମାନର ପୋର୍ଟବ୍ଲେୟାର ଜେଲକୁ ନିଆଯିବାର ବ୍ୟବସ୍ଥା ହେଲା। ତାଙ୍କ ସାଙ୍ଗରେ ଆଉ ଅନେକ ଗୁଡ଼ିଏ କଏଦୀଙ୍କୁ ମଧ୍ୟ ଯିବାର ଆଦେଶଥାଏ। ସେମାନଙ୍କ ଭିତରୁ ଅଧିକାଂଶ ଚୋର ଡକାଏତ ଓ ଖୁନୀ ଆସାମୀ। ଅନ୍ୟ ପ୍ରଦେଶର ଜଣେ ଅଧେ ରାଜନୈତିକ ବନ୍ଦୀ ମଧ୍ୟ ସେମାନଙ୍କ ଭିତରେ ଥାଆନ୍ତି। କଲିକତା ବନ୍ଦରରେ ବନ୍ଦୀମାନଙ୍କୁ ଜାହାଜ ଭିତରକୁ ନେଇଯାଇ, ସମସ୍ତଙ୍କୁ କୋଠରୀମାନଙ୍କରେ ଭର୍ତ୍ତି କରି ବାହାରୁ ଚାବି ଲଗାଇ ଦିଆଗଲା।

ଜାହାଜ ଛାଡ଼ିଲା। ଆର୍ତ୍ତନାଦପରି ହୁଇସିଲ ଚିତ୍କାର ଶୁଣାଇ ଶୁଣାଇ ବନ୍ଦର ଛାଡ଼ିଲା। ଜାହାଜର କୋଠରୀ ଗୁଡ଼ିକ ଡେକ୍‌ର ତଳେ। କୋଠରୀ ଭିତରେ ଓ ବାରଣ୍ଡା-ମାନଙ୍କରେ ଜୁଳୁ ଜୁଳୁ ହୋଇ ଛୋଟ ଛୋଟ ବତୀ ଜଳୁଥାଏ। ମୁହଁ ଝାପ୍‌ସା ଝାପ୍‌ସା ଦିଶୁଥାଏ। ଆଠ ଦଶଜଣଙ୍କୁ ଗୋଟିଏ କୋଠରୀରେ ବନ୍ଦକରି ରଖାଯାଇଥାଏ। କୋଠରୀ ବାହାର ବାରଣ୍ଡାରେ ସଶସ୍ତ୍ର ପୋଲିସମାନେ ପହରା ମାରୁଥାଆନ୍ତି ଓ କବାଟ ଜଳାବାଟେ କୋଠରୀ ଭିତରକୁ ଚାହିଁ ବନ୍ଦୀମାନଙ୍କର ଗତିବିଧି ଲକ୍ଷ୍ୟ କରୁଥାଆନ୍ତି। ବନ୍ଦୀମାନଙ୍କୁ ନିଜ ନିଜ ଭିତରେ କଥାବାର୍ତ୍ତା କରିବା ମନା। କୋଠରୀ ଭିତରୁ ଟିକିଏ କଥାବାର୍ତ୍ତାର ଶବ୍ଦ ଶୁଭିଲେ, ବାହାରେ ଜଗିଥିବା ପୋଲିସ ବନ୍ଧୁକର କାଠକୁ ଜୋର୍‌ରେ ତଳେ ଠୁକି ହୋସିଆର (ସାବଧାନ୍) ବୋଲି ଚିତ୍କାରକରେ।

ବନ୍ଦୀମାନଙ୍କ କୋଠରୀ ଜାହାଜର ମଧ୍ୟଭାଗରେ ଓ ସମୁଦ୍ର ଉପର ଭାଗର ନିକଟରେ ଥିବାରୁ ବଡ଼ ବଡ଼ ଢେଉର ପାଣି ପଶିବାକୁ ନଦେବାପାଇଁ ଝରକାର ବ୍ୟବସ୍ଥା ନଥାଏ। କୋଠରୀର କାନ୍ଥରେ କମ୍ବା ଫଳକ୍ମ ଗାଧୁଆ ଘରେ ଉପରିଆ ହୋଇ ଗୋଟିଏ କଣାରେ ଗୋଲ ଲୁହା ଫ୍ରେମଦିଆ ମୋଟା କାଚ ଲଗିଥାଏ। ତାହାକୁ ପୋର୍ଟହୋଲ୍ ବା ବନ୍ଦର ଦେଖିବା କଣା କୁହାଯାଏ।

ନବକୁମାରଙ୍କ କୋଠରୀଟି ଅନ୍ଧକାରମୟ। ସେ ଖଟିଆ ଉପରେ ଚଢ଼ି କାଚ ବାଟେ ବାହାରକୁ ଚାହିଁଲେ। ସୁବିସ୍ତୀର୍ଣ୍ଣ ଜଳରାଶି ଦେଖି କବି କୋଲରିଜଙ୍କର ପୁରାତନ ନାବିକ ବା 'ଆନସିଏଣ୍ଟ ମାରିନର' ପଦ୍ୟରୁ କେତେଧାଡ଼ି ତାଙ୍କର ମନେ ପଡ଼ିଲା। (ଓ୍ୱାଟର୍ ଓ୍ୱାଟର୍ ଏଭ୍ରି ହୋୟାର ନଟ୍ ଏ ଡ୍ରପ୍ ଟୁ ଡ୍ରିଙ୍କ୍।)

ସମୁଦ୍ରଟା ଯାକ ଜଳ ଜଳ ଖାଲି ଚଉଦିଗେ ଭରି ଜଳ
ଶୋଷ ମାରିବାକୁ ସେ ଜଳ ମଧ୍ୟରୁ ଟୋପାକର ନାହିଁ ବଳ।

ଭାରତର ସେତେବେଳର ଅବସ୍ଥା ତାହା ସଙ୍ଗେ ତୁଳନୀୟ । ସ୍ୱର୍ଣ୍ଣପ୍ରସୂ ଭାରତରେ ସବୁ ଥାଇ ଭାରତୀୟଙ୍କ ପାଇଁ କିଛି ନାହିଁ । ସମୁଦ୍ରର ହିଂସ୍ର ଜୀବଙ୍କ ପରି ଶାସକ ଇଂରେଜଙ୍କ ଦ୍ୱାରା ଲୋକେ ସବୁବେଳେ ଅତ୍ୟାଚାରିତ । ଖାଇବାକୁ ଦାନା ନାହିଁ, ପିନ୍ଧିବାକୁ କନା ନାହିଁ । ଇଂରେଜମାନେ ଭାରତରୁ କଞ୍ଚାମାଲ ବିଲାତକୁ ନେଇଯାଇ, ସେଥିରେ ତିଆରି ହେଉଥିବା ସରଞ୍ଜାମକୁ ପୁଣି ଭାରତ ଆଣି ଚଢ଼ାଦରରେ ବିକ୍ରୀ କରୁଛନ୍ତି । ଖଜଣା ଟିକସକୁ ଗୋରା କର୍ମଚାରୀଙ୍କ ମୋଟା ଦରମା ପ୍ରଭୃତି ଦ୍ୱାରା ଭାରତରୁ ଲୁଟ କରୁଛନ୍ତି । ଭାରତରେ ରେଳ ଚଳାଚଳ, ଗୃହ ନିର୍ମାଣ ପ୍ରଭୃତିର ବ୍ୟବସାୟ ଗୋରା କମ୍ପାନୀଙ୍କ ହାତରେ । ସାଇକେଲ ଖଣ୍ଡିଏ ମଧ୍ୟ ବିଲାତରୁ କିଣିବାକୁ ପଡ଼ୁଛି ।

ତାଙ୍କ ନିଜର ବର୍ତ୍ତମାନର ଜୀବନ ମଧ୍ୟ ତତୋଽଧିକ । ଫାଶୀ ପାଇଥିଲେ ଭଲ ହୋଇଥାନ୍ତା । ଜୀବନ ଥାଇ ମଧ୍ୟ ନଥିଲା ପରି । ସେ ତାଙ୍କ ଜୀବନକାଳକୁ ଉପଭୋଗ କରିନପାରି କେବଳ ତା'ର ଶେଷଦିନକୁ ବନ୍ଦୀଶାଳାର ଅନ୍ଧାର ଘରେ ରହିଁରହିବେ ।

ପୁଣି ସେ କାଚ ଉପରେ ତାଙ୍କ ଆଖି ପଡ଼ିଲା । ଗୋଲ କାଚର ଚାରିପଟ ଲୁହା ଫ୍ରେମ ଉପରେ କଣ୍ଟାବାଡ଼ିଆ ହୋଇ ସବୁଦିନ ପାଇଁ ବନ୍ଦକରାହୋଇଛି । ଯାତ୍ରୀବାହୀ ଜାହାଜରେ ସେଇଟି ଖୋଲାହୁଏ । ବୀର ସଭରକରଙ୍କୁ ଜାହାଜରେ ଆଣିବାପରେ ବୋଧହୁଏ ବନ୍ଦୀ ଜାହାଜମାନଙ୍କରେ ଏପରି ବ୍ୟବସ୍ଥା ହୋଇଛି । ବିଲାତକୁ ପାଠ ପଢ଼ିବାକୁ ଯାଇ ଯେଉଁ ବିପ୍ଳବୀ ଯୁବକମାନେ ସେଠାରେ ଭାରତକୁ ଫେରି ବିଲାତରେ ଥିବା ଅତ୍ୟାଚାରୀ ଶାସକମାନଙ୍କୁ ଗୋଟି ଗୋଟି କରି ଗୁଳିରେ ଉଡ଼େଇ ଦେବାପାଇଁ ଷଡ଼ଯନ୍ତ୍ର କରୁଥିଲେ, ସେମାନଙ୍କ ଭିତରେ ବୀର ସଭରକର ଥିଲେ ଅନ୍ୟତମ । ଜାଲିଆନାବାଗ ହତ୍ୟାକାଣ୍ଡରେ ଲିପ୍ତଥିବା ଅତ୍ୟାଚାରୀ ଶାସକ ବିଲାତରେ ଗୁଳିରେ ଟଳିପଡ଼ିଲାବେଳେ ସେହି ସମ୍ପର୍କରେ ଭାରତୀୟ ଆଇନ ଭଙ୍ଗ ସଭରକରଙ୍କୁ ବନ୍ଦୀକରି ତାଙ୍କର ବିଚାର ପାଇଁ ଇଂରେଜ ସରକାର ତାଙ୍କୁ ପାଣି ଜାହାଜରେ ବିଲାତରୁ ଭାରତକୁ ଆଣୁଥିଲେ । ସେ ଜାହାଜରେ ତାଙ୍କ କୋଠରୀ ସାମନାରେ ସଶସ୍ତ୍ର ଗୋରା ପ୍ରହରୀ ଜଗିରହିଥିଲେ । ଦୁଆରର କାଚବାଟେ ଗୁହାଳ କୋଠରୀ ଭିତରେ ତାଙ୍କର ସମସ୍ତ ଗତିବିଧି ଲକ୍ଷ୍ୟ କରୁଥିଲେ । ସେ ଗାଧୋଇଲାବେଳେ, ଝାଡ଼ାଗଲାବେଳେ ମଧ୍ୟ ଗାଧୁଆଘର ଭିତରର ବଡ଼ ଦର୍ପଣକୁ ଗୁହାଳ ତାଙ୍କୁ ଆଖି ଆଗରେ ରଖିଥିଲେ ।

ଦିନେ ସଭରକର ଗାଧୁଆ ଘରେ ପଶି ଭିତରୁ ଦୁଆର ବନ୍ଦକଲେ । ଦୁଆରର କାଚବାଟେ ପ୍ରହରୀମାନେ ଦେଖୁଥାନ୍ତି । ସେ ପୋଷାକପତ୍ର ଖୋଲି ନଙ୍ଗଳା ହୋଇ ଦର୍ପଣ ଉପରକୁ ପକାଇଦେଲେ । ସାବୁନ୍ ଲଗାଇଲେ, ପାଣି ଟାପ୍ ଖୋଲିଲେ । ପ୍ରହରୀମାନେ ସେ ଶବ୍ଦ ଶୁଣୁଥାଆନ୍ତି । ସେ ଜାହାଜର ପୋର୍ଟହୋଲର କାଚକୁ ଠେଲି ସେହିବାଟେ ସମୁଦ୍ର ଭିତରକୁ ଡେଇଁପଡ଼ିଲେ । ଟାପ୍‌ରୁ ପଡ଼ୁଥିବା ପାଣିଶବ୍ଦ ଯୋଗୁଁ ପ୍ରହରୀମାନେ ସେ ପାଣିରେ ପଡ଼ିବା ଶବ୍ଦ ଜାଣିପାରିଲେ ନାହିଁ ।

କେତେ ସମୟ ପରେ ସେ ଗାଧୁଆଘର ଦୁଆର ନଫିଟେଇବାରୁ ପ୍ରହରୀମାନେ ଗାଧୁଆ ଘର ଦୁଆର ବାଡ଼େଇଲେ । ଦୁଆର ନଫିଟିବାରୁ ସେ ଦୁଆର ଭାଙ୍ଗି ସେ ଘରଭିତରେ ପଶି ସଭରକରଙ୍କୁ ନପାଇ ପୋର୍ଟହୋଲ କାଚ ଖୋଲାଥିବାର ଦେଖି ଡେକ୍ ଉପରକୁ ଆସି ସମୁଦ୍ରକୁ ଚାହିଁଲେ । ସମୁଦ୍ର ଭିତରେ ସେ ପହଁରି ପହଁରି ଦୂରକୁ ଚାଲିଯାଉଥିବାର ଦୂରବୀକ୍ଷଣ ଯନ୍ତ୍ରରେ ଦେଖିବାକୁ ପାଇଲେ ।

ସିପାହୀମାନେ ଗୋଟିଏ ବୋଟ ଡଙ୍ଗାରେ ବସି ବନ୍ଧୁକ ଧରି ତାଙ୍କୁ ଗୋଡ଼ାଇଲେ । ସମୁଦ୍ରକୂଳ ସେଠାରୁ ପାଞ୍ଚ ମାଇଲ ବାଟ । ସଭରକର ସେମାନଙ୍କୁ ଦେଖିପାରି ବୁଡ଼ାପହଁରା ଦେଇ ଦେଇ ଆଗେଇ ଚାଲିଲେ । ସେ ନିଶ୍ୱାସ ନେବାକୁ ପାଣି ଉପରକୁ ମୁଣ୍ଡ ଟେକିବା ସଙ୍ଗେ ସଙ୍ଗେ ପ୍ରହରୀମାନେ ତାଙ୍କ ମୁଣ୍ଡକୁ ଲକ୍ଷ୍ୟକରି ଗୁଳିମାରନ୍ତି, ସେ ପୁଣି ବୁଡ଼ିଯାଆନ୍ତି । ଏହିପରି ପ୍ରହରୀମାନଙ୍କୁ ଏଡ଼ାଇ ଏଡ଼ାଇ ସେ ଫ୍ରାନ୍ସର 'ମାର୍ସେଲିସ' ବନ୍ଦର କୂଳରେ ଲାଗିଲେ । କୂଳରେ ଲାଗିବା ସଙ୍ଗେ ସଙ୍ଗେ ପଡ଼ୁଜାଠି ବନ୍ଦରର ଫରାସୀ ପୋଲିସଙ୍କ ନିକଟରେ ଆତ୍ମସମର୍ପଣ କରି, ସେ ଫ୍ରାନ୍ସ ଦେଶରେ ବିନାନୁମତିରେ ପ୍ରବେଶ କରିଥିବାରୁ ସେମାନଙ୍କର ବନ୍ଦୀ, ତେଣୁ ଇଂରେଜ ପୋଲିସଙ୍କ ହାତରେ ତାଙ୍କୁ ସମର୍ପଣ ନକରିବା ପାଇଁ ଅନୁରୋଧ କଲେ । ଶେଷରେ ପୃଥିବୀ ଅଦାଲତରେ ସେ ଘଟଣାର ବିଚାର ହୋଇ ଇଂରେଜଙ୍କ ପ୍ରଜା ହିସାବରେ ଇଂରେଜଙ୍କ ବିଚାରାଧୀନ ହେଲେ । ଭାରତରେ ତାଙ୍କର ବିଚାର ହୋଇ, ଆଜୀବନ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ ହୋଇ ତାଙ୍କୁ ଆଣ୍ଡାମାନ କାରାଗାରରେ ଦଣ୍ଡ ଭୋଗିବାକୁ ପଡ଼ିଥିଲା ।

ନବକୁମାର ଏବେ ସେହି ଆଣ୍ଡାମାନ କାରାଗାରରେ ବନ୍ଦୀ ଜୀବନଯାପନ କରିବାକୁ ନିଆହେଉଛନ୍ତି । ଭାରତର ସ୍ୱାଧୀନତା ପାଇଁ ବୈପ୍ଳବିକ ଆନ୍ଦୋଳନ କରି କେତେ କେତେ ବୀର ଫାଶୀକାଠରେ ଝୁଲିଛନ୍ତି । ରାମ ସିଂ ଓ ଶରଧାର ଭାଇ କଥା ମନେପଡ଼ି ତାଙ୍କ ମୁଣ୍ଡ ଆପେ ଆପେ ନଇଁଗଲା । ସିପାହୀବିଦ୍ରୋହ, ବଙ୍ଗଭଙ୍ଗ ବିପ୍ଳବ ପ୍ରଭୃତିରେ କେତେ ବୀର ଆଜୀବନ କାରାଦଣ୍ଡ ଭୋଗକରି ଅଣ୍ଡାମାନ କାରାଗାରରେ ସଢ଼ିଛନ୍ତି । ବିପ୍ଳବୀ କୃଷ୍ଣକୁମାର ମିତ୍ର, ପୁଲୀନ ବିହାରୀ ଦାସ, ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀ, ଅଶ୍ୱିନୀ କୁମାର ଦତ୍ତ, ମନୋରଞ୍ଜନ ଗୁହ ଠାକୁରତା, ସୁବୋଧ ଚନ୍ଦ୍ର ମଲ୍ଲିକ, ଶଚୀନ୍ଦ୍ର ପ୍ରସାଦ ବୋଷ, ଶଶୀଶ ଚନ୍ଦ୍ର ଚାଟର୍ଜି, ଭୂପେଶଚନ୍ଦ୍ର ନାଗ, ଅମରେନ୍ଦ୍ର ନାଥ ଚାଟର୍ଜି ପ୍ରଭୃତି ଆଜୀବନ ଦ୍ୱୀପାନ୍ତର ଦଣ୍ଡ ପାଇଥିବା ବହୁତ ବିପ୍ଳବୀଙ୍କ ନାମ ତାଙ୍କ ଆଖି ଆଗରେ ନାଚିଗଲା । ସେ ସେମାନଙ୍କ ଉଦ୍ଦେଶ୍ୟରେ ହାତ ଉଠାଇ ନମସ୍କାର କଲେ ଓ ସେମାନଙ୍କଦ୍ୱାରା ଆଣ୍ଡାମାନ କାରାଗାର ଗୋଟିଏ ପବିତ୍ର ତୀର୍ଥ ସ୍ଥାନରେ ପରିଣତ ହୋଇଛି ବୋଲି ମନକୁ ସାନ୍ତ୍ୱନା ଦେଲେ ।

ସେ ଭଗବାନଙ୍କୁ ସ୍ମରଣ କରି ମନେ ମନେ କହିଲେ "ହେ ଭଗବାନ ! ଯେ ଫାଶୀ ପାଇଲେ ସେମାନଙ୍କ ଶାରୀରିକ ଯନ୍ତ୍ରଣା ଚିରଦିନ ପାଇଁ ଶେଷ ହୋଇଗଲା, ସେମାନେ ଭାଗ୍ୟବାନ୍ । ତୁମେ ମନୁଷ୍ୟକୁ ପରୀକ୍ଷା କର । ମୋତେ ହୁଏତ ପରୀକ୍ଷା କରୁଛ । ତୁମେ ମୋତେ

ଶକ୍ତିଦଅ, ମୁଁ ଏ କାରାଗାର ଜୀବନକୁ ହସି ହସି ଭାରତ ଜନନୀ ପାଇଁ ଉପଯୋଗ (ଉତ୍ସର୍ଗ) କରେ । ମୋତେ ଏତିକି ଦୟାକର, ଯେପରି ମୁଁ ଭାରତର ସ୍ୱାଧୀନତା ପ୍ରାପ୍ତିର ସୁସମ୍ବାଦ ମୋ ମୃତ୍ୟୁ ପୂର୍ବରୁ ଶୁଣି ଆଖି ମୁଦେ ।

ଆଣ୍ଡାମାନର ପୋର୍ଟବ୍ଲେୟାର ବନ୍ଦରରେ ଜାହାଜ ଲାଗିବା ପରେ ସେମାନଙ୍କ ହାତକଡ଼ିରେ ଦଉଡ଼ି ବାନ୍ଧି ଜେଲଖାନାକୁ ନିଆଗଲା । ସେ ଜେଲଟି ବିରାଟ ପାଚେରୀଘେରା ଗୋଟିଏ ବଡ଼ ସହର । ବହୁତଗୁଡ଼ିଏ ଚଞ୍ଚଳ ପ୍ରାଣକୁ ସେଠାରେ ଜବରଦସ୍ତି ରଖି ଷ୍ଟାଣୁ କରାଯାଉଛି । ସମସ୍ତଙ୍କ ଭବିଷ୍ୟତ ନିର୍ଦ୍ଦିଷ୍ଟ ମୃତ୍ୟୁ ଦିଗରେ ଧାବିତ । ସଭ୍ୟ ସମାଜରୁ ବହୁ ଦୂରରେ ହିଂସ୍ର ପୋଲିସ ଘେରରେ ସେମାନଙ୍କୁ ବାନ୍ଧି ରଖାଯାଉଛି । ଅଧିକାଂଶଙ୍କର ଉତ୍ତପ୍ତ ଶୋଣିତ ସେଠାରେ ଶୀତଳ ତୁଷାର ପରି ଜମାଟ ବାନ୍ଧିଯାଏ । ଦୈନନ୍ଦିନ ଜୀବନ ଏକା ରୀତରେ, ଗୋଟିଏ ଧାରାରେ ଚାଲେ । ବନ୍ଧୁକ ମୁନ ଦେଖାଇ ଶାରୀରିକ କଠିନ ପରିଶ୍ରମ କରାଇବାଦ୍ୱାରା ମାନସିକ ଭାବଧାରାକୁ ପଙ୍ଗୁ କରାଇ ରଖିବା ପାଇଁ ସେଠାରେ ସରକାର ସମସ୍ତ ପ୍ରକାର ବନ୍ଦୋବସ୍ତ କରିଛନ୍ତି । ସେହି ଭୀଷଣ କାରାଗାରରେ ତାଙ୍କୁ ସଢ଼ି ସଢ଼ି ଜୀବନ କଟାଇବାକୁ ହେବ ।

ନବକୁମାରଙ୍କୁ ଜର୍ଜିଆ ଚିହ୍ନି ସାଧାରଣ କଏଦୀଙ୍କ ସଙ୍ଗେ ତେଲଘଣା ପେଲିବା, କତା ବାଡ଼େଇବା, ଅଟା ଚୂରିବା ପ୍ରଭୃତି କାମ କରିବାକୁ ପଡ଼ିଲା । ସାଧାରଣ ଖାଦ୍ୟ ଖାଇବାକୁ ପଡ଼ିଲା । ରାଜନୈତିକ ବନ୍ଦୀମାନଙ୍କୁ ପ୍ରଥମପ୍ରଥମରୁ ଜେଲଭିତରେ ନିଜ ନିଜ ଭିତରେ ମିଶିବାକୁ ଦିଆଯାଏ ନାହିଁ । ବନ୍ଦୀମାନେ କିଛି କାଳ ରହିଲା ପରେ ସେମାନଙ୍କ ସ୍ୱଭାବ ଓ ବ୍ୟବହାର ଭଲ ବୋଲି ମନେକଲେ ଜେଲ କର୍ତ୍ତୃପକ୍ଷ ସେମାନଙ୍କୁ କେତେକ ଅଧିକ ସୁବିଧା ସୁଯୋଗ ଦିଅନ୍ତି ।

ନବକୁମାରଙ୍କ ଭଦ୍ର ଓ ଶାନ୍ତ ବ୍ୟବହାର ଯୋଗୁ ସେ ସାଧାରଣ କଏଦୀଙ୍କ ସଙ୍ଗେ ମିଳାମିଶା କଲେ କର୍ତ୍ତୃପକ୍ଷ ଆପତ୍ତି କରନ୍ତି ନାହିଁ । ଚୋର ଡକାଏତ କଏଦୀମାନେ ନିଜ ନିଜ ଭିତରେ ଝଗଡ଼ାକଲେ ବା ଗୋଳମାଳ କଲେ ନବକୁମାର ସେମାନଙ୍କୁ ବୁଝାସୁଝି କରାଇ ଶାନ୍ତ କରାଇବାରେ କର୍ତ୍ତୃପକ୍ଷଙ୍କୁ ସାହାଯ୍ୟ କରନ୍ତି ।

କର୍ତ୍ତୃପକ୍ଷ ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ଡାକ୍ତରଖାନାର ରୋଗୀସେବା; ଭୋଜନାଳୟର ପରିଚାଳନା ପ୍ରଭୃତିର ଦାୟିତ୍ୱରେ ଅଂଶ ଗ୍ରହଣ କରିବାର ସୁବିଧା ଦେଲେ । ଜେଲରେ ଅଧିକା କାର୍ଯ୍ୟ ବା ଦାୟିତ୍ୱ ଗ୍ରହଣ କଲେ ସେଥିପାଇଁ କିଛି କିଛି ପଇସା ମିଳେ । ସେ ପଇସା ସାହାଯ୍ୟରେ ସେମାନେ ଜେଲରକ୍ଷୀମାନଙ୍କ ଦ୍ୱାରା ବାହାରୁ କିଛି କିଛି ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ମଗାଇବାର ବି ସୁବିଧା ପାଆନ୍ତି ।

ଆଣ୍ଡାମାନ ଦ୍ୱୀପପୁଞ୍ଜର ଚାରିପଟେ ଅକୂଳ ପାଉନଥିବା ଜଳରାଶି । ସେ ଜଳରେ ବହୁ ଭୟଙ୍କର ହିଂସ୍ର ଜଳଚର ବାସକରନ୍ତି । ସେଠାରେ ଝଡ଼ବର୍ଷା ପ୍ରାୟ ଲାଗିରହିଥାଏ । ଜେଲ ଚାରିପଟେ ଘନ ଜଙ୍ଗଲ । ବଡ଼ ବଡ଼ ବିଷଧର ସର୍ପ ସବୁଆଡ଼େ ବୁଲୁଥାଆନ୍ତି । ସେଠାରେ

ଅଜସ୍ର ସଂଖ୍ୟାରେ ବାସକରି ରହିଥିବା ସର୍ପର ପାହାଡ଼ ମଧ୍ଯ ରହିଛି । ଜଙ୍ଗଲରେ ମଣିଷଖିଆ ଆଦିବାସୀମାନେ ବି ବାସକରନ୍ତି । ଜଳବାୟୁ ମଧ୍ଯ ଅତ୍ୟଧିକ ଅସ୍ୱାସ୍ଥ୍ୟକର । ସେ ସ୍ଥାନ ମେଲେରିଆ ମଶା, ମାଛି, ଡାଆଁଶ, ଜୋକ ପ୍ରଭୃତିଙ୍କର ବାସସ୍ଥଳୀ । କଏଦୀମାନଙ୍କୁ ବିନା ଶୃଙ୍ଖଳରେ ଛାଡ଼ିଦେଲେ ମଧ୍ଯ ସେମାନଙ୍କର କେଉଁଆଡ଼େ ପଳାଇଯିବାର ଉପାୟ ନଥାଏ । ବାହାରେ ପଡ଼ି ଏପରିଭାବରେ ମରିବା ଅପେକ୍ଷା ଜେଲ ଭିତରେ ରହିବାକୁ କଏଦୀମାନେ ବେଶି ପସନ୍ଦ କରନ୍ତି । ଯେଉଁ କଏଦୀମାନଙ୍କୁ ଜେଲ ବାହାରେ ବଗିଚ୍ଚ ଓ ବିଲରେ ରକ୍ଷୀମାନଙ୍କ ଦାୟିତ୍ୱରେ କାମ ଦିଆଯାଏ, ଯେଉଁମାନଙ୍କ ଉପରେ କର୍ତ୍ତୃପକ୍ଷ ଓ ରକ୍ଷୀଙ୍କର ବେଶି ବିଶ୍ୱାସ ଜନ୍ମେ, ସେମାନଙ୍କୁ କିଛି ସମୟ ଜେଲ ବାହାରେ ବୁଲଚଲ କରିବାର ମଧ୍ଯ ସୁବିଧା ଦିଆଯାଏ ।

ନବକୁମାର କେତେକାଳ ଜେଲ ଜୀବନ କଟାଇବା ପରେ ତାଙ୍କୁ ଜେଲ ବାହାରେ ବୁଲି ପରିବା କିଆରି ଓ ଅନ୍ୟ ଗୃହବାସ ପ୍ରଭୃତି ଦେଖାଶୁଣା କରିବାର ସୁବିଧା ମିଳିଲା । ଜେଲ ଡାକ୍ତରଖାନାରେ ସହକାରୀ ଭାବରେ କାର୍ଯ୍ୟ କରିବାଦ୍ୱାରା ସେ ଚିକିତ୍ସା ବିଦ୍ୟାରେ ଅଭିଜ୍ଞତା ଅର୍ଜନ କରିବା ସଙ୍ଗେ ସଙ୍ଗେ ସେଠାର କର୍ମଚାରୀ ଓ କଏଦୀମାନଙ୍କ ସେବାକରିବା ଦ୍ୱାରା ସେମାନଙ୍କଠାରୁ ସମ୍ମାନ ପାଉଥିଲେ । ତେଣୁ ଜେଲ ବାହାରେ ଲୋକଙ୍କ ସଙ୍ଗେ ମିଳାମିଶା କରିବା ବା ସେମାନଙ୍କୁ ସାମୟିକ ଚିକିତ୍ସା କରିବାରେ ଅସୁବିଧା ଭୋଗ କରୁନଥିଲେ ।

ନବକୁମାର ଜେଲର କେଉଁ ଖୁଆଡ଼ରେ ଓ କେଉଁ କୋଠରୀରେ କେଉଁ ବିପ୍ଳବୀ ବୀର ରହିଥିଲେ ଓ ରହୁଥିଲେ ସେ ସବୁ ବିଷୟ ଜେଲ କର୍ମଚାରୀମାନଙ୍କଠାରୁ ସଂଗ୍ରହ କରି-ପାରିଥିଲେ । ସେ ବିଭିନ୍ନ ଖୁଆଡ଼ ପାରହୋଇ ବାହାରେ କାମ କରିବାକୁ ଗଲାବେଳେ ଯେଉଁ କୋଠରୀମାନଙ୍କରେ ବୀର ସାଭରକର ପ୍ରଭୃତି ବିପ୍ଳବୀମାନେ ବନ୍ଦୀ ଜୀବନଯାପନ କରିଥିଲେ, ସେଆଡ଼କୁ ଚାହିଁ ମୁଣ୍ଡ ନୁଆଁଇ ପ୍ରଣାମ କରନ୍ତି । କାମରୁ ଫେରି ସମୟ ପାଇଲେ ଏକୁଟିଆ ବସି ସେମାନଙ୍କ କଥା, ଦେଶକଥା ଓ ବିଶେଷରେ ଓଡ଼ିଶା କଥା ଚିନ୍ତା କରନ୍ତି ।

କାରାଗାରର ଗୋଟିଏ କୋଠରୀରେ ପରାଧୀନ ଓଡ଼ିଶାର ଗଜପତି ଦିବ୍ୟସିଂହ ଦେବ ଖୁଣୀ ଆସାମୀ ରୂପେ ବନ୍ଦୀ ଜୀବନ କଟାଉଥିବାର ସେ ଶୁଣିଥିଲେ । ତାଙ୍କ କଥା ମନେ ପକାଇ ନବକୁମାରଙ୍କ ମନରେ କ୍ଷୋଭଆସେ । ସେ ଭାବନ୍ତି, ଯେଉଁ ଇଂରେଜ ସରକାର ତାଙ୍କ ଗୋଡ଼ାଣିଆ ରାଜାମାନଙ୍କୁ ପ୍ରାଣଦଣ୍ଡ କ୍ଷମତା ଦେଇଛନ୍ତି, ରାଜାମାନେ ନିରୀହ ପ୍ରଜାଙ୍କ ଉପରେ ଅତ୍ୟାଚାର କରି ବିଦ୍ରୋହ ଦମନ ପାଇଁ ସାହାଯ୍ୟ ଲୋଡ଼ିଲେ ସୈନ୍ୟ ଫଉଜ ପଠାଇ ପାରୁଛନ୍ତି, ସେଇ ସରକାର ପୁଣି ନିରପେକ୍ଷ ବିଚାରର ଆଢୁଆଳରେ ଓଡ଼ିଶାର ଗଜପତିଙ୍କୁ ସାମାନ୍ୟ ଖୁଣୀ ଆସାମୀ ରୂପେ କଳାପାଣି ପଠାଇଥିଲେ—ଅଦ୍ଭୁତ ଚକ୍ରାନ୍ତ !

ଓଡ଼ିଶାର ଗଜପତି ଇଂରେଜଙ୍କର ଖାସ ପ୍ରଜା ହେଲେ । ସେ ଠାକୁର ରାଜା । ତାଙ୍କୁ ସାରା ହିନ୍ଦୁଜଗତ ପୂଜାକରନ୍ତି । ଓଡ଼ିଶାର ଗଜପତି ଓ ଦୁର୍ଦ୍ଧର୍ଷ କୃଷକ ସେନା,

ଇଂରେଜମାନେ ବଙ୍ଗଦେଶ ଓ ଅନ୍ୟାନ୍ୟ ରାଜ୍ୟ ଜୟ କରିବାର ବହୁକାଳ ପରେ ଇଂରେଜଙ୍କଠାରେ ପରାଜୟ ସ୍ୱୀକାର କରିଥିଲେ । ଇଂରେଜ ଭାରତର ଅନ୍ୟ ରାଜ୍ୟସବୁ ଦଖଲର ପ୍ରାୟ ଶହେ ବର୍ଷପରେ ୧୮୦୩ ରେ କଳେବଳେ କୌଶଳେ ଶେଷ ସ୍ୱାଧୀନ ରାଜ୍ୟ ଓଡ଼ିଶାକୁ ଦଖଲ କରିପାରିଥିଲେ ।

ବିରାଟ ସାଗର ବକ୍ଷରେ ଉତ୍ତୁଙ୍ଗ ତରଙ୍ଗମାଳା ବକ୍ଷରେ ମୁଣ୍ଡ ଟେକ କ୍ଷୁଦ୍ର ଦ୍ୱୀପଟିଏ ଶେଷରେ ଜଳମଗ୍ନ ହେଲପରି ଓଡ଼ିଶାଖଣ୍ଡ, କୃଷକ ସେନା ଓ ଜୟୀ ରାଜଗୁରୁ ପ୍ରଭୃତିଙ୍କ ପ୍ରାଣପାତ ପରେ ବ୍ରିଟିଶ ସାମ୍ରାଜ୍ୟରେ ଲୀନ ହୋଇଥିଲା । ଇଂରେଜ ସରକାରଙ୍କ ରାଗ ସବୁଠୁ ବେଶି ଓଡ଼ିଶା ଉପରେ । ତେଣୁ ଓଡିଶାକୁ ଇଂରେଜ ସରକାର ସବୁଠାରୁ ବେଶି ଅବହେଳା ଦେଖାଉଥିଲେ । ଓଡ଼ିଶା ଖଣ୍ଡ ବିଖଣ୍ଡିତ ହୋଇ ବିଭିନ୍ନ ପ୍ରଦେଶରେ ପଡ଼ିରହିଲା । ଦୁର୍ଭିକ୍ଷ, ବନ୍ୟା ଓ ଖାଦ୍ୟାଭାବରେ ଓଡ଼ିଆ ମ୍ରିୟମାଣ ହେଲା । ସେମାନଙ୍କ ଉପରେ ପଡ଼ୋଶୀଙ୍କ ଅତ୍ୟାଚାରକୁ ଇଂରେଜ ସରକାର ଉତ୍ସାହିତ କଲେ । ଓଡ଼ିଆ କୁଲି କାମ ପାଇଁ ଓଡ଼ିଶା ବାହାରକୁ ବାହାରିଲେ । ଓଡ଼ିଆ ଭାଷା ବିଲୀନ ହେବାକୁ ବସିଲା ।

ସିପାହୀ ବିଦ୍ରୋହ ଦମିତ ହୋଇଥିଲା । ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ ପ୍ରଭୃତି ଯାଇଥିଲେ । ନାମକୁ ମାତ୍ର ଗଜପତି ବୀରକେଶରୀ ଦେବ ପାଇକ ବିଦ୍ରୋହ ବେଳେ ଅନ୍ତକରଣ ଖାହୋଇ ଛାଡ଼ିପାଇଥିଲେ । ସେ ମଧ୍ୟ ଛଅ ବର୍ଷର ପୋଷ୍ୟପୁତ୍ର ଦିବ୍ୟସିଂହ ଦେବଙ୍କୁ ଛାଡ଼ି ତା ୧୧ । ୧୨ । ୧୮୫୯ରେ ଇହଲୀଳା ସାଙ୍ଗ କରିଯାଇଥିଲେ । ଦିବ୍ୟସିଂହ ଦେବଙ୍କ ନଅଙ୍କର ଦୁର୍ଭିକ୍ଷରେ 'ଇଂରେଜ ସରକାରଙ୍କ ନୀତି ଓଡ଼ିଆଙ୍କ ମେରୁଦଣ୍ଡ ଭାଙ୍ଗି ଯାଇଥିଲା । ପାଟି ଫିଟାଇବାକୁ କଉଁ ଚୁଁ ହେବାକୁ ଓଡ଼ିଆଙ୍କର ବଳ ନଥିଲା । ଗଡ଼ଜାତ ରାଜାସବୁ ଇଂରେଜ ସରକାରଙ୍କ ପଦଲେହନ କରୁଥିଲେ । ତଥାପି ଇଂରେଜଙ୍କୁ ବିଦ୍ରୋହର ଭୂତ ଗୋଡ଼ାଉଥିଲା । ଲାଟ ବଡ଼ଲାଟମାନେ ଥରକୁ ଥର କଟକରେ ଦରବାରମାନ କରି ରାଜାରାଜୁଡ଼ା ଓ ସେବକମାନଙ୍କ ପୂଜା ଗ୍ରହଣ କରୁଥିଲେ ଓ ସେମାନଙ୍କୁ ନାନା ଉପାଧିରେ ଭୂଷିତ କରୁଥିଲେ । ପୁରୀ ରାଜାଙ୍କର ଖୋର୍ଦ୍ଧା ଜମିଦାରୀ ମଧ୍ୟ ଯାଇଥିଲା, ତାଙ୍କୁ ଅଛା କଲାଭଳି ୧୮୭୭ ଡ଼ିସେମ୍ବରରେ ମହାରାଜା ପଦବୀ ପ୍ରଦାନ କରାଯାଇଥିଲା ।

ଦରବାର ପାଇଁ ବିରାଟ ଗହଳ ଚାଲିଛି । ସେବର ବଙ୍ଗ ପ୍ରଦେଶ (ବଙ୍ଗ ଓଡ଼ିଶା ବିହାର ଆସାମ)ର ଲାଟ ସାହେବଙ୍କ ନିକଟରେ ଗଡ଼ଜାତ ରାଜାମାନେ ଠୁଳ ହୋଇଛନ୍ତି । ୧୦/୧୧ ବର୍ଷର ବାଳକ ପୁରୀ ରାଜାଙ୍କ ଶୋଭାଯାତ୍ରାର କାହାଳୀ କାଠଯୋଡ଼ି ନଦୀର ପୁରୀଘାଟରେ ବାଜି ଉଠିଲା । ଛତିଶ ଗଡ଼ଜାତର ସବୁ ରାଜା ପାଟଛତି ଧରି ସେଠାକୁ ଦଉଡ଼ିଲେ । ସମସ୍ତେ ନତମସ୍ତକ ହୋଇ ତାଙ୍କୁ ପାଛୋଟି ଆଣିଲେ । ଇଂରେଜ ଲାଟ ଚମକି ପଡ଼ିଲେ । ତାଙ୍କୁ କୋକୁଆ ଭୟ ଘୋଟିଗଲା । ସେ ଭାବିଲେ, ଏଇ ସାମାନ୍ୟ ଟୋକାଟାର କିଛି ନଥାଇ ମଧ୍ୟ ଏତେ କ୍ଷମତା, ଏ ଚାହିଁଲେ ସମସ୍ତ ଗଡ଼ଜାତର ନୃପତିମାନଙ୍କୁ ଧରି ଭୟାବହ ବିଦ୍ରୋହ ଘଟାଇପାରେ ।

ପରେ ପୁଣି ରାଜାଙ୍କର ଆନୁଗତ୍ୟ ଜାଣିବା ପାଇଁ ରଥଯାତ୍ରା ପରେ ମହାମାନ୍ୟ ବଡ଼ଲାଟଙ୍କ ଦେଖିବା ପାଇଁ ଆଉଥରେ ରଥଯାତ୍ରା କରାଇବାକୁ ତାଙ୍କୁ ଅନୁରୋଧ କଲେ ଓ ତା'ର ସମସ୍ତ ଖର୍ଚ୍ଚର ଭାର ସରକାର ଗ୍ରହଣ କରିବା ପାଇଁ ପ୍ରସ୍ତାବ ଦେଲେ; କିନ୍ତୁ ପୁଣି ରାଜା କହିଲେ—ମୁଁ ହିନ୍ଦୁ ଜଗତର ଦେବତାଙ୍କ ତତ୍ତ୍ୱାବଧାରକ ମାତ୍ର, ସରକାର ହିନ୍ଦୁ ସମାଜର ଅନୁମତି ଆଣନ୍ତୁ, ତେବେ ମୁଁ ତାହା ପାଳନ କରିବି ।

ମହାପରାକ୍ରମୀ ବ୍ରିଟିଶ ସରକାରଙ୍କର ଆଦେଶ ଅବଜ୍ଞା କରିବା ମୃତ୍ୟୁଦଣ୍ଡ ସଙ୍ଗେ ସମାନ । ତା'ପରେ ଷଡ଼ଯନ୍ତ୍ର ଚାଲିଲା । ଜ୍ୟୋତିଷମାନେ ପଠାହେଲେ । ସେମାନେ ଗଣନା କରି ରାଜାଙ୍କର ଖରାପ ଦଶା ଥିବାର ପ୍ରମାଣ କରାଇଲେ । ରାଜା ତୀର୍ଥଯାତ୍ରା କଲେ । ରାଣୀ ମା' ଖୋର୍ଦ୍ଧା ନିକଟ ପଞ୍ଚୁଗାଁର ସାଧୁ ଶିବଦାସଙ୍କୁ ଆଣି ଦଶା କାଟିବା ପାଇଁ ନଅର ଭିତରେ ଯଜ୍ଞ କରାଇଲେ । ସରକାରୀ ଲୋକ ୨୮-୨-୬୮ ତାରିଖରେ ଶିବଦାସଙ୍କୁ କୌଶଳରେ ଡାକିନେଇ କଳବଳ କରି ମାରି ନଅର କାନ୍ଥ ନିକଟରେ ପକାଇଦେଲେ । ପୋଲିସ ମୁର୍ଦ୍ଦାରକୁ ଦେଖିଯାଇ ଚିପଚାପ୍ କରାଇ ଗୋଟିଏ ମିଥ୍ୟା ଅନୁମ ରିପୋର୍ଟ ପ୍ରସ୍ତୁତ କରି ରାଣୀଙ୍କ ସଙ୍ଗେ ପାପ ପ୍ରଶ୍ରୟ ଥିବା ସନ୍ଦେହ କରି ସାଧୁଙ୍କୁ ରାଜା ମାରି ନଅର ଆରପଟକୁ ଫିଙ୍ଗି-ଦେଇଛନ୍ତି ବୋଲି ପ୍ରମାଣ କରାଇଲେ । ସରକାର ୧୮୬୮ ଜୁଲାଇରେ ତାଙ୍କର ମହାରାଜା ଉପାଧି ଫେରାଇନେଲେ ଓ ଇଂରେଜ ଜଜଙ୍କ ବିଚାର ପରେ ରାଜାଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦେଲେ । ଇଂରେଜ ବେଳର ଇତିହାସରେ ସେଇ ମିଥ୍ୟା ହିଁ ଲେଖାଗଲା । ରାଣୀ ବିରହ ଦୁଃଖରେ ମିଥ୍ୟାପ୍ରମାଣ ହୋଇ ଆତ୍ମହତ୍ୟା କଲେ; କିନ୍ତୁ ପ୍ରକୃତ ଇତିହାସ ଲିଭିଲା ନାହିଁ । ଲୋକଙ୍କର ବିଦ୍ରୋହ ପାଇଁ ବଳ ନଥିଲେ ମଧ୍ୟ ଲୋକଙ୍କ ଭିତରେ ଯେ ଚାଞ୍ଚଲ୍ୟ ଖେଳିଥିଲା ଓ ରାଜାଙ୍କ ପ୍ରତି ସହାନୁଭୂତି ଦେଖାଇ ଯେଉଁ କବିତା ପ୍ରସ୍ତୁତ ହୋଇଥିଲା ସେ ଲୋକମୁଖରେ ପ୍ରଚାରିତ ହୋଇ ଏବେ ବି ଗାଁଗହଳରେ ଲୋକଗୀତ ଭାବରେ ଜୀବିତ ଅଛି । ପରେ ସେ ଗୀତରୁ ସଂଗ୍ରହ କରାଯାଇ 'କାଟ' ବୋଲି ଗୋଟିଏ ବହିରେ ପ୍ରକାଶ ପାଇଥିଲା ।

ନବକୁମାରଙ୍କର ଦିବ୍ୟସିଂହ ଦେବଙ୍କ କଥା ମନେପଡ଼ିବା ସଙ୍ଗେ ସଙ୍ଗେ ବୁଢ଼ୀମାଆ-ଠାରୁ ଶୁଣିଥିବା ଦିବ୍ୟସିଂହଙ୍କ ବିଷୟରେ ପ୍ରଚଳିତ ଲୋକଗୀତରୁ ଏଇ କେତେପଦ ମନେପଡ଼ି ତାଙ୍କ ଆଖି ଛଳଛଳ ହୋଇଗଲା ।

### ଲୋକଗୀତ (କାଟ)

ଷେମଣ୍ଡି ଗଡ଼ରେ ରାଜା ଥିଲେ ଜନ୍ମ ହୋଇ
ଓଡ଼ିଶା ମଉଡ଼ମଣି କିଏ କଲା ନେଇ
ବନ୍ଧୁ ସେତେବେଳେ ଭଲ
କିଏ ଜାଣେ ଦଇବ କି ହୋଇଯିବ ଶଲ ଲୋ, ବନ୍ଧୁ...

ଖେତ୍ରରେ ସୁନାଦୁର୍ଗା ପାଇଥିଲେ ପୂଜା
ଷୋଡ଼ଶ ଉପଚାର ତ ହୋଇଥିଲା ଖଣ୍ଡା ଳେ ବନ୍ଧୁ...
ନ କଲେ ବିଚାର
ଏତେ ଦଶା ପଡ଼ିଗଲା ନଅର ଭିତର ।

ବରଷକଠାରୁ ରାଜା ବିବେକ ହୋଇଲେ
ନାନା ତୀର୍ଥମାନଙ୍କରେ କର୍ମ କରାଇଲେ
ଦଶା ଅଛି ପଛି
ନାହାନ ପଣ୍ଡିତମାନେ ସାଧୁଥିଲେ ରନ୍ଧି ।

ବୋଇଲେ ଦଶାରେ ଦେହ ବ୍ୟାଧିଗ୍ରସ୍ତ ହେବ
ନୋହିଲେ ଜୀଅନ୍ତା ଯମ ବଳେ ଧରିନେବ
ବନ୍ଧୁ, କଏଦୀ କରିବ
ମଠିଆ ଶାଙ୍କୁଳି ଦେଇ ଦ୍ୱୀପାନ୍ତର ଦେବ ।

ଉଆସ ଭିତରେ ରାଣୀ ନଅରରେ ଥିଲେ
ପଞ୍ଚୁଗାଆଁ ଗୋସାଇଁଙ୍କ କେ ଗୋଚର କଲେ
ବନ୍ଧୁ, ରାଜା ଭଲହେବା ପାଇଁ
ପଞ୍ଚୁଗାଆଁ ଗୋସାଇଁଙ୍କ ଆଣିଲେ ଡକାଇ ।

ଯାଇବାର ଲୋକ ତାଙ୍କୁ ସନ୍ଧ୍ୟାନପାଇଲେ
ଉଆସ ଭିତରୁ ତାଙ୍କୁ ଡକାଇଣ ନେଲେ
ବନ୍ଧୁ, ତାଙ୍କୁ ନର୍କ ଗୋଲ ପେଇ
ନଖମାନଙ୍କରେ ବାଂଶ ପାତିଆ ଯେ ବାଡ଼େଇ ।

ପାଞ୍ଚ ସାତଜଣ ଧାଣ୍ଡେ ମେଳ ହୋଇଗଲେ
ନଅର ତଳକୁ ମଡ଼ା ଫୋପାଡ଼ିଣ ଦେଲେ
ବନ୍ଧୁ, ରାଜା ମୁଣ୍ଡେ ଦୋଷ
କହିଲେ ନଅରେ ଏତେକ କେ କରିଅଛି କୃତ୍ୟ ।

ନଅରକୁ ଥାଟ୍‌ବାଲା ବୁଲି ଆସିଥିଲା
ଯାରେଣ୍ଟ ତଳରୁ ମଡ଼ା ଗୋଟାଇଣ ନେଲା
ବନ୍ଧୁ, ନେଇ ଥାନାରେ ଥୋଇଲା
ସଚେତ କରି କେସନ ରସିଦ ଲେଖିଲା ।

ସେଦିନ ରାତିରେ ତାହା ସାହେବ ଜାଣିଲା (ଇଂରେଜ ମାଜିଷ୍ଟ୍ରେଟ)
ସାହେବ ଜାଣିଣ ତାହା କର୍ଣ୍ଣିଙ୍କୁ କହିଲା (ଇଂରେଜ ଏସ୍.ପି)
ତାହା ଶୁଣି କର୍ଣ୍ଣି ଆଗେ ଅତି କୋପ କଲି
ବିଚାର କଲେ ବସି ସେ ସାହେବ ଦୁଇ
ଆରଦିନ ଦୁଇଘଡ଼ି ବେଳ ହୋଇନାହିଁ
ଆସିଲେ ସାହେବ କର୍ଣ୍ଣି ଘୋଡ଼ା ଦଉଡ଼ାଇ
ବନ୍ଧୁ, ସେ ତ ନଅରେ ପଶିଲେ
ମଣୋହିଠାବରେ ଯାଇ ରାଜାଙ୍କୁ ଭେଟିଲେ ।

ଧକ୍କାମାରି ରାଜନକୁ ଦାଣ୍ଡକୁ କାଢ଼ିଲା
ଅନ୍ତଃପୁର ପୁରେ କାନ୍ଦ ବୋବାଳି ଶୁଭିଲା
ବନ୍ଧୁ, ସେ ରାଣୀ ବିକଳ
ଯଦି ସେ ନିଅଳ ନେଲେ, ଖାଇବି ଜହର ।

ତେରଦିନ ମିଆଦି ସେ କରିମାରିଥିଲା
ତାରିଖ ଦି'ଦିନ ଆଉ ଡକାଇଣ ନେଲା
ବନ୍ଧୁ, କହୁଥାଏ ବସି
କରିବି ନିଅଳ ମୁହିଁ ଜୀବନ ଭିତରେ ।

ନୋହିଲେ ତ ସିଂହାସନ ଛାଡ଼ିବି ଫାଶୀ ଦେଇ
ନୋହିଲେ ମୁଁ କଳାପାଣି ଦେଖ ଚାଲିଯିବି
ବନ୍ଧୁ କହେ କୋଉମାନା ନାହିଁ
ଏ ଭିନ୍ନ କଥାରୁ କଥେ କରିବି ତ ମୁହିଁ ।

ଘୁଆରରେ ବସି ରାଜା ନଅରେ ପଶିଲେ
ଅନ୍ତଃପୁର ପୁରେ କାନ୍ଦ ବୋବାଳି ଶୁଣିଲେ
ବଡ଼ ମା'ଙ୍କ ପୁରେ ଯେ ରାଜନ ବିଜେ କଲେ;
ବହୁତ କାଳର ଦୁଃଖ ତାହାଙ୍କୁ କହିଲେ
ଯାଉଅଛୁ ମୁହିଁ,
ତୁମ ଉଆସରେ ତୁମେ ସୁଖେ ଥାଅ ରହି ।

(ବୁଢ଼ୀମା କହିଲେ)—

ଯେତେବେଳେ କର୍ଣ୍ଣି ଗଡ଼ା ନେଇ ପିନ୍ଧାଇବ
ପିନ୍ଧି ନପାରିଲେ ତୁମେ ବିକଳ ହୋଇବ

କି କରିବି ମୁହିଁ
ଏହା ଦେଖି ଦେହ ମୋର ସହିବ ତ ନାହିଁ ।

× × ×

ସାନମା'ଙ୍କ ପୁରେ ଯେ ରାଜନ ବିଜେକଲେ
ବହୁତ କାଳର ଦୁଃଖ ମାଆଙ୍କୁ କହିଲେ
ଜନମ ଲଗନ ପେଟ ଚକଟି ହୋଇବ
ମାଗିଆଣି ଏତେ ଦୁଃଖ ଦେଉଛୁ ଦଇବ
ଯାଉଅଛୁ ମୁହିଁ
ତୁମ ଉଆସରେ ତୁମେ ସୁଖେ ଥାଅ ରହି ।

(ମା' କହିଲେ)—

ରାଜଗୁରୁ ଦେବାର୍ଚ୍ଚନ କିଏ ସେ ହୋଇବ
ବଡ଼ଦେଉଳରେ ଛତ୍ର କିଏ ଟେକାଇବ
ନ ମାନିବ ଭୂପ
ଏଥିପାଇଁ ମନେ ମୋର ହେଉଛି ସନ୍ତାପ ।

ଆଶୀର୍ବାଦ କର ମୁହିଁ ଗ୍ରାମୁରୁ ଯାଉଛି
ଦେବନୀତି ଚଳାଇବ କେନାମଣି ଅଛି
କେନାମଣିଙ୍କି ମୋହର ବଡ଼ୁ କରାଇବ
ନିଯୋଗର ହାତେ ନେଇ ଛତ୍ର ଟେକାଇବ
ରାଣ ଯେଉଁ କହି
କେନାମଣିର ମୋର ଶୁଣିବନି ମୁହିଁ ।

ରାଣୀହଂସପୁରେ ଯେ ରାଜନ ବିଜେ କଲେ
ତାଙ୍କୁ ଦେଖି ମହାଦେଈ ମୂର୍ଚ୍ଛା ହୋଇଗଲେ
ରାଜା ବିଗୁରନ୍ତି ମନ
ନିଷ୍ଟେ ମୋହଲାଗି ଏ ତେଜିବ ଜୀବନ ।

ସ୍ୱର୍ଣ୍ଣପୁର ରାଇଜରେ କାହିଁ ଜନ୍ମ ହେଲେ
ଅଡ଼ ସିନହରେ ମୋର ହାତ ଧରିଥିଲେ
ଦିନେ ନ ଦେଲ ମୁଁ ସୁଖ
କୋଡ଼ିଏ ବରଷ ଦିନେ ସଙ୍ଗେ ଗୃହବାସ ।

× × ×

ବନ୍ଦୀଶାଳେ ରାଜନର ନନ୍ଦ ଭାଙ୍ଗିସିବ
ପାଶେ ହାତମାର ଦେଖେ କୃମର ନଥିବ
ବନ୍ଧୁ, ସେତେବେଳେ ପଣ୍ଡି
ରାଜନ ଆଖିରୁ ଲୁହ ପଡ଼ିବ ତ ଗଡ଼ି ।

× × ×

ଠାକୁର ରାଜା ଗଜପତି ବଂଶର ନରନାଥ ଯେପରି ବିପଦ ସମୟ ବେଳେ ମଧ୍ୟ ଅନ୍ୟକଥା ଅପେକ୍ଷା ଜଗନ୍ନାଥ ସେବାକୁ କିପରି ବେଶି ଗୁରୁତ୍ୱ ଦେଉଥିଲେ ତାହା ଏହି ଲୋକଗୀତିର କେତେ ପଦରୁ ଉପଲବ୍ଧି କରି ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରଣାମକଲେ ।

ନବକୁମାର ଜାଣିଥିଲେ ଓଡ଼ିଶାର ଗଜପତିଙ୍କୁ ଖୁଣୀ ଆସାମୀ ରୂପେ ବନ୍ଦୀ କରିବାପରେ ଜଗନ୍ନାଥ ମନ୍ଦିରକୁ ସରକାରୀ କରିବା ବିରୁଦ୍ଧରେ ଉତ୍କଳ ଗୌରବ ମଧୁସୂଦନ ଗଜପତିଙ୍କ ଓକିଲ ଭାବେ ମୋକଦ୍ଦମା ଲଢ଼ିଥିଲେ । ଇଂରେଜ ସରକାର କୌଣସି ଧର୍ମ ଉପରେ ହାତ ଦେବେନାହିଁ ବୋଲି ଘୋଷଣା କରିଥିଲେ ମଧ୍ୟ ଜଗନ୍ନାଥ ମନ୍ଦିରକୁ ରାଜାଙ୍କ ହାତରୁ କାଢ଼ିନେବାର ଚକ୍ରାନ୍ତରୁ କ୍ଷାନ୍ତ ହୋଇନଥିଲେ ।

ମଧୁସୂଦନ, ଗୌରୀଶଙ୍କର, ଫକୀର ମୋହନ, କବି ଗଙ୍ଗାଧର ମେହେର ପ୍ରଭୃତି ଓଡ଼ିଆ ଭାଷାକୁ ରକ୍ଷା କରିବା ପାଇଁ ଓଡ଼ିଶାର ସମସ୍ତ ଅଞ୍ଚଳକୁ ଏକାଠି କରିବା ପାଇଁ ସରକାରଙ୍କଠାରେ ଦାବୀ କରି ଜଣ ଜଣ କରି ସ୍ୱର୍ଗାରୋହଣ କରିଛନ୍ତି । କେହି ସ୍ୱତନ୍ତ୍ର ପ୍ରଦେଶ ଦେଖିପାରିନାହାନ୍ତି ।

ବଙ୍ଗଳାର ବଙ୍ଗ ଭଙ୍ଗ ବିପ୍ଳବ ଭାରତର ଆଖି ଫିଟାଇଥିଲା । ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, ହରିହର, କୃପାସିନ୍ଧୁ, ଅନନ୍ତ ପ୍ରଭୃତି ସତ୍ୟବାଦୀ ଦଳର ଯୁବକମାନେ ବଙ୍ଗଳାର ବିପ୍ଳବୀ ଦଳଙ୍କ ସଙ୍ଗେ ସମ୍ପର୍କ ରଖିଥିଲେ । ସ୍ୱଦେଶୀ ଆନ୍ଦୋଳନର ପ୍ରଭାବରେ ଆସି ସନ୍ନ୍ୟାସୀଙ୍କ ପରି ଗେରୁଆ ବସ୍ତ୍ର ପରିଧାନ କରି ଜୀବନଯାପନ କରୁଥିଲେ । ଅଟଳ ବିହାରୀ ଆଚାର୍ଯ୍ୟ କଲିକତା ମେଡ଼ିକାଲ କଲେଜରେ ପାଠ ପଢ଼ୁଥିବାବେଳେ ବିପ୍ଳବୀ ଦଳର ସମ୍ପର୍କରେ ଆସି କାରାବରଣ କରିଥିଲେ ।

ସତ୍ୟବାଦୀ ଦଳ ମୁମୂର୍ଷୁ ଓଡ଼ିଆଙ୍କ ଭିତରେ ଚେତନା ଆଣିବା ପାଇଁ ଶିକ୍ଷା, ସେବା ଓ ଉତ୍କଳ ସମ୍ମିଳନୀର କାର୍ଯ୍ୟରେ ଯୋଗଦେଇ ମଣିଷ ଗଢ଼ିବା କାର୍ଯ୍ୟରେ ଲାଗିଥିଲେ ।

ଗାନ୍ଧି ଅହିଂସାର ନୂତନ ପନ୍ଥା ଦେଖାଇଲେ । ସେମାନେ ସର୍ବସ୍ୱ ତ୍ୟାଗକରି ନିଜକୁ କଂଗ୍ରେସ ଆନ୍ଦୋଳନରେ ଭସାଇ ଦେଲେ; କିନ୍ତୁ ବିପ୍ଳବାତ୍ମକ ଭାବ ସେମାନଙ୍କ ମନକୁ ସର୍ବଦା ଆଲୋଡ଼ିତ କରୁଥିଲା ।

ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନ ପରେ କାରାଗାରରୁ ଫେରି ପରେ ଶହୀଦ ହୋଇଥିବା ମହାବିପ୍ଳବୀ ଲାଲା ଲଜପତ ରାୟଙ୍କ ସେବା ଅନୁଷ୍ଠାନ 'ଲୋକସେବକ ମଣ୍ଡଳ'ରେ

ଯୋଗଦେଇଥିଲେ । ଦୁଃଖ ଓ ନିରାଶାରେ ତାଙ୍କ ହୃଦୟ ଭାଙ୍ଗିପଡ଼ୁଥିଲା । ସେ ଅକାଳରେ ସ୍ୱର୍ଗାରୋହଣ କଲେ । ତାଙ୍କର ପ୍ରଧାନ ସାଥି ନୀଳକଣ୍ଠ ଯୁବ ଜାଗରଣକୁ ଆଶାବାଦୀ ହୋଇ ଗ୍ରହଣ କରିଥିଲେ । ବିପ୍ଳବୀ ସୁଭାଷ ସତ୍ୟବାଦୀ ଗୋଷ୍ଠୀର ଅନ୍ତରଙ୍ଗ ଥିଲେ । ଗୋପବନ୍ଧୁଙ୍କ ବିୟୋଗ ପରେ ତାଙ୍କ ନାମରେ ଗୋଟିଏ ବିରାଟ ଯୁବ ଅନୁଷ୍ଠାନ ଗଢ଼ିବାର ଉଦ୍ୟମ ହେଲା । ନୀଳକଣ୍ଠ ସଭାପତି ଓ ସୁଭାଷ କୋଷାଧ୍ୟକ୍ଷ ହେଲେ । ସୁଭାଷ ସେ ଅନୁଷ୍ଠାନକୁ ଅର୍ଥଦାନ କରିବା ପାଇଁ କଲିକତାରୁ ଦେଶକୁ ଆହ୍ୱାନ ଦେଇଥିଲେ । ଯୁବ ବିପ୍ଳବକୁ ସରକାର ବନ୍ଧୁକ ମୁନରେ ଦବାଇଦେଇ ପାରିବେ ନାହିଁ ବୋଲି ସେମାନଙ୍କର ଦୃଢ଼ ଧାରଣା ଥିଲା । କେନ୍ଦ୍ର ବିଧାନସଭାରେ ଯେତେବେଳେ ଯୁବ ଆନ୍ଦୋଳନ ଓ ସାମ୍ୟବାଦ (କମ୍ୟୁନିଷ୍ଟ) ଆନ୍ଦୋଳନକୁ ପୋଲିସ ବଳରେ ଦବାଇ ଦେବାପାଇଁ ଇଂରେଜ ସରକାର ୪-୨-୧୯୨୯ରେ ସାଧାରଣ ସୁରକ୍ଷା ଆଇନ ବା ପବ୍ଲିକ ସେଫ୍‌ଟି ବିଲ୍ ନାମରେ ଏକ ଦୃଢ଼ ଦମନ ଆଇନ ପେଶ୍ କଲେ, ସେତେବେଳେ କେନ୍ଦ୍ର ବିଧାନସଭାର ସଭ୍ୟ ଭାବରେ ନୀଳକଣ୍ଠ ତା'ର ବିରୋଧ କରି ଓଜସ୍ୱିନୀ ଭାଷାରେ କହିଥିଲେ—

ହେ ରକ୍ଷଣଶୀଳ, ସାମ୍ରାଜ୍ୟବାଦୀ ଧନୀ ଇଂରେଜ ସରକାର ! ଯୁବକମାନଙ୍କର କମ୍ୟୁନିଜିମ୍ ଆଦର୍ଶ ବା ସାମ୍ୟବାଦୀ ଭାବଧାରାକୁ ସମାଜବିରୋଧୀ କହି ଦମନ କରିବାକୁ ଚେଷ୍ଟା କରନାହିଁ । ନୂତନ ଭାବଧାରାରେ ଅନୁପ୍ରାଣିତ ହେବା ଅସ୍ୱାଭାବିକ ପରିବର୍ତ୍ତନ ବା ବିପ୍ଳବ ନୁହେଁ । ତାହା ଅଭ୍ୟୁଦୟ ବା ସ୍ୱାଭାବିକ ଜୀବନଧାରା । ଯେକୌଣସି ସରକାର ଯଦି ଲୋକଙ୍କୁ ସୁଶାସନ ନଦିଅନ୍ତି କିମ୍ବା ଲୋକଙ୍କ ଇଚ୍ଛା ପ୍ରତି ଅବଜ୍ଞା ପ୍ରଦର୍ଶନ କରନ୍ତି, ସେ ସରକାର କେବଳ ଦମନ ନୀତିରେ ନିଜର ଗାଦିକୁ ସ୍ଥାୟୀ କରି ରଖିପାରିବ ନାହିଁ । ଏହା ଗୋଟିଏ ନୂତନ ଆଦର୍ଶ । ଏହା ପୃଥିବୀସାରା ଶାଖା ମେଲୁଛି, ଭାରତକୁ ଆସିବ ହିଁ ଆସିବ । ତୁମେ ଏହାକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିଲେ ଜାଣିପାରିବ, ଫୁଲଟି ଗଛଟିର ପରିର ଅଭ୍ୟୁଦୟ ମାତ୍ର । ଜଣେ ସାଧାରଣ ଲୋକ ଗଛହଳଟିକୁ ଯାଇ ଫୁଲଟିକୁ ଦେଖି ତା' ସେ ଗଛର ବୈପ୍ଳବିକ ପରିବର୍ତ୍ତନ ବୋଲି ଭାବିପାରେ; କିନ୍ତୁ ଉଦ୍ଭିଦବିଜ୍ଞାନୀ ତାହା ଭାବେ ନାହିଁ । ଫୁଲ ଫୁଟିବା ପାଇଁ ଗଛଟି ବଞ୍ଚିଛି । ନୂତନ ଭାବଧାରାର ଆହରଣରେ ସମାଜକୁ ପୁଷ୍ଟ କରିବା ପାଇଁ ଯୁବଭାବର ସୃଷ୍ଟି । ତୁମେ କ୍ଷମତା ମଦରେ ବୁଡ଼ିରହି ନୂତନତ୍ୱକୁ ଦେଖି ଚମକି ପଡ଼ୁଛ ।

ଟୁପିଆର ରାଜତନ୍ତ୍ର ସାଇବେରିଆର ବରଫ ଭିତରେ କାରାରୁଦ୍ଧ କରି ଯେଉଁ ଆଦର୍ଶ ଓ ଭାବଧାରାକୁ ରୋକି ପାରିନାହିଁ, ତୁମେ ତୁମ ସରକାରୀ ମହଲା ମହଲରେ ସେ ଶିଶୁକୁ ତୋଟିଚିପି ମାରିଦେଇ ଅକ୍ଷାଧୂନିଆ ରାଜତନ୍ତ୍ରର ସାମ୍ରାଜ୍ୟବାଦରେ ଏ ଦେଶକୁ ଚିରଦିନ ଲୁଟିକରିପାରିବ ବୋଲି ଆସ୍ପର୍ଦ୍ଧା କରନାହିଁ । ଏ ଦେଶରେ ଯୁଗ ଯୁଗ ଧରି ଏପରି ବହୁ ନୂତନ ଆଦର୍ଶ ଓ ଭାବଧାରା ପ୍ରବେଶ କରିଛି । ଆମର ଭାରତୀୟ ସଂସ୍କୃତି ତାକୁ କୋଳ କରି

ନେଇଛୁ । ଆମର ଯୁବ ଆଦର୍ଶ ଯଦି ସେଇ ଆଦର୍ଶରେ ମୁକ୍ତିର ଆଲୋକ ଦେଖେ ତେବେ ତୁମେ ତାକୁ ଦବାଇଦେଇ ପାରିବ ନାହିଁ ।

ଏକଥା ମନେପଡ଼ିବା ପରେ ନବକୁମାର ଭାବିଲେ, ତାଙ୍କର କମ୍ୟୁନିଷ୍ଟ ବନ୍ଧୁମାନେ ବର୍ତ୍ତମାନ ପରିସ୍ଥିତିରେ ସେ ଭାବଧାରାକୁ କେତେଦୂର କାର୍ଯ୍ୟକାରୀ କରି ଆଗେଇଦେଇ-ପାରିବେ ? ବର୍ତ୍ତମାନ ସେ ଆନ୍ଦୋଳନ ଦେଶରେ କି ଆକାର ଧାରଣ କରିବଣି ? ସ୍ୱାଧୀନତାକାମୀ ଜନସାଧାରଣ ସେମାନଙ୍କୁ କି ଚକ୍ଷୁରେ ଦେଖୁଥିବେ ?

ଦେଶର ଅନ୍ୟ ଯୁବକ ବନ୍ଧୁ ଓ ନେତାମାନେ କଅଣ କରୁଥିବେ ? ଓଡ଼ିଶାରେ ଲବଣ ସତ୍ୟାଗ୍ରହର ଅଗ୍ରଗାମୀ ବୀର ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଓ ତାଙ୍କର ପିତା ଭିଖାରୀ ବାବୁ ପ୍ରଭୃତି ବିପ୍ଳବ ପନ୍ଥା ଛାଡ଼ି ଆଶ୍ରମ କରି ଗାନ୍ଧିଙ୍କ ସଙ୍ଗଠନ କାର୍ଯ୍ୟକ୍ରମକୁ ଆଦରି ନେଲେ ଅନ୍ୟ ଉଗ୍ରପନ୍ଥୀମାନେ କଅଣ ନରମ ହୋଇ ନିର୍ବାଣରେ ଶୋଇପଡ଼ିବେଣି ?

ବେଳେ ବେଳେ ତାଙ୍କର ନିଜ ଘର କଥା ମଧ୍ୟ ମନକୁ ଆନ୍ଦୋଳିତ କରୁଥିଲା । ଶରଧା କଅଣ କରୁଥିବ ? ପିଲାଟି ପୁଅ କି ଝିଅ ? ସେଇଟି କେତେ ବଡ଼ ହେବଣି ? ତାଙ୍କ ବାପା ସ୍ତ୍ରୀ ଓ ପୁତ୍ରଙ୍କୁ ହରାଇ କଅଣ ଭାବୁଥିବେ ? ଶରଧାକୁ କପରି ଚକ୍ଷୁରେ ଦେଖୁଥିବେ ? ଶରଧାର ସୁବିଧା ଅସୁବିଧା ଓ ବିପଦବେଳେ ତାକୁ କି ସାନ୍ତ୍ୱନା ମିଳୁଥିବ ?

ଜେଲଖାନା ପୁସ୍ତକାଳୟରୁ ଧର୍ମପୁସ୍ତକ ଆଣି ପଢ଼ିବାପାଇଁ କଇଦିମାନଙ୍କୁ ଅନୁମତି ମିଳୁଥିଲା । ସେ ବାଇବଲ, ଗୀତା, କୋରାନ ପ୍ରଭୃତି ଧର୍ମଗ୍ରନ୍ଥ ପଢ଼ିଲାବେଳେ ସେସବୁ ଭିତରେ ମଧ୍ୟ ବିପ୍ଳବର ଧ୍ୱନି ଶୁଣିବାକୁ ପାଉଥିଲେ । ଗୀତାର 'କର୍ତ୍ତବ୍ୟବୋଧ' ଅର୍ଜୁନଙ୍କୁ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଶ୍ରୀକୃଷ୍ଣଙ୍କ ପ୍ରେରଣା ଦେବାକଥା ତାଙ୍କୁ ଅଭିଭୂତ କରୁଥିଲା । ବାଇବେଲର ଧର୍ମ କବିତା ତାଙ୍କ ମନରେ ସାହସ ଦେଉଥିଲା । "ଭଗବାନ ସବୁ କାର୍ଯ୍ୟକୁ ବାଟରେ ପକାଇ ତୁମର ଆତ୍ମାର ପୂର୍ଣ୍ଣତା ଆଣିଦେବେ । ତୁମର ଜୀବନ ଜାହାଜ ସମୁଦ୍ରର ଉତ୍ତାଳ ତରଙ୍ଗର ଫେନରାଶି ଭିତରେ ଇତସ୍ତତଃ ହେଲାବେଳେ ମଧ୍ୟ ସର୍ବନିୟନ୍ତା ସମୁଦ୍ର ମଝିରେ ତୁମକୁ ନିରାପଦ ରଖି କୂଳରେ ଲଗାଇଦେବେ ।"

ବାଇବେଲର ଏହି ବାଣୀ ପଢ଼ିଲାପରେ ସେ ଭାବୁଥିଲେ ସ୍ୱରାଜ୍ୟ ଆନ୍ଦୋଳନର ଜାହାଜ ନିଶ୍ଚୟ କୂଳରେ ଲାଗିବ—ଭାରତ ସ୍ୱାଧୀନ ହେବ । ଈଶ୍ୱରଦତ୍ତ ଯୁବଶକ୍ତିକୁ ଇଂରେଜ ରାକ୍ଷସ ସବୁଦିନପାଇଁ ଦବାଇ ରଖିପାରିବେନାହିଁ । ଇଂରେଜ ସରକାର ବିରୋଧରେ ଧର୍ମଯୁଦ୍ଧରୂପକ କାର୍ଯ୍ୟକୁ ସର୍ବନିୟନ୍ତା ନିୟନ୍ତ୍ରଣ କରି ବାଟରେ ପକାଇଦେବେ । ଭାରତମାତାର ଜୟ ହେବ । ବିଜୟ ଧ୍ୱନି ଭିତରେ ସେ ଦିନେ ପୁଣି ଘରକୁ ଫେରିବେ ।

ସାଧାରଣ ଜେଲମାନଙ୍କରେ ବନ୍ଦୀମାନଙ୍କୁ ଚିଠିପତ୍ର ଆଦାନ ପ୍ରଦାନର କିଛିତ ସୁବିଧା ଦିଆଯାଏ । କର୍ତ୍ତୃପକ୍ଷଙ୍କ ଯାଞ୍ଚ ପରେ ଚିଠି ପତ୍ର ଯା' ଆସ କରେ । ଆଣ୍ଡାମାନର ବନ୍ଦୀଙ୍କ କଥା ସ୍ୱତନ୍ତ୍ର । ସେମାନଙ୍କୁ ବାହାର ଦୁନିଆଁ ସଙ୍ଗେ କୌଣସି ସମ୍ପର୍କ ରଖିବାକୁ ଦିଆଯାଏ ନାହିଁ । ଚିଠିପତ୍ର ଲେଖିବାକୁ ଅନୁମତି ମିଳିବା ତ ଦୂରର କଥା, ଖବରକାଗଜ କି ସାଧାରଣ ବହି

ସବୁ ମଧ୍ୟ ପଢ଼ିବାକୁ ଦିଆଯାଏନାହିଁ । ବନ୍ଦୀମାନଙ୍କର ଦେଶ କଥା କି ଘର କଥା କିଛି ଜାଣିବାର ଉପାୟ ନଥାଏ । ମୋଟ ଉପରେ ଧରିବାକୁ ଗଲେ ଆଜୀବନ କାରାଗାର ଭୋଗ କରୁଥିବା ବନ୍ଦୀ ମନ୍ତ୍ରୀ ଗୁଡ଼ି ପାତାଳପୁରୀ ଯମ ରାଜ୍ୟରେ ବାସକରେ ।

## ଚଉଦ

ନବକୁମାର ବହୁବର୍ଷ ଧରି ଦୁନିଆଁର କୌଣସି ଖବର ପାଉନଥିଲେ । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱମହାସମର ଲାଗିଲା । ଜର୍ମାନୀର ନାଜି ଡିକ୍ଟେଟର ହିଟଲରଙ୍କ ଯୁଦ୍ଧ ହୁଙ୍କାରରେ ମିତ୍ର ପକ୍ଷ ଥରି ଥରି ହେଲେ । ଜର୍ମାନୀର ସାର୍ଥୀଭାବରେ ଜାପାନ ପୂର୍ବ ଭୂଖଣ୍ଡରେ ଇଂରେଜ ମିତ୍ରସେନାଙ୍କୁ ଆତଙ୍କିତ କଲା । ଯୁଦ୍ଧର ପ୍ରକୋପରେ ଇଂରେଜ ମିତ୍ରସେନା ଗୃହଆଡ଼େ ପଛଘୁଞ୍ଚାଦେଲେ । ସେ ସମ୍ବାଦରେ ଆଣ୍ଡାମାନ କାରାଗାରର କର୍ତ୍ତୃପକ୍ଷ ନିଜର ପରିସ୍ଥିତି ଜଟିଳ ହୋଇ ଆସିବାର ଦେଖି ସେଠାରେ ସେମାନଙ୍କ ଭବିଷ୍ୟତ ନିରାପତ୍ତା ବିଷୟରେ ସନ୍ଦିହାନ ହେଲେ । ସେମାନେ ବ୍ରିଟିଶ ରେଡ଼ିଓ ଓ ଖବରକାଗଜର ସମ୍ବାଦକୁ ବିଶ୍ୱାସ କରି ବାରଣଥିବା ସତ୍ତ୍ୱେ ଶତ୍ରୁପକ୍ଷ ରେଡ଼ିଓ ଶୁଣିବାକୁ ଉଦ୍‌ଗ୍ରୀବ ହୋଇଉଠିଲେ । ମଝିରେ ମଝିରେ ନାନା ଗୁଜବ ପ୍ରଚାରିତ ହେଲା । ଶତ୍ରୁପକ୍ଷ ଯଦି ଆଣ୍ଡାମାନ ଦଖଲ କରିଯାଏ ତେବେ ସେମାନେ କଇଦୀମାନଙ୍କ ସଙ୍ଗେ ସମଦଶାପନ୍ନ ହେବା ସୁନିଶ୍ଚିତ ବୋଲି ଭାବି ଜେଲଖାନାର କଟକଣା ଟିକିଏ କୋହଳ କଲେ ।

ନବକୁମାରଙ୍କୁ ଅନେକ ସମୟରେ ଡାକ୍ତରଖାନା ଓ ଅନ୍ୟାନ୍ୟ କାର୍ଯ୍ୟ ସମ୍ପର୍କରେ ଜେଲର କାର୍ଯ୍ୟାଳୟକୁ ଯିବା ଆସିବା କରିବାକୁ ପଡ଼େ । ସେ ଆଗରୁ କାର୍ଯ୍ୟାଳୟ କୋଠରୀର ବାହାରୁ ବାହାରୁ ଚାଲି ଆସୁଥିଲେ, ଏଣିକି କାର୍ଯ୍ୟାଳୟ କୋଠରୀ ଭିତରେ ପଶି ଖବର କାଗଜ ପଢ଼ିବାର ଓ ରେଡ଼ିଓ ଶୁଣିବାର ସୁବିଧା ପାଇଲେ ।

ଦ୍ୱିତୀୟ ମହାସମରର ଦୈନନ୍ଦିନ ଘଟଣା ସେ ତନ୍ନ ତନ୍ନ କରି ଲକ୍ଷ୍ୟ କଲେ । ଯୁଦ୍ଧ ଖବର ଶୁଣିବାକୁ ଜେଲ କର୍ମଚାରୀ ଓ ଅନ୍ୟାନ୍ୟ ରାଜନୈତିକ ବନ୍ଦୀମାନେ ତାଙ୍କ ଚାରିପଟେ ଘେରିଯାଆନ୍ତି । ସେହି ଅବସରରେ ସେ ଅନ୍ୟ କେତେକ ରାଜନୈତିକ ବନ୍ଦୀଙ୍କ ସଙ୍ଗେ ସମ୍ପର୍କ ସ୍ଥାପନକଲେ । ସେମାନଙ୍କ ସଙ୍ଗେ ଦେଖାହେଲାବେଳେ ସୁବିଧା ଦେଖି ଭାରତର ରାଜନୈତିକ ପରିସ୍ଥିତି ବିଷୟ ମଧ୍ୟ ଆଲୋଚନା କରନ୍ତି ।

ଯୁଦ୍ଧ ଯେତିକି ଯେତିକି ଘମାଘୋଟ ଲାଗିଲା ଓ ପୂର୍ବ ଭୂଖଣ୍ଡରେ ଜାପାନ ସୈନ୍ୟଙ୍କ ବିଜୟବାର୍ତ୍ତା ଶୁଣାଗଲା, ଜେଲ କର୍ତ୍ତୃପକ୍ଷ ସେତିକି ଭୟଭୀତ ହେଲେ । ନବକୁମାର ଓ ତାଙ୍କ ବନ୍ଧୁମାନଙ୍କ ମନରେ ସ୍ୱାଧୀନ ଜୀବନର ଆଶା ପୁଣି ଥରେ ଅଙ୍କୁରିତ ହେଲା । ଜାପାନ

ଆଣ୍ଡାମାନ ଆକ୍ରମଣ ଓ ଦଖଲ କଲେ, ସେମାନେ କି କାର୍ଯ୍ୟପନ୍ଥା ଅନୁସରଣ କରିବେ ସେ ସବୁ ସେମାନଙ୍କ ମଧ୍ୟରେ ଗୋପନରେ ବିଚାର ହୋଇ ସ୍ଥିରହେଲା । ବିଶେଷରେ ଜେଲ ଉପରେ ବୋମାମାଡ଼ ହେଲାବେଳେ ଜେଲର କର୍ମଚାରୀମାନେ ଯଦି ବିଶ୍ୱାସଘାତକତା କରି ସେମାନଙ୍କୁ ବୋମା ମାଡ଼ରେ ଧ୍ୱଂସ ହେବାକୁ ଚାଲି ଛାଡ଼ି ପଳାଇ ସେଠାରୁ ଛାଡ଼ି ଚାଲିଯାଆନ୍ତି ତେବେ ସେଥିରୁ କିପରି ଭାବରେ ରକ୍ଷା ପାଇବାକୁ ହେବ ତାହାର ଉପାୟ ଚିନ୍ତା କଲେ । ଆଣ୍ଡାମାନ ଦଖଲବେଳେ, ଜେଲ କୋଠା ଛାତ ଉପରକୁ ଉଠି କିଏ ଶାନ୍ତିସୂଚକ ଧଳାକନା ଉଡ଼ାଇବ, କିଏ କିଏ ଓ୍ୱାର୍ଡ଼ରଙ୍କଠାରୁ ଚାବି ଛଡାଇବେ, ଅଫିସରମାନେ ପଳାଇବାକୁ ଉଦ୍ୟତ ହେଲାବେଳକୁ କିଏ କିଏ କାର୍ଯ୍ୟାଳୟ ଦୁଆରେ ଚାବି ପକାଇ ସେମାନଙ୍କୁ ବନ୍ଦୀ କରି ରଖି ଜାପାନ (ବିଜେତା)ଙ୍କ ହାତରେ ସମର୍ପଣ କରିବେ ସେ ସବୁ ଠିକ୍ ହେଲା ।

ବ୍ରିଟିଶ ସରକାର ଆଣ୍ଡାମାନ ଦ୍ୱୀପପୁଞ୍ଜକୁ ଗୋଟିଏ ନର୍କକୁଣ୍ଡ ପରି ବ୍ୟବହାର କରୁଥିଲେ । ସେଥିରେ ବନ୍ଦୀମାନଙ୍କୁ ନିକ୍ଷେପ କରିବା ଛଡ଼ା ତା'ର ରକ୍ଷଣାବେକ୍ଷଣ ଓ ଉନ୍ନତି ପାଇଁ କୌଣସି ପଦକ୍ଷେପ ନେଉନଥିଲେ । ତାକୁ ଜଗିବାକୁ ମଧ୍ୟ ସୈନ୍ୟବାହିନୀ ମୁତୟନ ହୋଇନଥିଲେ ।

ଦ୍ୱିତୀୟ ମହାସମର ପ୍ରଥମ ଭାଗରେ ପ୍ରାୟ ଦୁଇ ବର୍ଷ ପରେ ଜାପାନ ପୂର୍ବ ଭୂଖଣ୍ଡର ସମ୍ପୂର୍ଣ୍ଣ ବିଜୟ ଆଶାରେ ଭାରତମହାସାଗର ଓ ବଙ୍ଗୋପସାଗରର ସମସ୍ତ ଦ୍ୱୀପ ଅଧିକାରକୁ ଆଣି ସେଥିରେ ଘାଟି ନିର୍ମାଣ କରିବାକୁ ଲାଗିଲା । ଦିନେ ଗୋଟିଏ ଜାପାନୀ ଜାହାଜ ଆସି ସେ ଦ୍ୱୀପର ଚାରିପଟେ ପର୍ଯ୍ୟଟନ୍ ମାରିଲା । ମଝିରେ ମଝିରେ ବୋମା ଫିଙ୍ଗିଲା । ଜେଲ ଉପରେ ବୋମା ପଡ଼ିଲେ କାଳେ ବନ୍ଦୀମାନଙ୍କର ଜୀବନ ହାନି ହେବ ଜାଣି ଜେଲରୁ ବାହାରକୁ କାମକରିବାକୁ ଯିବାବେଳେ ତାଙ୍କପରି ଜଣେ ଦୁଇଜଣ ରାଜନୈତିକ ବନ୍ଦୀଙ୍କୁ ଘେନି ସେ ଜଙ୍ଗଲକୁ ପଳାଇଲେ । ଜଙ୍ଗଲରୁ ସନ୍ତର୍ପଣରେ ବାହାରି ସମୁଦ୍ର କୂଳରେ ଗୋଟିଏ ଦେଶୀ ଡଙ୍ଗା ସାହାଯ୍ୟରେ ଅନ୍ୟ ଗୋଟିଏ ଦ୍ୱୀପକୁ ଚାଲିଗଲେ ।

ବେଳେ ବେଳେ ଜାପାନୀ ଉଡ଼ାଜାହାଜସବୁ ସେ ଦ୍ୱୀପ ଉପରେ ଉଡ଼ି ଦ୍ୱୀପପୁଞ୍ଜର ଅବସ୍ଥା ଆକାଶରୁ ନିରୀକ୍ଷଣ କରୁଥିଲେ । ନବକୁମାର ଗୋଟିଏ ପଡ଼ିଆ ମଝିରେ ଥିବା ଉଚ୍ଚ ମୁଣ୍ଡିଆ ଉପରକୁ ଉଠି ଗୋଟିଏ ଉଡ଼ାଜାହାଜର ଦୃଷ୍ଟି ଆକର୍ଷଣ କରି ଧଳା ପତାକା ଭଳି ହାତରେ ଧରିଥିବା ବାଉଁଶବାଡ଼ି ଅଗର ଧଳା କନା ଖଣ୍ଡିକ ଉଡ଼ାଇଲେ ।

ଏପରି ଭାବରେ ଜାପାନୀଙ୍କ ସଙ୍ଗେ ସଂଯୋଗ ସ୍ଥାପନ ପରେ ସେ ଦ୍ୱୀପପୁଞ୍ଜରେ ଇଂରେଜ ପକ୍ଷର କୌଣସି ନିରାପତ୍ତା ବ୍ୟବସ୍ଥା ନାହିଁ ଓ ବୋମା ବର୍ଷଣ ନକରି ସେମାନେ ଜାହାଜରୁ ସୈନ୍ୟ ପଠାଇ ସେ ସବୁ ଅକ୍ଲେଶରେ ଦଖଲ କରି ନେଇ ଅଯଥା ପ୍ରାଣ ଓ ଧନ ହାନୀରୁ ବନ୍ଦୀ ଓ ସେଠାର ଅଧିବାସୀଙ୍କୁ ରକ୍ଷା କରିବାକୁ ଅନୁରୋଧ କଲେ ।

ତାଙ୍କ ପରାମର୍ଶରେ ଜାପାନୀ ସୈନ୍ୟବାହିନୀ ତାଙ୍କୁ ସାଙ୍ଗରେ ନେଇ ପୋର୍ଟବ୍ଲେୟାର ଭିତରକୁ ପ୍ରବେଶକଲେ । ଜେଲ କର୍ତ୍ତୃପକ୍ଷ ବିନା ରକ୍ତପାତରେ ସେମାନଙ୍କଠାରେ ଆତ୍ମସମର୍ପଣ

କଲେ । ଗୋରା ଅଫିସରମାନେ ଆଗରୁ ଚାଲିଯାଇଥିଲେ । ଭାରତୀୟ କର୍ମଚାରୀମାନେ ବନ୍ଦୀହେଲେ । ସେମାନଙ୍କୁ କେତେ କାଳ ବନ୍ଦୀକରି ରଖିବା ପରେ ନବକୁମାର ପ୍ରଭୃତିଙ୍କ ପରାମର୍ଶରେ ସେମାନଙ୍କୁ ଖଲାସ କରିଦିଆଗଲା । କଳାପାଣି ବା ଆଣ୍ଡାମାନ ଜେଲର ସମସ୍ତ ବନ୍ଦୀ ଖଲାସ ହେଲେ । ଜାପାନୀମାନେ ସେଠାରେ ଗୋଟିଏ ସଖି କରେଇ ସରକାର ଗଢ଼ିବାପାଇଁ ବିପ୍ଳବୀମାନଙ୍କୁ ଅନୁରୋଧକଲେ । କିନ୍ତୁ ଜାପାନୀମାନଙ୍କ ଅଧୀନରେ ସରକାର ଗଢ଼ିବା ପାଇଁ ସେମାନେ ନାରାଜହେଲେ ।

ବିଖ୍ୟାତ ଟଙ୍କ ମର୍ଡ଼ର କେଶରେ ଆଜୀବନ ଦ୍ୱୀପାନ୍ତର ଭୋଗ କରୁଥିବା ପାଗଳ ନାରାୟଣ ସ୍ୱାମୀ ସେଠାରେ ଗଭର୍ଣ୍ଣର ରୂପେ ଦାୟିତ୍ୱ ଗ୍ରହଣ କଲେ । ନାରାୟଣ ସ୍ୱାମୀଙ୍କ ଘର ଗଞ୍ଜାମର ବ୍ରହ୍ମପୁରରେ । ସେ ଉଚ୍ଚବଂଶର ପିଠାପୁର ରାଜବଂଶର ବନ୍ଧୁବାନ୍ଧବ । ସେ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ଭାବରେ ଅବୈତନିକ ବେଞ୍ଚ ମାଜିଷ୍ଟ୍ରେଟ ଭାବରେ ସମ୍ମାନ ଲାଭକରି ଆଗରୁ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ; କିନ୍ତୁ ଘଟଣା ଚକ୍ରରେ ପଡ଼ି ଟଙ୍କ ମର୍ଡ଼ର କେଶରେ ସଂପୃକ୍ତ ହୋଇ ଆଜୀବନ କାରାଦଣ୍ଡ ପାଇଥିଲେ ।

ନବକୁମାର ପ୍ରଭୃତି ସରକାରରେ ନରହିଲେ ମଧ୍ୟ ଗୋଟିଏ ସ୍ୱାଧୀନ ସମିତି ଗଢ଼ି ଦେଶ ବିଦେଶର ହାଲଚାଲ ସଂଗ୍ରହ କରି ସ୍ୱାଧୀନତା ବିପ୍ଳବ ସଙ୍ଗେ ରେଡ଼ିଓ ପ୍ରଭୃତି ଦ୍ୱାରା ସମ୍ପର୍କ ସ୍ଥାପନ କଲେ । ଏହି ସମିତିଟି ପରେ ଆଜାଦ ହିନ୍ଦ୍ ସଙ୍ଘର ଏକ ଶାଖାରେ ପରିଣତ ହୋଇଥିଲା । ଜାପାନ ସୁଭାଷଙ୍କ ଆଜାଦ ହିନ୍ଦ୍ ସରକାରକୁ ମିତ୍ର ସରକାର ବୋଲି ଘୋଷଣା କରିବା ପରେ ଆଣ୍ଡାମାନ ଦ୍ୱୀପପୁଞ୍ଜକୁ ହିନ୍ଦ୍ ସରକାରଙ୍କ ହାତକୁ ହସ୍ତାନ୍ତରକଲେ । ହିନ୍ଦ୍ ସରକାର କର୍ଣ୍ଣେଲ ଚାଟାର୍ଜିଙ୍କୁ କମିଶନର ବା ଶାସନକର୍ତ୍ତା ଦାୟିତ୍ୱ ଅର୍ପଣକରି ସେଠାକୁ ପଠାଇଥିଲେ । ସେଠାରେ ସ୍ୱାଧୀନ ଭାରତ ସରକାରଙ୍କ ଜାତୀୟପତାକା ଉଡ଼ିଲା । ସେତେବେଳେ ଦେଶ ବିଦେଶର ସମ୍ବାଦ ମିଳିବା ସହଜ ହେଲା । ଭାରତୀୟମାନଙ୍କ ମନରେ ବିଦ୍ରୋହ ନିଆଁ ଜୁଳୁଥିବାର ସମ୍ବାଦ ପାଇ ନବକୁମାରଙ୍କ ମନରେ ଆନନ୍ଦ ଜାତ ହେଲା ।

ଓଡ଼ିଶାର ଖବର ନେବାରେ ସେଠାରେ ମଧ୍ୟ ଗୁପ୍ତ ବୈପ୍ଳବିକ ଆନ୍ଦୋଳନ ଚାଲିଥିବାର ଖବର ପାଇଥିଲେ । ସୁଭାଷଙ୍କ ଫରୱାର୍ଡ଼ ବ୍ଲକରେ ଓଡ଼ିଶାର ବହୁ ଦେଶପ୍ରେମୀ କଂଗ୍ରେସ କର୍ମୀ ଯୋଗଦେଇ ଗୋପନରେ କାର୍ଯ୍ୟ କରୁଥିଲେ । ସୁଭାଷଙ୍କ ପରମବନ୍ଧୁ ପଣ୍ଡିତ ନୀଳକଣ୍ଠ ଓଡ଼ିଶା ପ୍ରଦେଶର ସଭାପତି ଭାବରେ କଂଗ୍ରେସରୁ ବିତାଡ଼ିତ ସଭାପତି ସୁଭାଷଙ୍କୁ ରାଜକୀୟ ଅଭ୍ୟର୍ଥନା ଦେଇ କଂଗ୍ରେସର ତୁଙ୍ଗ ନେତାମାନଙ୍କର ଚକ୍ଷୁଶୂଳ ହୋଇ କଂଗ୍ରେସରୁ ଓହରି ଯାଇଥିଲେ । ସେ ସୁଭାଷଙ୍କ ପୂର୍ବ ନିର୍ଦ୍ଦେଶ ଅନୁସାରେ ସରକାରୀ କଳକୁ ହାତରେ ରଖିବା ପାଇଁ ତାଙ୍କର ସହକର୍ମୀ ଗୋଦାବରୀଶଙ୍କୁ ଧରି ବହୁ ବାଧାବିଘ୍ନସତ୍ତ୍ୱେ ଓଡ଼ିଶାରେ ମିଳିତ ମନ୍ତ୍ରୀମଣ୍ଡଳଟିଏ ଗଢ଼ାଇଥିଲେ । ଓଡ଼ିଶାରେ 'ଜାତୀୟ ଯୁବ ସାମ୍ମୁଖ୍ୟ' ଗଢ଼ି ସରକାରଙ୍କୁ ସାହାଯ୍ୟ କରିବା ବାହାନାରେ ଭାରତୀୟ ସେନାବାହିନୀରେ ଜାତୀୟବାଦୀ ଓଡ଼ିଆ

ଯୁବକମାନଙ୍କୁ ପୁରାଇବା ପାଇଁ ଚେଷ୍ଟା କରି ସୁଭାଷ ବାହିନୀର ଆଗମନକୁ ଅପେକ୍ଷା କରି ରହିଥିଲେ ।

ତାଙ୍କର କାର୍ଯ୍ୟକଳାପକୁ ଇଂରେଜ ସରକାର ସନ୍ଦେହ ଦୃଷ୍ଟିରେ ଦେଖିବା ସଙ୍ଗେ ସଙ୍ଗେ ତାଙ୍କର ଘର ଖାନତଲାସ କରି ଅନେକ ଆପତ୍ତିଜନକ ପ୍ରଚାରପତ୍ର ଜବତ କରିଥିଲେ । ସେଥିରୁ ଗୋଟିଏ ପ୍ରଚାର ପତ୍ରରେ "Subash guards will march through the centers of British Imperialism" ବା ସୁଭାଷ ସେନା ବ୍ରିଟିଶ ରାଜତନ୍ତ୍ରର ସ୍ନାୟୁକେନ୍ଦ୍ର ସବୁ ଭେଦକରି ମାଡ଼ିଚାଲିଯିବେ ବୋଲି ଲେଖାଥିଲା ।

ସେ ସମ୍ପର୍କରେ ସରକାର ତାଙ୍କ ଆତ୍ମଜକୁ ବନ୍ଦୀକରି ମୋକଦ୍ଦମା ଚଳାଇବା ସତ୍ତ୍ୱେ ତାଙ୍କୁ ଜବତ କରିପାରି ନଥିଲେ । ଚଳନ୍ତା କୁଳ ପାଲୁରଠାରେ ପ୍ରଧାନ ଯୋଗାଯୋଗ କେନ୍ଦ୍ର ଗୁପ୍ତରେ କାର୍ଯ୍ୟ କରୁଥିଲା । ମିଳିତ ମନ୍ତ୍ରୀମଣ୍ଡଳରେ ସୁଭାଷପନ୍ଥୀ କଂଗ୍ରେସୀମାନେ ବଡ଼ ଅଂଶିଦାର ଥିବାରୁ ଦେଶୀ ସରକାରୀ ଲୋକେ ସେ ଖବର ଇଂରେଜଙ୍କୁ ଜଣାଉ-ନଥିଲେ । ସୁଭାଷ ସେନା ପାରାଚ୍ୟୁଟ ଯୋଗେ ସେଠାରେ ଓହ୍ଲାଇ ପାରୁଥିଲେ । ପଣ୍ଡିତ ନୀଳକଣ୍ଠଙ୍କର ଜଣେ ପ୍ରଧାନ ରାଜନୈତିକ ଶିଷ୍ୟ ଦିବାକର ପଟ୍ଟନାୟକ ଏମ୍. ଏଲ୍. ଏ.ଙ୍କ ନେତୃତ୍ୱରେ ଗଞ୍ଜାମର ବ୍ରହ୍ମପୁର ଗୃହଲକ୍ଷ୍ମୀ ରେଲ୍‌ୱେ ଧର୍ମଶାଳା ଓ ଅନ୍ୟାନ୍ୟ ସ୍ଥାନରେ ରେଡ଼ିଓ ଟ୍ରାନ୍‌ସମିଟର ଓ ରିସିଭର୍ ପ୍ରଭୃତି ଦ୍ୱାରା ବାହାର ଜଗତ ଓ ଇଂରେଜଙ୍କ ଶତ୍ରୁପକ୍ଷ ସହିତ ସଂଯୋଗ ସ୍ଥାପନ କରାଯାଇଥିଲା । ଭାରତର ବଙ୍ଗଳା ଓ ଅନ୍ୟ ସ୍ଥାନମାନଙ୍କରେ ଥିବା ଗୁପ୍ତ କେନ୍ଦ୍ରମାନଙ୍କ ସହିତ ସମ୍ପର୍କ ରଖି ଗୁପ୍ତ ସମ୍ବାଦସବୁ ଆଦାନ ପ୍ରଦାନ କରାଯାଉଥିଲା । ଏପରିକି ୧୯୪୨ ଆନ୍ଦୋଳନବେଳେ ଓଡ଼ିଶାର ପୂର୍ବତନ କଂଗ୍ରେସ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶଙ୍କ ଗିରଫ ସମ୍ବାଦ ସରକାର ଲୋକଙ୍କୁ ଜଣାଇବା ପୂର୍ବରୁ ଜାପାନପନ୍ଥୀ ବିଦେଶୀ ରେଡ଼ିଓରୁ ଭାରତରେ ପ୍ରଚାର କରାଯାଇଥିଲା । ଗଞ୍ଜାମକୁ ବିଦେଶରୁ ପ୍ରଚାରପତ୍ର ସଙ୍ଗେ ଆସୁଥିବା ସୈନିକ ବ୍ୟାଜସବୁ ସୁଭାଷ ସେନା ଗଠନ ପାଇଁ ଗୁପ୍ତରେ ବିପ୍ଳବୀ କର୍ମୀମାନଙ୍କୁ ଦିଆଯାଉଥିଲା । କମାଣ୍ଡରଠାରୁ ସାଧାରଣ ସୈନିକ ପରିଧାନ କରିବାପାଇଁ ଚାରି ପ୍ରକାର ବ୍ୟାଜ କର୍ମୀମାନେ ନିଜ ଯୋଗ୍ୟତା ଅନୁସାରେ ନିଜ ପୋଷାକରେ ଗୁପ୍ତ ଭାବରେ ପିନ୍ଧି ନିଜ ନିଜ ଭିତରେ ନିଜ ପାହ୍ୟା ଅନୁସାରେ ଅଭିବାଦନ ଆଦାନ ପ୍ରଦାନ କରୁଥିଲେ ।

ଓଡ଼ିଶାର ଏପରି କେନ୍ଦ୍ର ସବୁର ଖବର ଓଡ଼ିଶାର ଗୋରା ଗଭର୍ଣ୍ଣର ଲୁଇସ ସାହେବଙ୍କ କର୍ଣ୍ଣଗୋଚର ହେବାରୁ ସେ କେନ୍ଦ୍ରରୁ ଗୋଇନ୍ଦା ମଗାଇ ଜୋରସୋର୍‌ରେ ଅନୁସନ୍ଧାନ କଲାବେଳେ ପାଲୁରଠାରେ ପାରାଚ୍ୟୁଟରୁ ଓହ୍ଲାଉଥିବା ଦୁଇଜଣ ବିଦେଶୀ ସୁଭାଷ ସେନାଙ୍କୁ ବନ୍ଦୀକରି ପ୍ରାଣଦଣ୍ଡ ଦେଇଥିଲେ । ସେ କେନ୍ଦ୍ରର ଦାୟିତ୍ୱରେ ଥିବା ଦିବାକରଙ୍କ ଦୁଇଜଣ ସହକର୍ମୀ ଶ୍ରୀ ସତ୍ୟବାଦୀ ପ୍ରଧାନ ଓ ପୂର୍ଣ୍ଣଚନ୍ଦ୍ର ବେହେରା କିଛିକାଳ ପାଇଁ ଆତ୍ମଗୋପନ କରିଥିଲେ । ଦିବାକର ତାଙ୍କର ଜଣେ ସହକର୍ମୀଙ୍କ ସହିତ ବଙ୍ଗଳା ଯାତ୍ରାରେ ଯାଇଥିବାବେଳେ କଲିକତାରେ ଅଟକବନ୍ଦୀ ହୋଇଥିଲେ ମଧ୍ୟ ସେ ବିଧାନସଭା ସଭ୍ୟ ଓ

ମିଳିତ ମନ୍ତ୍ରୀମଣ୍ଡଳ ସରକାରଙ୍କୁ ସମର୍ଥନ କରୁଥିବା ବାହାନାରେ ଗୃପ ପଡ଼ିବାରୁ ସେ ସେଠାରୁ ମୁକୁଳି ଓଡ଼ିଶାକୁ ଚାଲିଆସିପାରିଥିଲେ; କିନ୍ତୁ ତାଙ୍କ ସହକର୍ମୀ ବହୁକାଳ ପର୍ଯ୍ୟନ୍ତ ବଙ୍ଗଳାରେ ବନ୍ଦୀ ଜୀବନ ଯାପନ କରିଥିଲେ । ଓଡ଼ିଶାର ମିଳିତ ସରକାରଙ୍କ ସୁପାରିଶରେ ସେ ସହକର୍ମୀଙ୍କ ସ୍ତ୍ରୀଙ୍କୁ ଭାରତ ସରକାର ଭତ୍ତା ଦେବାକୁ ବାଧ୍ୟ ହୋଇଥିଲେ ।

୧୯୪୬ ଅଗଷ୍ଟ ମାସରେ ବିଦେଶରେ ଥିବା ଭାରତୀୟ ସ୍ୱାଧୀନ ସେନାର ୩ ଜଣ ପ୍ରତିନିଧି ସୁଭାଷ ସେନାର ଗଠନ ପାଇଁ ସମୁଦ୍ରବାଟେ ଜାହାଜରେ ଆସି ପୁରୀ ସମୁଦ୍ର କୂଳେ ଓହ୍ଲାଇବା ପରେ ପୂର୍ବରେ ଗୋରା କନେଷ୍ଟବଲର ସାହେବ ଆଇ. ଜି. ଆର ଲିଜଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ସେମାନଙ୍କ ଭିତରେ ସୁଭାଷଙ୍କର ଜଣେ ସମ୍ପର୍କୀୟ ମଧ୍ୟ ଥିଲେ । ସେମାନଙ୍କ ଭିତରୁ ଜଣେ ଇଂରେଜଙ୍କ ଦ୍ୱାରା ନିହତ ହୋଇଥିଲେ ।

ଓଡ଼ିଶା ମିଳିତ ମନ୍ତ୍ରୀମଣ୍ଡଳର କେତେକ ନେତାଙ୍କ ସହିତ ସେମାନଙ୍କର ସମ୍ପର୍କ ଥିବାର ସୂଚନା ପାଇ ତତ୍କାଳୀନ ପୋଲିସ ଆଇ. ଜି ପର୍କିନ ସାହେବଙ୍କ ତଥ୍ୟ ଉପରେ ଓଡ଼ିଶାର ଗୋରା ଲାଟ ଲୁଇସ ସାହେବ ଭାରତ ସରକାରଙ୍କ ନିକଟକୁ ଗୁପ୍ତ ଚିଠିଦ୍ୱାରା ଆବେଦନ କରି ସେ ନେତାମାନଙ୍କୁ ବନ୍ଦୀ କରିବାକୁ ସୁପାରିଶ କରିଥିଲେ ଓ ସେମାନଙ୍କ ସମ୍ପର୍କୀୟ କେତେକ ଯୁବନେତାଙ୍କୁ ବିଭିନ୍ନ ସ୍ଥାନରେ ଗିରଫ କରି କାରାରୁଦ୍ଧ କରିଥିଲେ । ଭାରତର ବିପ୍ଳବୀମାନଙ୍କ ମସିହାର ବିଦ୍ରୋହାତ୍ମକ ଅବସ୍ଥାରେ ବିଚଳିତ ହୋଇ ବ୍ରିଟିଶ ସରକାର, ସରକାରଙ୍କୁ ଉପରେ ଉପରେ ସାହାଯ୍ୟ କରିବା ବାହାନା ଦେଖାଉଥିବା ଜାତୀୟତାବାଦୀମାନଙ୍କ ପ୍ରତି ପ୍ରକାଶ୍ୟରେ କୌଣସି କଠୋର ପଦକ୍ଷେପ ନେଇପାରୁନଥିଲେ ।

ଓଡ଼ିଶାର ମିଳିତ ମନ୍ତ୍ରୀମଣ୍ଡଳଟି ଜମିଦାର ପାରଳାଖେମୁଣ୍ଡି ମହାରାଜା ଓ ମୁସଲିମଲିଗ ପ୍ରତିନିଧି ଶୋଭନ ଖାଁଙ୍କୁ ନେଇ ଗଠିତ ହୋଇଥିଲେ ମଧ୍ୟ ସୁଭାଷପନ୍ଥୀ ଜାତୀୟତାବାଦୀ ଗୋଦାବରୀଶ ମନ୍ତ୍ରୀମଣ୍ଡଳର ମୂଳପିଣ୍ଡ ପରି ରହିଥିଲେ ଓ ମନ୍ତ୍ରୀମଣ୍ଡଳଦ୍ୱାରା ବିଶ୍ୱବିଦ୍ୟାଳୟ, ମେଡ଼ିକାଲ କଲେଜ ପ୍ରଭୃତି ସ୍ଥାପନ କରିବା ପରି ଲୋକହିତକର ପଦକ୍ଷେପ ନେବାରେ ଲୋକପ୍ରିୟ ହୋଇଉଠିଥିଲେ ।

ବଙ୍ଗଳାରେ ସୁଭାଷଙ୍କ କଳ୍ପିତ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ାହେବା ପୂର୍ବରୁ ଶରତ ବୋଷଙ୍କୁ କାରାରୁଦ୍ଧ କରାଯାଇଥିବାରୁ ବଙ୍ଗଳାରେ ଅବସ୍ଥା ଭୀଷଣ ଆକାର ଧାରଣ କରିଥିଲା । ତେଣୁ ଓଡ଼ିଶାର ମିଳିତ ମନ୍ତ୍ରୀମଣ୍ଡଳକୁ ଇସ୍ତଫା କରିବାକୁ ସାହସ ନକରି ସରକାର କେବଳ ସେ ମନ୍ତ୍ରୀମଣ୍ଡଳର ଜାତୀୟତାବାଦୀମାନଙ୍କ ଚାଲିଚଳଣ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବାର ଯୋଜନା କରି ନୀରବ ରହିଥିଲେ ।

ବିପ୍ଳବୀଙ୍କ ଆନ୍ଦୋଳନରେ ସାରାଦେଶ ଉତ୍କ୍ଷିପ୍ତ ହୋଇଉଠିଥିବା ଓ ସରକାରଙ୍କ ସମସ୍ତ ଦମନ ସତ୍ତ୍ୱେ ଆନ୍ଦୋଳନ ପ୍ରଶମିତ ହେଉନଥିବା ଖବର ପୃଥିବୀସାରା ଚହଳ ପକାଇ ଦେଇଥିଲା ଓ ନବକୁମାରଙ୍କ ପରି ବିପ୍ଳବୀଙ୍କ ମନରେ ସେସବୁ ଆଶା ସଞ୍ଚାର କରିଥିଲା ।

ନବକୁମାର ନିଜ ଦେଶର ଖବର ରଖିବା ସଙ୍ଗେ ସଙ୍ଗେ ବିଦେଶରେ ଇଂରେଜଙ୍କ ପରିସ୍ଥିତି, ଜନଜାଗରଣ ଓ ବିଦେଶରେ ଆରମ୍ଭ ହୋଇଥିବା ଜାତୀୟ ଆନ୍ଦୋଳନ ଓ ବିପ୍ଳବର ଇତିହାସ ମଧ୍ୟ ଚିକ୍କଣଚିକ୍କଣ ଅନୁଧ୍ୟାନ କରୁଥିଲେ ।

୧୯୪୨ ଫେବୃୟାରୀ ୧୫ ତାରିଖ ଦିନ ସିଙ୍ଗାପୁରର ପତନ ଘଟିଲା । ଜାପାନୀ ସୈନ୍ୟଙ୍କଦ୍ୱାରା ପରାସ୍ତ ହୋଇ ବ୍ରିଟିଶ ସୈନ୍ୟବାହିନୀ ଓ ସେଠାର ଇଂରେଜ ସରକାରଙ୍କ ଗୋରା ଅଫିସରମାନେ ମାଳୟ ଛାଡ଼ି ପ୍ରାଣ ବିକଳରେ ପଳାଇଗଲେ । ସ୍ୱାର୍ଥପର ଇଂରେଜମାନେ ଗୋରା ସୈନ୍ୟ ଓ ଅନ୍ୟ ଗୋରା ଲୋକଙ୍କର ସେ ସ୍ଥାନ ଛାଡ଼ିଯିବା ପାଇଁ ଆଗରୁ ସମସ୍ତ ବନ୍ଦୋବସ୍ତ କରିଥିଲେ ମଧ୍ୟ ସେମାନଙ୍କ ଅଧୀନରେ ଯୁଦ୍ଧ କରୁଥିବା ଭାରତୀୟ ଡିଭିଜନ-ମାନଙ୍କର ହଜାର ହଜାର ସୈନ୍ୟଙ୍କ ପାଇଁ କୌଣସି ବ୍ୟବସ୍ଥା କରିନଥିଲେ । ଭାରତୀୟ ସୈନ୍ୟଙ୍କୁ କିଛି ନ ଜଣାଇ ସେମାନଙ୍କୁ ନିଜ ନିଜର ଅନିଶ୍ଚିତ ଭାଗ୍ୟ ଭୋଗିବାକୁ ଛାଡ଼ିଦେଇ ଶେଷ ମୁହୂର୍ତ୍ତରେ ଗୋରା ସୈନ୍ୟମାନେ ଚାଲିଯାଇଥିଲେ ।

ସିଙ୍ଗାପୁର ଦଖଲ ବେଳେ ସେ ଅଞ୍ଚଳର ଲକ୍ଷ ଲକ୍ଷ ଭାରତୀୟ ସୈନ୍ୟ ଜାପାନ ସୈନ୍ୟଙ୍କ ନିକଟରେ ବାଧ୍ୟହୋଇ ଆତ୍ମସମର୍ପଣ କଲେ । ସେମାନେ ଇଂରେଜଙ୍କ ବିଶ୍ୱସ୍ତ ଭୃତ୍ୟ ରୂପେ ଆତ୍ମବଳି ଦେଉଥିଲାବେଳେ ଇଂରେଜଙ୍କର ଏପରି କୃତଘ୍ନ ବ୍ୟବହାରରେ ସେମାନଙ୍କ ବିଶ୍ୱାସ ଉପରେ କୁଠାରାଘାତ କରିଥିଲା । ସେମାନେ ସମସ୍ତେ ଇଂରେଜ ବିଦ୍ୱେଷୀ ହୋଇ ପଡ଼ିଥିଲେ । ଜାପାନୀ ବିଜେତାମାନେ ଏସବୁ ସୈନ୍ୟ ଓ ସେଠାର ପ୍ରବାସୀ ଭାରତୀୟ-ମାନଙ୍କର ଇଂରେଜ ବିରୋଧୀ ମନୋଭାବକୁ ନିଜ ସ୍ୱାର୍ଥରେ ଇଂରେଜ ବିରୁଦ୍ଧରେ ଲଗାଇବା ପାଇଁ ଯୋଜନା ପ୍ରସ୍ତୁତ କଲେ । ସେହି ଉଦ୍ଦେଶ୍ୟରେ ୧୯୪୨ ଫେବୃୟାରୀ ୧୭ ତାରିଖରେ ଜାପାନ ସୈନ୍ୟବାହିନୀର କର୍ମକର୍ତ୍ତା ମେଜର ଫୁଜିୱାରା ଭାରତୀୟ ସୈନ୍ୟମାନଙ୍କ ଭିତରୁ କେତେକଙ୍କୁ ଓ ପ୍ରବାସୀ ଭାରତୀୟମାନଙ୍କ ଭିତରୁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଆମନ୍ତ୍ରଣ କରି ଏକ ମିଳନ କରାଇଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଜାପାନର ଭଡ଼ାଟିଆ ହିସାବରେ ଗୋଟିଏ ଭାରତୀୟ ବାହିନୀ ଗଢ଼ିବା । ସେହି ଭାରତୀୟ ସୈନ୍ୟମାନେ ତାଙ୍କର ଆଦେଶରେ ଚାଳିତ ହୋଇ ଆକ୍ରମଣକାରୀ ଜାପାନ ସୈନ୍ୟଙ୍କ ଅଧୀନରେ ଭାରତରେ ପଶିବେ ଓ ଭାରତରେ ଜାପାନ ସାମ୍ରାଜ୍ୟ ବିସ୍ତାର କରିବେ ।

ଫୁଜିଆରା ସେ ମିଳନରେ, ଭାରତୀୟ ପ୍ରତିନିଧିମାନଙ୍କୁ ବୁଝାଇଲେ ଯେ ଭାରତୀୟ-ମାନେ ଇଂରେଜଙ୍କ ପ୍ରଜା । ତେଣୁ ଅଧିକୃତ ଅଞ୍ଚଳର ପ୍ରଜା ପରି ସେମାନେ ବର୍ତ୍ତମାନ ଜାପାନର ଆନୁଗତ୍ୟ ସ୍ୱୀକାର କରିବା ଉଚିତ ଓ ଜାପାନ ସେମାନଙ୍କୁ ସେହିପରି ବ୍ୟବହାର ଦେଖାଇବା ବିଧେୟ । ବର୍ତ୍ତମାନ ଇଂରେଜ ଶକ୍ତି ଅତ୍ୟନ୍ତ ଦୁର୍ବଳ ଓ ଦିନକୁ ଦିନ ବେଶି ଦୁର୍ବଳ ହୋଇପଡ଼ୁଛି ଓ ପଡ଼ିବ । ସୁତରାଂ ଇଂରେଜଙ୍କ ଉପରେ ମାଡ଼ ଚଢ଼ାଇବାର ସୁବର୍ଣ୍ଣ ସୁଯୋଗ ଛାଡ଼ିବାର ନୁହେଁ ।

ଭାରତୀୟମାନେ ବର୍ତ୍ତମାନ ଇଂରେଜର ପୂର୍ବତନ ପ୍ରଜା ହେଲେ ମଧ୍ୟ, ସେମାନେ ଯଦି ସ୍ୱତନ୍ତ୍ର ଭାବରେ ଜାପାନ ସୈନ୍ୟଙ୍କ ଅଧୀନରେ ଗୋଟିଏ ମୁକ୍ତିବାହିନୀ ଗଢ଼ିବେ, ତେବେ ସେମାନଙ୍କ ମୁକ୍ତି ଉଦ୍ୟମରେ ଜାପାନ ସରକାର ସାହାଯ୍ୟ କରିବାକୁ ପ୍ରସ୍ତୁତ । ଫୁଜିୱାରାଙ୍କ କଥାରୁ ଭାରତୀୟମାନେ ସାମ୍ରାଜ୍ୟବାଦୀ ଜାପାନର ମନୋଭାବ ଭଲଭାବରେ ଧରିନେଲେ । ସେମାନେ ବ୍ରିଟିଶ ସାମ୍ରାଜ୍ୟବାଦ ତଳେ ନିଷ୍ପେଷିତ ହୋଇ ପରାଧୀନତାର କଷ୍ଟ ଅଙ୍ଗେ ନିଭେଇଛନ୍ତି । ପୁଣି ମହାରଗରୁ ଯାଇ କାନ୍ତାରରେ ପଡ଼ିବାଭଳି ଜାପାନ ସାମ୍ରାଜ୍ୟବାଦକୁ ନିଜ ମୁଣ୍ଡ ଉପରେ ଲଦିଦେବା ପାଇଁ ରାଜିହେଲେ ନାହିଁ । ଫୁଜିୱାରାଙ୍କ ଆବେଦନ ପ୍ରତି କର୍ଣ୍ଣପାତ ନକଲେ ମଧ୍ୟ, ତାଙ୍କ କବଳରୁ କୌଣସିମତେ ଖସିପାରିବାକୁ ସେ ବିଷୟରେ ସେମାନେ ଗଭୀର ଭାବରେ ଚିନ୍ତାକରି ଆବଶ୍ୟକ ହେଲେ ଫୁଜିୱାରାଙ୍କୁ ଆସି ସାକ୍ଷାତ କରିବେ କହି ଚାଲିଆସିଲେ ।

ଏହି ସନ୍ତ୍ରସନ୍ଧିବେଳେ ଜାପାନରେ ପ୍ରଥମ ମହାସମର ସମୟରୁ ଆତ୍ମଗୋପନ କରି ରହିଥିବା ମହାବିପ୍ଳବୀ ରାସବିହାରୀ ବୋଷ ପୂର୍ବଏସିଆର ଜାପାନ ଅଧିକୃତ ଅଞ୍ଚଳରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ପ୍ରଧାନ ଅଂଶ ଗ୍ରହଣ କଲେ । ବିପ୍ଳବୀ ରାସବିହାରୀ ଓ ତାଙ୍କ ସହକର୍ମୀମାନେ ୧୯୧୨ ମସିହାରେ ଦିଲ୍ଲୀର ତତ୍କାଳୀନ ବଡ଼ଲାଟ ଲର୍ଡ଼ ହାର୍ଡିଞ୍ଜଙ୍କ ଉପରେ ବୋମା ପକାଇଥିଲେ । ସେହି ଘଟଣା ପରେ ଆଉ ବହୁ ଷଡ଼ଯନ୍ତ୍ର ଓ ବୋମା ନିକ୍ଷେପ ମୋକଦ୍ଦମାରେ ସରକାର ତାଙ୍କୁ ସମ୍ପୃକ୍ତ କରିଥିଲେ । ୧୯୧୪-୧୫ ମସିହାରେ ତାଙ୍କର ଦୁଇଜଣ ସହକର୍ମୀ ଶ୍ରୀ ଅବୋଧ ବିହାରୀଲାଲ ଓ ମାଷ୍ଟର ଅମିର ଚାନ୍ଦ ଦିଲ୍ଲୀ ଷଡ଼ଯନ୍ତ୍ର ମୋକଦ୍ଦମାରେ ଦଣ୍ଡିତ ହୋଇ ଫାଶୀଖୁଣ୍ଟରେ ଝୁଲିଥିଲେ । ସରକାର ରାସବିହାରୀଙ୍କୁ ଧରିନପାରି ତାଙ୍କୁ ଧରିଦେଲେ ବାରହଜାର ଟଙ୍କା ପୁରସ୍କାର ମିଳିବ ବୋଲି ଘୋଷଣା କରି ଭାରତର ଚାରିଆଡ଼େ ତାଙ୍କ ଛବି ସହିତ ଘୋଷଣାଟି ପ୍ରଚାର କରିଥିଲେ । ରାସବିହାରୀ ସେ ଘୋଷଣାକୁ ଖାତିର ନକରି ବାରାଣସୀ ଲକ୍ଷ୍ନୌରୁ ବିପ୍ଳବାତ୍ମକ କାର୍ଯ୍ୟ ପରିଚାଳନା କରିଥିଲେ ।

ଶତଚେଷ୍ଟା ସତ୍ତ୍ୱେ ଇଂରେଜ ସରକାର ତାଙ୍କୁ ଧରିପାରିଲେ ନାହିଁ । ଭାରତରେ ସମୂହ ବିପ୍ଳବ ପାଇଁ ଅସ୍ତ୍ର ଶସ୍ତ୍ର ଯୋଗାଡ଼ କରିବାକୁ, ପ୍ରଥମ ମହାସମରବେଳେ ଇଂରେଜମାନଙ୍କ ଶତ୍ରୁପକ୍ଷର ସାହାଯ୍ୟ ଆଶାକରି ସେ ଗୋପନରେ ଭାରତ ଛାଡ଼ିଲେ । ଜାପାନରେ ପହଞ୍ଚି ସେ ଦେଶର ଲୋକଙ୍କ ମନରେ ଭାରତର ବିପ୍ଳବ ପ୍ରତି ଆଗ୍ରହ ସୃଷ୍ଟିକରିବାକୁ ଚେଷ୍ଟା କଲେ । ଚୀନରୁ ଭାରତକୁ ଅସ୍ତ୍ର ଶସ୍ତ୍ର ପଠାଇଲେ; କିନ୍ତୁ ସେ ଜାହାଜର ସନ୍ଧାନ ପାଇ ବ୍ରିଟିଶ ସରକାର ସେଗୁଡ଼ିକୁ ବାଜ୍ୟାପ୍ତ କରିନେଲେ ।

ପ୍ରଥମ ମହାସମରବେଳେ ଜାପାନ ନିରପେକ୍ଷ ରାଷ୍ଟ୍ର ହୋଇଥିବାରୁ ବ୍ରିଟିଶ ସରକାରଙ୍କ ଅନୁରୋଧକ୍ରମେ ଜାପାନୀ ସରକାର ପାଞ୍ଚଦିନ ଭିତରେ ଜାପାନ ଅଧିକୃତ ଚୀନର ସାଙ୍ଘାଇ ସହର ଛାଡ଼ିବାକୁ ତାଙ୍କୁ ବାଧ୍ୟକଲେ । ତା'ପରେ ରାସବିହାରୀ ଆଠବର୍ଷ କାଳ

ଆତ୍ମଗୋପନ କରି ରହିଲେ । ପରେ ସେ ଜାପାନରେ ଭାରତର ସ୍ୱାଧୀନତା ଲିଗ୍ ନାମରେ ଏକ ଅନୁଷ୍ଠାନ ଗଢ଼ି ତା'ର ପରିଚାଳନା କଲେ ।

ରାସବିହାରୀ ଜାପାନୀ ଭାଷାରେ ଭାରତର ଦୁର୍ଗତି ବିଷୟରେ ବହୁପୁସ୍ତକ ଲେଖି ପ୍ରଚାର କଲେ ଓ ଜାପାନୀ ଭାଷାରେ ଖଣ୍ଡିଏ ଖବରକାଗଜ ମଧ୍ୟ ପ୍ରକାଶ କଲେ । ସେ କାଗଜରେ ଭାରତ ବିଷୟରେ ବିଭିନ୍ନ ତଥ୍ୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଜାପାନୀ ଖବର-କାଗଜମାନଙ୍କରେ ବହୁ ପ୍ରବନ୍ଧ ଲେଖୁଥିଲେ । ଭାରତୀୟ ଜାତୀୟତା ଓ ସଂସ୍କୃତିର ପ୍ରଚାର ପାଇଁ ବୁଲି ବୁଲି ବକ୍ତୃତା ଦେଉଥିଲେ ଓ ମହାସମର ପୂର୍ବରୁ ଜାପାନ ରାଜଧାନୀ ଟୋକିଓରେ ଗୋଟିଏ ଶିବମନ୍ଦିର ପ୍ରତିଷ୍ଠା କରିଥିଲେ ।

ଭାରତରେ ଇଂରେଜ ସରକାରଙ୍କ ରାଜଦ୍ରୋହ କମିଟି, ରାସବିହାରୀ ଭାରତ ଫେରିଲେ ତାଙ୍କୁ ବନ୍ଦୀକରିବାକୁ ସୁପାରିଶ କରିଥିଲେ । ଭାରତକୁ ସ୍ୱାଧୀନ ନ କଲେ ଜୀବଦ୍ଦଶାରେ ରାସବିହାରୀ ଭାରତ ଫେରିବେ ନାହିଁ ବୋଲି ସଙ୍କଳ୍ପ କରିଥିଲେ ।

ଇଂରେଜ ସୈନ୍ୟବାହିନୀର ବୈଷମ୍ୟମୂଳକ ଆଚରଣ, ଇଂରେଜଙ୍କର ଭାରତକୁ ସ୍ୱାଧୀନତା ଦାନରେ ଅସମ୍ମତି ଓ ଇଂରେଜ ପ୍ରଭୁଙ୍କ ପରେ ଜାପାନୀ ପ୍ରଭୁତ୍ୱର ଆଶଙ୍କା ଯେତେବେଳେ ଭାରତୀୟ ବନ୍ଦୀ ସୈନ୍ୟ ଓ ପ୍ରବାସୀ ଦେଶପ୍ରେମୀମାନଙ୍କୁ ଘାରୁଥିଲା, ସେତେବେଳେ ରାସବିହାରୀଙ୍କ ପରି ଜଣେ ମହାନ୍ ବିପ୍ଳବୀ ନେତାଙ୍କ ନେତୃତ୍ୱ ସେମାନଙ୍କ ମନରେ ସ୍ୱାଧୀନତା ପ୍ରାପ୍ତିର ଆକାଂକ୍ଷା ପ୍ରବଳତର କରିଥିଲା । ୧୯୪୨ ମାର୍ଚ୍ଚ ୨୮, ୨୯ ଓ ୩୦ ତାରିଖରେ ଜାପାନ ରାଜଧାନୀ ଟୋକିଓରେ ରାସବିହାରୀ ବୋଷଙ୍କ ସଭାପତିତ୍ୱରେ ଗୋଟିଏ ସମ୍ମିଳନୀ ବସିଲା ।

ସିଙ୍ଗାପୁରରେ ଗୋଟିଏ ସଭା ହୋଇ ଟୋକିଓ ସମ୍ମିଳନୀକୁ ଗୋଟିଏ ଶୁଭେଚ୍ଛୁ ଦଳ ପଠାହେବାର ସ୍ଥିରହୋଇ ପ୍ରସ୍ତାବ ପାଶ୍ କରାଗଲା । ସେଠାର ଜାପାନୀ ସେନାପତି ଜାପାନୀ ସୈନାଧ୍ୟକ୍ଷଙ୍କ ଅଧୀନରେ ଗୋଟିଏ 'ଅଫିସିଆଲ ଡେଲିଗେସନ୍' ବା ସରକାରୀ ପ୍ରତିନିଧି ଦଳ ପଠାଇବାକୁ ଚାହିଁଥିଲେ । ତେଣୁ ସେ ସଭାର ପ୍ରସ୍ତାବ ଜାପାନୀଙ୍କ ଘୋଷିତ ଇଚ୍ଛାର ବିରୋଧାତ୍ମକ ଥିଲା । ସିଙ୍ଗାପୁରର ଭାରତୀୟ ନେତୃବର୍ଗ ଭଡ଼ାଟିଆ ପ୍ରତିନିଧି ଭାବରେ ନ ଯିବା ପାଇଁ ଜିଦ୍ ଧରି ଶେଷରେ ସେମାନଙ୍କର ସ୍ୱତନ୍ତ୍ର ପ୍ରତିନିଧି ଦଳ ପଠାଇଥିଲେ ।

ସେହି ସମ୍ମିଳନୀରେ ହଂକଂ, ସାଙ୍ଘାଇ ଓ ଜାପାନର ସବୁଅଞ୍ଚଳର ପ୍ରବାସୀ ଭାରତୀୟ ପ୍ରତିନିଧି ଦଳ ଉପସ୍ଥିତ ଥିଲେ । ଶ୍ୟାମର ଭାରତୀୟ ପ୍ରତିନିଧି ଦଳ ଟୋକିଓକୁ ଆସିବା ସମୟରେ ଉଡ଼ାଜାହାଜ ଦୁର୍ଘଟଣାରେ ପ୍ରାଣ ହରାଇଥିଲେ । ଏହି ସମ୍ମିଳନୀରେ ଭାରତର ପୂର୍ଣ୍ଣ ସ୍ୱାଧୀନତା ଓ ସବୁପ୍ରକାର ବୈଦେଶିକ ଶାସନ ଓ ନିୟନ୍ତ୍ରଣରୁ ମୁକ୍ତି ପାଇଁ ଭାରତୀୟଙ୍କ ନେତୃତ୍ୱରେ ପ୍ରବାସୀ ଭାରତୀୟ ସରକାର ଗଠନ ଓ ସ୍ୱାଧୀନ ଭାରତ ସେନାବାହିନୀ 'ଆଜାଦ ହିନ୍ଦ୍ ଫୌଜ' ଗଠନର ପ୍ରସ୍ତାବ ପାଶ୍ ହେଲା ।

ଆଉ ଗୋଟିଏ ପ୍ରସ୍ତାବରେ ସ୍ୱାଧୀନ ଭାରତର ଭବିଷ୍ୟତ ଶାସନ ଖସଡ଼ା ରଚନା କରିବାର ଅଧିକାର ଭାରତଭୂମିରେ ମହାତ୍ମାଗାନ୍ଧି ପ୍ରଭୃତି ଭାରତୀୟ ନେତୃବର୍ଗଙ୍କ ହାତରେ ରହିବା ଓ ଭାରତୀୟ ଜାତୀୟ କଂଗ୍ରେସ ଯେ ଅଧିକାରର ମାଲିକ ହେବା ପାଶ୍ ହେଲା । ଯେଉଁ ସମ୍ମିଳନୀରେ ସ୍ଥିର ହୋଇଥିବା ଅନୁସାରେ ୧୯୪୨ ଜୁନ୍ ୧୫ ତାରିଖରୁ ୨୩ ତାରିଖ ପର୍ଯ୍ୟନ୍ତ ବ୍ୟାଙ୍କକରେ ଗୋଟିଏ ସମ୍ମିଳନୀ ବସିଲା । ସେଥିରେ ଜାପାନ, ମାଞ୍ଚୁରିଆ, ହଂକଂ, ବର୍ମା, ବୋର୍ଣ୍ଣିଓ, ଜାଭା, ମାଲୟ ଓ ଶ୍ୟାମର ପ୍ରବାସୀ ଭାରତୀୟ ଓ ଭାରତୀୟ ଯୁଦ୍ଧବନ୍ଦୀମାନଙ୍କର ପ୍ରତିନିଧିମାନେ ଯୋଗଦେଲେ ।

ସେ ସମ୍ମିଳନୀ ପରେ ଗଣତାନ୍ତ୍ରିକ ଭିତ୍ତିରେ ଆଜାଦ ହିନ୍ଦ ସଙ୍ଘ ଗଠିତ ହେଲା । ଶ୍ରୀ ରାସବିହାରୀ ବୋଷ ତା'ର ସଭାପତି ହେଲେ । କ୍ୟାପ୍ଟେନ ମୋହନ ସିଂହଙ୍କ ନେତୃତ୍ୱରେ ଆଜାଦ ହିନ୍ଦ ଫୌଜ ଗଢ଼ାଗଲା । ଆଜାଦ ହିନ୍ଦ ସଙ୍ଘର ନିବେଦନକ୍ରମେ ମାଲୟର ଭାରତବାସୀଙ୍କଠାରୁ ଆଶାତୀତ ଭାବରେ ଧନ ଓ ଜନର ସାହାଯ୍ୟ ମିଳିଲା ।

ଭାରତୀୟଙ୍କର ଏ ସ୍ୱାଧୀନତା ଆନ୍ଦୋଳନରେ ଜାପାନୀଙ୍କ ଦେହ ସହିଲା ନାହିଁ, ବରଂ ସାମ୍ରାଜ୍ୟବାଦୀ ଜାପାନୀ କର୍ତ୍ତୃପକ୍ଷଙ୍କ ମନରେ ଆତଙ୍କ ସୃଷ୍ଟି ହେଲା । ସେମାନେ 'ଆଜାଦ ହିନ୍ଦ ସଙ୍ଘ' ପ୍ରତି ଜାପାନର ନିର୍ଦ୍ଦିଷ୍ଟ ନୀତି ଘୋଷଣା ନକରି ଆଜାଦ ହିନ୍ଦ ଫୌଜର କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ଚେଷ୍ଟାକଲେ । ଜାପାନୀଙ୍କର କେତେକ ଦାବୀ ଭାରତୀୟଙ୍କ ଦ୍ୱାରା ଅଗ୍ରାହ୍ୟ ହେବାରୁ ସେମାନେ ସମ୍ଭାଳି ନପାରି ୧୯୪୨ ଡିସେମ୍ବର ଆଠ ତାରିଖରେ ଆଜାଦ ହିନ୍ଦ ଫୌଜର ଏନ. ଏସ୍. ଗିଲଙ୍କୁ ଗିରଫ କଲେ । ଶେଷରେ ପରିସ୍ଥିତି ଅସମ୍ଭାଳ ହୋଇ ଉଠିଲା । ଜାପାନୀମାନେ 'ଆଜାଦ ହିନ୍ଦ ସଙ୍ଘ'କୁ ଦୁର୍ବଳ କରିବାକୁ ଗୋଟିଏ ଭଡ଼ାଟିଆ ପ୍ରତିଦ୍ୱନ୍ଦ୍ୱୀ ଦଳ ଗଠନ କଲେ । 'ଆଜାଦ ହିନ୍ଦ ସଙ୍ଘ'ର 'ମାଲୟ'ର ସଭାପତି ଶ୍ରୀ ଏନ୍ ରାଘବନଙ୍କୁ ପଦଚ୍ୟୁତ କରିବା ପାଇଁ ରାସବିହାରୀ ବୋଷଙ୍କ ଉପରେ ଚାପଦେବା ଫଳରେ ରାଘବନ ପଦତ୍ୟାଗକଲେ । ଜାତୀୟତାବାଦୀମାନଙ୍କୁ ପଦଚ୍ୟୁତ କରାଇ ସେମାନଙ୍କ ସ୍ଥାନରେ ନିଜ ଭଡ଼ାଟିଆ ଲୋକଙ୍କୁ ରଖିବାପାଇଁ ଜାପାନୀମାନଙ୍କର ଉଦ୍ଦେଶ୍ୟ ଥିଲା ।

## ପାଦରି

ଆଜାଦ ହିନ୍ଦ୍ ସଂଘର ଠିକ୍ ଏହି ଘଡ଼ିସନ୍ଧି ସମୟରେ ଭାରତର ତୁଙ୍ଗନେତା ସୁଭାଷ ଚନ୍ଦ୍ର ବୋଷ ଇଂରେଜ ସରକାରଙ୍କ ଆଖିରେ ଧୂଳି ପକାଇ ଅନ୍ତର୍ଦ୍ଧାନ ହେବାପରେ ଜର୍ମାନ ଡିକ୍ଟେଟର ହିଟଲରଙ୍କଠାରୁ ଭାରତ ଗଣସଂଗ୍ରାମର ଜେନେରାଲ ଭାବେ ସମ୍ମାନିତ ହୋଇ

ବ୍ରିଟିଶ ବିରୁଦ୍ଧରେ ସେନାଦଳ ଗଠନକରି ଭାରତର ମୁକ୍ତି ସଂଗ୍ରାମ ଚଳାଇବା ପାଇଁ ୧୯୪୩ ଜୁଲାଇ ଦୁଇ ତାରିଖରେ ଜର୍ମାନ ବୁଡ଼ାଜାହାଜରେ ଆସି ରେଙ୍ଗୁନରେ ପଦାର୍ପଣ କଲେ ।

ଜାପାନୀଙ୍କ ବ୍ୟବହାରରେ ଆଜାଦ ହିନ୍ଦ୍ ସଙ୍ଘର କାର୍ଯ୍ୟକଳାପ ଦବିଆସୁଥିଲା । ସଙ୍ଘକୁ ଜାପାନୀଙ୍କ ଷଡ଼ଯନ୍ତ୍ର ସାମନାରେ ଦୃଢ଼ରୂପେ ଠିଆ କରାଇବାର ଶକ୍ତି ବୃଦ୍ଧ ରାସବିହାରୀଙ୍କର ନଥିଲା । ନେତାଜୀଙ୍କ ଆଗମନରେ ପୁଣି ଭାରତୀୟ ଜାତୀୟବାଦୀମାନେ ଅଦମ୍ୟ ଉତ୍ସାହରେ ମାତିଉଠିଲେ । ୧୯୪୩ ଜୁଲାଇ ୪ ତାରିଖରେ ଭାରତୀୟ ପ୍ରତିନିଧି ସମ୍ମିଳନୀରେ ସର୍ବସମ୍ମତିକ୍ରମେ ସୁଭାଷ ବାବୁ ଆଜାଦ ହିନ୍ଦ୍ ସଙ୍ଘର ସଭାପତି ନିର୍ବାଚିତ ହୋଇ ସମସ୍ତ ଆନ୍ଦୋଳନର ଦାୟିତ୍ୱ ନେଲେ ।

ଏକ ସ୍ୱାଧୀନ ଭାରତ ଅସ୍ଥାୟୀ ସରକାର ଗଢ଼ାଯାଇ ସେଥିରେ ନେତାଜୀଙ୍କୁ ସର୍ବପ୍ରଧାନ କର୍ତ୍ତାରୂପେ ନିର୍ବାଚିତ କରାଗଲା । ସେହି ସରକାର ଇଂଲଣ୍ଡ ଓ ତା'ର ସାଥି ଦେଶମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିବା ସମସ୍ତ ଦେଶର ସରକାରମାନଙ୍କ ଦ୍ୱାରା ସ୍ୱାଧୀନ ଭାରତ ସରକାର ରୂପେ ସ୍ୱୀକୃତି ପାଇଲା । ସେହି ସ୍ୱାଧୀନ ଭାରତ ସରକାର ୧୯୪୩ ଅକ୍ଟୋବର ୨୩ ତାରିଖ ଦିନ ଯଥାଯଥ ନିୟମ ଅନୁସାରେ ଇଂଲଣ୍ଡ ଓ ଆମେରିକା ପ୍ରଭୃତି ରାଜ୍ୟଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା ।

ଏଣିକି ଭାରତୀୟ ସୈନ୍ୟମାନେ ଜାପାନର ଅଧୀନସ୍ଥ ହେବା ଭଳି ନକରି ବନ୍ଧୁସେନା ଭାବେ ଭାରତର ମୁକ୍ତିଯୁଦ୍ଧ ଚଳାଇଲେ । ୧୯୪୩ ନଭେମ୍ବର ୫ ତାରିଖରେ ନିକୋବର ଦ୍ୱୀପପୁଞ୍ଜ ଆଜାଦ ହିନ୍ଦ ଫୌଜର ଅଧୀନକୁ ଆସିଲା । ୧୯୪୩ ଡିସେମ୍ବର ୩୦ ତାରିଖରେ ଆଣ୍ଡାମାନର ବ୍ଲେୟାର ବନ୍ଦରରେ ଭାରତର ସ୍ୱାଧୀନ ପତାକା ଉଡ଼ିଲା ।

ସ୍ୱାଧୀନ ଭାରତ ଅସ୍ଥାୟୀ ସରକାରର ପ୍ରଧାନ କାର୍ଯ୍ୟାଳୟ ଭାରତର ନିକଟବର୍ତ୍ତୀ କୌଣସି ସ୍ଥାନରେ ହେବାର ଆବଶ୍ୟକତା ଉପଲବ୍ଧି କରି ୧୯୪୪ ଜାନୁୟାରୀ ୭ ତାରିଖରେ ତାହାର କାର୍ଯ୍ୟାଳୟ ରେଙ୍ଗୁନରେ ସ୍ଥାପନ କରାଗଲା । ପ୍ରଧାନ କାର୍ଯ୍ୟାଳୟଟି ରେଙ୍ଗୁନରେ ରହିବା ସଙ୍ଗେ ସଙ୍ଗେ ଅନ୍ୟ ଗୋଟିଏ କାର୍ଯ୍ୟାଳୟ ମାଳୟର ସିଙ୍ଗାପୁରରେ ରହିଲା । ମାଳୟରେ ତା'ର ୭୦ଟି ଶାଖା କାର୍ଯ୍ୟାଳୟ ସ୍ଥାପିତ ହୋଇଥିଲା ଓ ସେମାନଙ୍କର ସଭ୍ୟସଂଖ୍ୟା ଦୁଇ ଲକ୍ଷରୁ ଅଧିକ ଥିଲା । ବର୍ମାରେ ୧୦୦ଟି ଶାଖା, ଶ୍ୟାମରେ ୨୪ଟି ଶାଖା ବ୍ୟତୀତ ଆଣ୍ଡାମାନ, ସୁମାତ୍ରା, ଜାଭା, ବୋର୍ଣ୍ଣିଓ, ସେଲିବସ ଦ୍ୱୀପପୁଞ୍ଜ, ଫିଲିପାଇନ୍ସ ଦ୍ୱୀପପୁଞ୍ଜ, ଚୀନ, ଜାପାନ, ମାଞ୍ଚୁରିଆ ପ୍ରଭୃତିରେ ଶାଖାମାନ ଗଢ଼ାଯାଇଥିଲା ।

ସାମରିକ ଶିକ୍ଷା ଦେବାଲାଗି ଆଜାଦ ହିନ୍ଦ ଫୌଜର ନଅଟି କେନ୍ଦ୍ର ଥିଲା । ସାମରିକ ଅଫିସରମାନଙ୍କୁ ତାଲିମ ଦେବାଲାଗି ରେଙ୍ଗୁନ ଓ ସିଙ୍ଗାପୁରରେ ଦୁଇଟି କେନ୍ଦ୍ର ମଧ୍ୟ ଗଢ଼ାଯାଇଥିଲା । ଅଫିସର ଓ ନାୟକମାନେ ହିନ୍ଦୁସ୍ଥାନୀରେ ଶିକ୍ଷା ପାଉଥିଲେ । ସେଠାରେ ଜାତି ଓ ସମ୍ପ୍ରଦାୟର ଭେଦ ଦେଖାଯାଉନଥିଲା । ଯୁଦ୍ଧରେ ହିନ୍ଦୁସ୍ଥାନୀରେ ଆଦେଶ

ଦିଆ ଯାଉଥିଲା । ଯୁଦ୍ଧବନ୍ଦୀ ସୈନ୍ୟଙ୍କ ବ୍ୟତୀତ ବହୁସଂଖ୍ୟକ ପ୍ରବାସୀ ଭାରତୀୟଙ୍କୁ ତାଲିମ କରାଯାଉଥିଲା । କେବଳ ମାତ୍ର ମାଲୟରୁ କୋଡ଼ିଏ ହଜାର ବେସାମରିକ ଲୋକ ତାଲିମ ପାଇ ଆଜାଦ ହିନ୍ଦ ଫୌଜର ଅନ୍ତର୍ଭୁକ୍ତ ହୋଇଥିଲେ । ଭାରତୀୟମାନେ ଅକାତରରେ ଧନଜୀବନ ଦାନ କରୁଥିଲେ । ଏପରିକି ଛୁଞ୍ଚି ସୂତା ପର୍ଯ୍ୟନ୍ତ ନିଜର ସମସ୍ତ ବ୍ୟବାହାରିକ ପଦାର୍ଥ ଦାନ କରିବାକୁ କୁଣ୍ଠାବୋଧ କରୁନଥିଲେ । ଭାରତୀୟ ସ୍ତ୍ରୀଲୋକମାନେ ସୈନ୍ୟମାନଙ୍କ ଚିରିପୋଷାକ ଓ ମୋଜା ପ୍ରଭୃତି ମରାମତି କରି ସୈନ୍ୟଶ୍ରେଣୀକୁ ପଠାଇଦେଉଥିଲେ ।

ଆଜାଦ ହିନ୍ଦ ସଂଘର ସମସ୍ତ ଆନ୍ଦୋଳନ ପୂରାପୂରି କେବଳ ଭାରତୀୟମାନଙ୍କ ଅର୍ଥ ସାହାଯ୍ୟରେ ଚାଲିଥିଲା । କେବଳ ବର୍ମାର ଭାରତୀୟମାନଙ୍କଠାରୁ ଅଳ୍ପ କେତେଦିନ ଭିତରେ ଆଠ କୋଟି ଟଙ୍କା ମିଳିଥିଲା । ଆଜାଦ ହିନ୍ଦ ଫୌଜ ସେମାନଙ୍କ ନିଜର ପ୍ରୟୋଜନୀୟ ଅସ୍ତ୍ର ଶସ୍ତ୍ର ଗୋଳାବାରୁଦ ପ୍ରଭୃତି ନିଜ ଅର୍ଥରେ କିଣୁଥିଲେ । ଆଜାଦ ହିନ୍ଦ ସରକାର କେବଳ ଯୁଦ୍ଧକଥା ଚିନ୍ତା ନକରି ସମାଜ ସେବାର ଗୁରୁଦାୟିତ୍ୱ ମଧ ବହନ କରୁଥିଲେ । ଯୁଦ୍ଧ ପ୍ରପୀଡ଼ିତ ଭାରତୀୟମାନଙ୍କୁ ସାହାଯ୍ୟ କରିବାକୁ ଅଜସ୍ର ଅର୍ଥ ବ୍ୟୟ କରାହେଉଥିଲା । ମାଲୟରେ ଥିବା ଶ୍ରମିକମାନେ ବିଶେଷ ଭାବରେ ଦୁର୍ଦ୍ଦଶାଗ୍ରସ୍ତ ହୋଇଥିବାରୁ ସେମାନଙ୍କ ଲାଗି ଚିକିତ୍ସାଳୟ, ଡାକ୍ତର, ଔଷଧ, ପଥ୍ୟ ଓ ଖାଦ୍ୟ ପ୍ରଭୃତିର ବ୍ୟବସ୍ଥା କରାଯାଇଥିଲା ।

କୁଆଲାଲମ୍ପୁରରେ ଗଢ଼ାଯାଇଥିବା ସାହାଯ୍ୟ କେନ୍ଦ୍ର ରେ ମାସିକ ପଞ୍ଚସ୍ତରୀ ହଜାରରୁ ଅଧିକ ବ୍ୟୟରେ ଏକ ହଜାରରୁ ଅଧିକ ନାରୀ, ଶିଶୁ ଓ ଦୁଃସ୍ଥଙ୍କୁ ନାନାପ୍ରକାର ସାହାଯ୍ୟ ଦିଆଯାଉଥିଲା । ଶ୍ୟାମରେ ଆଧୁନିକ ଧରଣର ଏକ ବଡ଼ ଡାକ୍ତରଖାନା ଖୋଲାଯାଇଥିଲା । ବର୍ମା ଓ ଅନ୍ୟାନ୍ୟ ଅନେକ ସ୍ଥାନରେ ବହୁ ଦାତବ୍ୟ ଚିକିତ୍ସାଳୟର ବ୍ୟବସ୍ଥା କରାଯାଇଥିଲା । ଏହାଛଡ଼ା ଦୁର୍ଗତ ଭାରତୀୟଙ୍କ ବସତି ସ୍ଥାପନ ଲାଗି ଏ ସଙ୍ଘ ଜଙ୍ଗଲ ପରିଷ୍କାର କରି ବାସଗୃହ ନିର୍ମାଣର ଯୋଜନା ମଧ ହାତକୁ ନେଇଥିଲେ । ବାଳକ ବାଳିକାଙ୍କୁ ଶିକ୍ଷା ଦେବାପାଇଁ ହିନ୍ଦୁସ୍ଥାନରେ ଶିକ୍ଷାଦେବା କେନ୍ଦ୍ରସବୁ ପ୍ରତିଷ୍ଠା ହୋଇଥିଲା ।

ବହୁଦିନ କାରାଗାରବାସ ପରେ କର୍ମମୟ ସ୍ୱାଧୀନ ଜୀବନ ନବକୁମାରଙ୍କ ଶରୀରରେ ଶିହରଣ ସୃଷ୍ଟି କରିଥିଲା । ସଙ୍ଘର କାର୍ଯ୍ୟରେ ତାଙ୍କର ସ୍ୱାଧୀନ ଭାରତର ସ୍ୱପ୍ନ ସଫଳ ହେଲାପରି ତାଙ୍କୁ ଲାଗିଲା । କାରାଗାରରେ ଶିକ୍ଷା କରିଥିବା ରୋଗୀ ସେବାକୁ ଦୁଃସ୍ଥ ସ୍ୱାଧୀନତା ସଂଗ୍ରାମୀଙ୍କ କାର୍ଯ୍ୟରେ ଲଗାଇବା ପାଇଁ ସେ କୋଆଲାଲମ୍ପୁର ସାହାଯ୍ୟ କେନ୍ଦ୍ରରେ ଯୋଗ ଦେଇ କିଛୁଦିନ ସେବାକାର୍ଯ୍ୟରେ ଲାଗିଲେ; କିନ୍ତୁ ସେଥିରେ ତାଙ୍କ ଆତ୍ମା ତୃପ୍ତ ହେଲନାହିଁ । ସମ୍ମୁଖ ଯୁଦ୍ଧରେ ଯୋଦ୍ଧା ଭାବରେ ଲଢ଼ି ଭାରତମାତାକୁ ଉଦ୍ଧାର କରିବାପାଇଁ ତାଙ୍କ ମନ ଚଞ୍ଚଳ ହୋଇଉଠିଲା । ସେ ଆଜାଦ ହିନ୍ଦ ଫୌଜରେ ଜଣେ ସାଧାରଣ ସୈନିକ ଭାବରେ ଯୋଗଦେଇ ତାଲିମ ପାଇଁ ରେଙ୍ଗୁନ ଗଲେ ।

ଆଜାଦ ହିନ୍ଦ ଫୌଜରେ ପ୍ରାୟ ସତୁରି ହଜାର ତାଲିମପ୍ରାପ୍ତ ସୈନ୍ୟ ଥିଲେ । ଏହି ସୈନ୍ୟବାହିନୀରେ ପ୍ରଧାନତଃ ତିନୋଟି ଆଗୁଆ ସେନାଦଳ ବା ବ୍ରିଗେଡ଼ ଥିଲା ।

(୧) ସୁଭାଷ ବ୍ରିଗେଡ—ତାହା କର୍ଣ୍ଣେଲ ସାହାନଓ୍ୱାଜଙ୍କ ନେତୃତ୍ୱରେ ୩୨୦୦ ସୈନ୍ୟଙ୍କ ଦ୍ୱାରା ଗଠିତ ହୋଇଥିଲା ।

(୨) ଗାନ୍ଧି ବ୍ରିଗେଡ଼—୨୮୦୦ ସୈନ୍ୟଙ୍କୁ ନେଇ ଇନାୟତ କାୟାନ ଏହି ବ୍ରିଗେଡ଼ର ନେତୃତ୍ୱ ନେଇଥିଲେ ।

(୩) ଆଜାଦ ବ୍ରିଗେଡ଼—୨୮୦୦ ସୈନ୍ୟ ନେଇ ମୋହନ ସିଂହଙ୍କ ନେତୃତ୍ୱରେ କାର୍ଯ୍ୟ କରୁଥିଲା ।

ଏହାଛଡ଼ା ବାହାଦୂର ଦଳର ତିନି ଶହ ସୈନ୍ୟ ଥିଲେ । ସାତ ଶହ ବେସାମରିକ ସାହାଯ୍ୟକାରୀ ଦଳ ସୈନ୍ୟମାନଙ୍କୁ ସାହାଯ୍ୟ କରୁଥିଲେ ।

ଅନ୍ୟାନ୍ୟ ବ୍ରିଗେଡ଼ମାନଙ୍କ ଭିତରେ କର୍ଣ୍ଣେଲ ଗୁରୁବକ୍ସ ଧୀଲନଙ୍କ ଅଧୀନରେ ତିନି ହଜାର ସୈନ୍ୟଙ୍କୁ ନେଇ ନେହେରୁ ବ୍ରିଗେଡ଼ । ବାର ଶହ ମହିଳାଙ୍କୁ ନେଇ ଡାକ୍ତର କାପ୍ଟେନ୍ ଲକ୍ଷ୍ମୀନାଥନ୍‌ଙ୍କ ଦ୍ୱାରା ପରିଚାଳିତ ଝାନ୍ସୀ ରାଣୀ ବ୍ରିଗେଡ଼ ପ୍ରଭୃତି ପ୍ରଧାନ ଥିଲା । ଆଜାଦ ହିନ୍ଦ ଫୌଜରେ ଧର୍ମ ଓ ପ୍ରାଦେଶିକତା ଭୁଲି ଭାରତୀୟମାନେ ଭାରତ ଜନନୀପାଇଁ ପ୍ରାଣଦେବାକୁ ଏକତ୍ରିତ ହୋଇଥିଲେ । ସେଥିରେ ପାଞ୍ଚ ହଜାରରୁ ଊର୍ଦ୍ଧ୍ୱ ଓଡ଼ିଆ ଯୁବକ ମଧ୍ୟ ଯୋଗଦେଇଥିଲେ ।

ଆଜାଦ ହିନ୍ଦ୍ ସରକାର ସମସ୍ତ ଭାରତୀୟଙ୍କୁ ସମଚକ୍ଷୁରେ ଦେଖି ଘୋଷଣା କରିଥିଲେ—ଅସ୍ଥାୟୀ ଭାରତ ସରକାର ପ୍ରତ୍ୟେକ ଭାରତୀୟଙ୍କ ଆନୁଗତ୍ୟ ଦାବୀ କରେ ଏବଂ ଆନୁଗତ୍ୟ ଲାଭ କରିବାର ଯୋଗ୍ୟ । ଏହି ସରକାର ଧର୍ମଗତ ସ୍ୱାଧୀନତା ଏବଂ ସବୁ ଅଧିବାସୀଙ୍କ ଲାଗି ସମାନ ଅଧିକାର ଓ ସମାନ ସୁବିଧାର ପ୍ରତିଶ୍ରୁତି ଦେଇଛି । ଏହି ସରକାର ଘୋଷଣା କରୁଛି ଯେ, ଦେଶର ସବୁ ସନ୍ତାନଙ୍କୁ ସମାନ ଭାବରେ ପୋଷଣ କରି ଏବଂ ବିଦେଶୀ ସରକାର ସୃଷ୍ଟି କରୁଥିବା ସର୍ବପ୍ରକାର ବିଭେଦ ଅତିକ୍ରମ କରି ସମଗ୍ର ଦେଶ ଓ ସମସ୍ତ ଅଂଶର ସୁଖ ସମୃଦ୍ଧି ପଥରେ ଚାଲିବାକୁ ଦୃଢ଼ପ୍ରତିଜ୍ଞ । ସେ ଘୋଷଣାରେ—

ଶ୍ରୀ ସୁଭାଷ ଚନ୍ଦ୍ର ବୋଷ ( ସର୍ବୋଚ୍ଚକର୍ତ୍ତା, ପ୍ରଧାନମନ୍ତ୍ରୀ ଏବଂ ଯୁଦ୍ଧ ଓ ବୈଦେଶିକ ମନ୍ତ୍ରୀ )

ଶ୍ରୀ ରାସବିହାରୀ ବୋଷ ( ପ୍ରଧାନ ପରାମର୍ଶଦାତା )

କାପ୍ଟେନ ଲକ୍ଷ୍ମୀ ( ନାରୀ ସଂଗଠନ ମନ୍ତ୍ରୀ )

ଶ୍ରୀ ଏମ. ଏ. ଆୟାର ( ପ୍ରଚାରମନ୍ତ୍ରୀ )

ଲେଫ୍‌ଟେନାଣ୍ଟ କର୍ଣ୍ଣେଲ ଏ. ସି. ଚାଟାର୍ଜୀ ( ଅର୍ଥ ମନ୍ତ୍ରୀ ) ଓ ଅନ୍ୟାନ୍ୟ କର୍ମକର୍ତ୍ତାମାନେ ସ୍ୱାକ୍ଷର କରିଥିଲେ ।

ତାଲିମ ପାଇବାକୁ ରେଙ୍ଗୁନ ଯାଇ ପ୍ୟାରେଡ଼ ପଡ଼ିଆରେ ପ୍ରଧାନ ସେନାପତି ପୋଷାକରେ ପୂଜ୍ୟନେତା ସୁଭାଷ ବାବୁଙ୍କୁ ଦେଖି ନବକୁମାର ତନ୍ମୟ ହୋଇଗଲେ । ସେ ଫୌଜର ପଦମର୍ଯ୍ୟାଦା ସୂଚାଇବା ପାଇଁ ସାଧାରଣ ସୈନ୍ୟ ପୋଷାକ ସହିତ ବିଭିନ୍ନ ପ୍ରକାର

ପ୍ରତୀକ ଚିହ୍ନ ବା ବ୍ୟାଜମାନ ପୋଷାକରେ ପରିଧାନ କରୁଥିଲେ । ଅଫିସର ଓ ସୈନ୍ୟମାନେ ସମସ୍ତେ ନିଜ ଗ୍ରୁଡର ବାଁ ପାଖରେ ତ୍ରିରଙ୍ଗ କଂଗ୍ରେସ ପତାକା ଲଗାଉଥିଲେ । ଏହାଛଡ଼ା ସେମାନଙ୍କ ଟୋପିରେ ଆଜାଦ ହିନ୍ଦ ଫୌଜ ନାମାଙ୍କିତ ଟିଣଲର ବ୍ୟାଜ୍ ମରାହୋଇଥିଲି । ସେ ବ୍ୟାଜ୍‌ରେ ଭାରତର ମାନଚିତ୍ର ଏବଂ ଇତିହାଙ୍କ, ଇତମଦ ଓ କୋରବାନୀ (ସହଯୋଗିତା, ନ୍ୟାୟବିଚାର ଓ ଆତ୍ମତ୍ୟାଗ) ତିନୋଟି ଶବ୍ଦ ହିନ୍ଦୀରେ ଲେଖାଥିଲି । ମହିଳା ସୈନ୍ୟମାନେ ମଧ୍ୟ ପୁରୁଷଙ୍କ ପରି ଫୁଲ୍‌ପ୍ୟାଣ୍ଟ, ଖାକି ସାର୍ଟ, ଟୋପି ଓ ରବର ବୁଟ୍ ଯୋତା ପିନ୍ଧୁଥିଲେ । ସମସ୍ତଙ୍କୁ ଆଧୁନିକ ଧରଣର କଠିନ ଯୁଦ୍ଧବିଦ୍ୟା ଶିକ୍ଷା ଦିଆଯାଉଥିଲି ଓ ସହିଷ୍ଣୁତା, କଠୋର କର୍ତ୍ତବ୍ୟପରାୟଣତା ଓ ଶୃଙ୍ଖଳା ଜ୍ଞାନରେ ତାଲିମ କରାଯାଉଥିଲି ।

ଆଜାଦ ହିନ୍ଦ୍ ଫୌଜ ପୂର୍ଣ୍ଣଭାବରେ ତାଲିମପ୍ରାପ୍ତ ହୋଇ ଯୁଦ୍ଧରେ ଲିପ୍ତହେଲା-ବେଳକୁ ଯୁଦ୍ଧର ଅବସ୍ଥା ଭିନ୍ନ ଆକାର ଧାରଣ କରୁଥିଲି । ଜର୍ମାନ ଓ ଜାପାନ ସେନା ବହୁ ରାଜ୍ୟ ଅଧିକାର କରି ସେ ସବୁ ସମ୍ଭାଳିବାକୁ ଅସମର୍ଥ ହୋଇଉଠିଥିଲେ । ବିଜିତ ରାଜ୍ୟ-ମାନେ ଏକଛତ୍ରବାଦ ବିରୁଦ୍ଧରେ ଷଡ଼ଯନ୍ତ୍ର ଆରମ୍ଭ କରିଥିଲେ । ରୁଷିଆ, ଇଂଲଣ୍ଡ ଓ ଆମେରିକା ସଙ୍ଗେ ସନ୍ଧି କରିସାରିଥିଲି । ବ୍ରିଟିଶ ସେନା ଅମେରିକାର ଅସରନ୍ତି ଧନଜନରେ ପୁଷ୍ଟହୋଇ ସଂଗଠିତ ହୋଇଉଠୁଥିଲେ । ପୂର୍ବ ଭୂଖଣ୍ଡରେ ବର୍ମାର ସ୍ଥାନୀୟ ଲୋକଙ୍କ ପ୍ରତି ଜାପାନୀମାନଙ୍କର ଅତ୍ୟାଚାରରେ ସେଠାର ଲୋକମାନେ ବିଦ୍ରୋହ ଆରମ୍ଭ କରିଦେଇଥିଲେ । ମୋଟ ଉପରେ ଭାରତ ଆକ୍ରମଣ ପାଇଁ ପରିସ୍ଥିତି ଖୁବ୍ ଆଶାଜନକ ନଥିଲି । ଭାରତ ଅଭିଯାନ ପରି ଗୋଟିଏ ବୃହତ୍ତ ଦୁରୂହ ଅଭିଯାନ ପାଇଁ ଜାପାନର ଅତି କ୍ଷମତା ନଥିଲି । ଜାପାନର ଅର୍ଥନୀତି ଭୁଷୁଡ଼ି ପଡ଼ିଥିଲି । ସେମାନେ ଭାରତୀୟଙ୍କୁ ଭଲ ଆଖିରେ ଦେଖୁନଥିଲେ । ତେଣୁ ଭାରତ ଅଭିଯାନକୁ ସେମାନେ ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରିବାର ଆଶା ମଧ୍ୟ ନଥିଲି ।

ବ୍ରିଟେନ ସୈନ୍ୟ ବର୍ମା ପୁନର୍ଦଖଲ ପାଇଁ ନୂଆ ନୂଆ ସରଞ୍ଜାମରେ ସଜ୍ଜିତ ହୋଇ ହଜୋୟାଂ ଉପତ୍ୟକା ଆକ୍ରମଣ କରି ଚିନ୍ଦୁଇନ ନଦୀ ଅତିକ୍ରମ କରିବାକୁ ଚେଷ୍ଟା କରୁଥିଲେ । ଜାପାନୀମାନେ ଇଂରେଜଙ୍କ ପ୍ରତି-ଆକ୍ରମଣରେ ଅଧୀର ହୋଇ ପଛଘୁଞ୍ଚା ଦେବାକୁ ଉଦ୍ୟତ ହେଉଥିଲେ ।

ସୁଭାଷ ପରିସ୍ଥିତି ହୃଦୟଙ୍ଗମ କଲେ; କିନ୍ତୁ ସେ ଚିର ଆଶାବାଦୀ । ଆଉ ସମୟ ନଥିବା ଜାଣିପାରି "ବର୍ତ୍ତମାନ ନହେଲେ ଆଉ କେବେ ନୁହେଁ" ବୋଲି ବୁଝି ଭାରତର ମଣିପୁର ଦଖଲ କରିବା ପାଇଁ ଦୃଢ଼ପରିକର ହେଲେ ।

ସେ ଆଜାଦ ହିନ୍ଦ ସେନାର ବୀରମାନଙ୍କୁ ଉଦ୍‌ବୋଧନ ଦେଇ କହିଲେ—"ଏଇ ଏଇ ଦୂରେ—ସେଇ ନଈ ପରେ, ସେଇ ସବୁ ଜଙ୍ଗଲ ଡେଇଁ ସେଇ ସବୁ ପାହାଡ଼ ଆରପାଖେ ଆମ ଦେଶ । ସେଇ ଭୂମିରେ ଆମର ଜନ୍ମ । ସେଇ ଭୂମିକୁ ଆମେ ଫେରିଯିବା । ଏଇ ଶୁଣ, ଭାରତ ଡାକୁଛି, ଭାରତର ରାଜଧାନୀ ଦିଲ୍ଲୀ ଡାକୁଛି । ଆମ ଦେଶର ଅଠତିରିଶ କୋଟି ଅଶୀଲକ୍ଷ ଲୋକ ଡାକୁଛନ୍ତି । ନିଜ ରକ୍ତମାଂସର ଲୋକେ ନିଜ ରକ୍ତମାଂସର ଲୋକଙ୍କୁ ଡାକୁଛନ୍ତି

ଉଠ, ଆଉ ଡକାଇବାକୁ ବେଳ ନାହିଁ । ଅସ୍ତ୍ର ଧର । ଆମ ଆଗରୁ ଆମର ଯିଏ ଯାଇଛନ୍ତି ସେ ହେଉଛି ସେ ରାସ୍ତା ତିଆରି କରି ଯାଇଛନ୍ତି । ସେଇ ରାସ୍ତା ତୁମ ଆଗରେ ପଡ଼ିଛି । ସେଇ ବାଟରେ ଆମେ ଚାଲିବା । ଶତ୍ରୁଙ୍କ ଭିଡ଼ରେ ପଶି ବାଟ ଫିଟାଇ ଦେବା । ନଚେତ୍, ନଚେତ୍ ବିଧାତା ଯଦି ସେଇଆ ଲୋଡ଼ନ୍ତି, ତେବେ ଶହୀଦ୍ ପରି ସେଇ ରାସ୍ତାରେ ପଡ଼ିମରିବା । ସେଇ ଶେଷ ମହାନିଦ୍ରାରେ ପଡ଼ି ମଧ୍ୟ ଆମେ ସେଇ ରାସ୍ତାକୁ ଚୁମ୍ବନ କରିବା—ଯେଉଁ ରାସ୍ତା ଆମ ସେନାକୁ ଦିଲ୍ଲୀ ନେବ । ଦିଲ୍ଲୀର ରାସ୍ତା ହିଁ ସ୍ୱାଧୀନତାର ରାସ୍ତା । ଚଲୋ ଦିଲ୍ଲୀ ।”

୧୯୪୪ ମାର୍ଚ୍ଚ ଆଠ ତାରିଖ ଦିନ ଅର୍ଥାତ୍ ସୁଭାଷ ପୂର୍ବ ଭୂଖଣ୍ଡରେ ପାଦଦେବାର ଅଳ୍ପ କେତେକ ମାସ ଭିତରେ ସଂଗଠିତ ହୋଇ ବୀର ଆଜାଦ ହିନ୍ଦ୍ ଫୌଜର ସେନା ଭାରତ ପ୍ରବେଶ ଅଭିଯାନ ଆରମ୍ଭ କଲେ । ମାର୍ଚ୍ଚ ଅଠର ତାରିଖରେ ସ୍ୱାଧୀନ ସେନା ବର୍ମା ସୀମାନ୍ତ ଅତିକ୍ରମ କରି ଭାରତ ଭୂମି ଆସାମର ମଣିପୁରରେ ପଦାର୍ପଣକଲେ । ଆଜାଦ ହିନ୍ଦ୍ ଫୌଜର ସୈନ୍ୟମାନେ ବିଶେଷ ଚତୁରତାର ସହିତ ଗୁପ୍ତଭାବରେ ଆସାମ ଓ ବଙ୍ଗଳାରେ ପ୍ରବେଶ କରିବାକୁ ଚେଷ୍ଟା କରିଥିଲେ । ସେମାନଙ୍କର ଭାରତୀସ୍ଥ ସୈନ୍ୟଙ୍କୁ ଆକ୍ରମଣ କରିବାକୁ ଇଚ୍ଛା ନଥିଲା । ସୁଭାଷବାବୁ ବୁଝିଥିଲେ, ଭାରତୀସ୍ଥ ସୈନ୍ୟମାନେ ତାଙ୍କ ବିରୁଦ୍ଧରେ ଯୁଦ୍ଧନକରି ସେମାନଙ୍କ ସହିତ ଯୋଗଦେବେ ଓ ସେଠାର ଲୋକେ ତାଙ୍କୁ ସ୍ୱାଗତ କରିବେ ।

ଚତୁର ଇଂରେଜମାନେ ମଧ୍ୟ ସେହି ଶଙ୍କା କରି ବଙ୍ଗଳାରେ ଖାଦ୍ୟଶସ୍ୟ ସରବରାହ ଓ ଯୋଗାଣ ବନ୍ଦ କରି କୃତ୍ରିମ ମଣିଷଗଢ଼ା ଦୁର୍ଭିକ୍ଷ ସୃଷ୍ଟିକରି ଲୋକଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ସେଠା ଯୁଦ୍ଧରେ ଭାରତୀସ୍ଥ ସୈନ୍ୟମାନଙ୍କୁ ମୁତୟନ ନକରି ଆଫ୍ରିକା ଓ ଅନ୍ୟସ୍ଥାନର ସୈନ୍ୟ ସମ୍ମୁଖ ଯୁଦ୍ଧକୁ ପଠାଇଲେ । ଦୁଇ ନମ୍ବର ଗରିଲା ରେଜିମେଣ୍ଟ, ଗାନ୍ଧି ଡିଭିଜନ ପାଲେଲ, ଟାମୁ ଅଞ୍ଚଳରେ ଓ ଏକ ନମ୍ବର ଗରିଲା ରେଜିମେଣ୍ଟ ବୋଷ ଡିଭିଜନ କାଲଡ଼ାନ ଉପତ୍ୟକାରେ ଯୁଦ୍ଧ ଚଲାଉଥିବାବେଳେ ସେମାନଙ୍କ ଭିତରୁ ଅନେକ ବ୍ରିଟେନ ପକ୍ଷର ଆଫ୍ରିକାସ୍ଥ ସୈନ୍ୟଙ୍କ ସହିତ ହାତାହାତି ଯୁଦ୍ଧରେ ବ୍ୟାପୃତ ହୋଇ ପ୍ରାଣପାତ କଲେ । କୋହିମା ଯୁଦ୍ଧକ୍ଷେତ୍ରରେ କ୍ୟାପଟେନ ଆଜମୀର ସିଂହଙ୍କ ନେତୃତ୍ୱରେ ଆଜାଦ ହିନ୍ଦ୍ ଫୌଜର ଗୋଟିଏ ସେନାବାହିନୀ ଇଂରେଜ ସେନାଙ୍କ ସଙ୍ଗେ ଲଢ଼ୁଥିଲେ ।

ଆଜାଦ ହିନ୍ଦ୍ ସେନା ମୋରାଇ, କୋହିମା ଓ ଅନ୍ୟାନ୍ୟ ଅନେକ ଗ୍ରାମ ଦଖଲକରି ଆସାମର ଇମ୍ଫାଲ ଅବରୋଧ କଲେ । ସେମାନେ ସେସବୁ ସ୍ଥାନ ଇଂରେଜଙ୍କ କବଳରୁ ମୁକ୍ତକରି ପ୍ରଥମେ ଭାରତର ସ୍ୱାଧୀନ କେତନ ଉଡ଼ାଇଥିଲେ । ୧୯୪୪ ମାର୍ଚ୍ଚ ୨୨ ତାରିଖରେ ଇମ୍ଫାଲ ପ୍ରଭୃତି ଅଧିକୃତ ଅଞ୍ଚଳରେ ଆଜାଦ ହିନ୍ଦ୍ ଫୌଜର ଶ୍ରୀ ଜେ. ଚାଟର୍ଜିଙ୍କୁ ଶାସନକର୍ତ୍ତା ଭାବେ ନିଯୁକ୍ତ କଲେ ।

ସେ ଯୁଦ୍ଧରେ ଆଜାଦ ସେନାଙ୍କୁ ସେ ପାର୍ବତ୍ୟ ଅଞ୍ଚଳରେ ଯୁଦ୍ଧ ସରଞ୍ଜାମ ଓ ଖାଦ୍ୟ-ପେୟ ପ୍ରଭୃତିର କୌଣସି ସାହାଯ୍ୟ ମିଳିଲା ନାହିଁ । ଉଡ଼ାଜାହାଜର ସାମାନ୍ୟ ସାହାଯ୍ୟ ମଧ୍ୟ

ସେମାନେ ପାଇଲେ ନାହିଁ । ପ୍ରବଳ ଓ ନିଦାରୁଣ ବର୍ଷା ଫଳରେ ସରବରାହ ରାସ୍ତା ସେମାନଙ୍କଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଯିବାରେ ସେହି ସେନାବାହିନୀ ପଛକୁ ହଟିବାକୁ ବାଧ୍ୟହେଲେ ।

ବୋଷ ବ୍ରିଗେଡ଼ର ସୈନ୍ୟରୂପେ ନବକୁମାର ସାହସର ସହିତ ଲଢ଼େଇ କରି ବାଧ୍ୟହୋଇ ଭାରତଭୂମି ଛାଡ଼ିବା ଦିନ ଜନ୍ମମାଟି ମୁଣ୍ଡରେ ଲଗାଇ ଛଳଛଳ ଆଖିରେ ବିଦାୟ ନେଲେ । ସୁସଜ୍ଜିତ ଇଂରେଜ ସେନା ସେମାନଙ୍କ ପଶ୍ଚାଦ୍‌ଧାବନ କଲେ । ସେମାନେ ଆତ୍ମରକ୍ଷା ପାଇଁ ଯୁଦ୍ଧ କରି କରି ପଛକୁ ଫେରିଲେ ।

କର୍ଦମମୟ ପାହାଡ଼ିଆ ରାସ୍ତା । ଖାଦ୍ୟପେୟ ମିଳିବାର କୌଣସି ଆଶା ନାହିଁ । ଦୁର୍ଗମ ହିଂସ୍ରଜନ୍ତୁପୂର୍ଣ୍ଣ ଜଙ୍ଗଲ । ଉଡ଼ାଜାହାଜରୁ ବ୍ରିଟିଶସେନା ବିଷାକ୍ତ ଦ୍ରବ୍ୟ ପକାଇ ବାଟରେ ଥିବା ନଈ ନାଳର ପାଣିସବୁ ବିଷାକ୍ତ କରୁଥାଆନ୍ତି ।

ନବକୁମାର ଓ ତାଙ୍କ ସାଥିମାନେ ଲୁଚି ଲୁଚି ପତ୍ର ଓ ଘାସ ଚୋବାଇ କ୍ଷୁଧା ନିବାରଣ କରି ଚାଲିଥାଆନ୍ତି । ବର୍ଷାବେଳେ ପତ୍ରରୁ ପାଣି ସଂଗ୍ରହ କରି ପିଅନ୍ତି କିମ୍ବା ବୋତଲରେ ନିଜ ମୂତ୍ର ସଂଗ୍ରହ କରି ଜଳରୂପେ ପାନକରି ତୃଷା ମେଣ୍ଟାନ୍ତି । ଆଜାଦ ସେନାଙ୍କୁ ଅତି ଦୁର୍ଦ୍ଦିନରେ କିପରି ଜୀବନ ଧାରଣ କରିବାକୁ ହେବ ସେଥିପାଇଁ ଆଗରୁ ତାଲିମ ଦିଆହୋଇଥିଲା ।

ଇଂରେଜ ସେନା ମହାଦର୍ପରେ ବର୍ମା ଆକ୍ରମଣ କରିବା ପରେ ୧୯୪୫ ଏପ୍ରିଲ ୨୩ ତାରିଖ ଦିନ ଜାପାନୀ ସେନାପତି ବର୍ମା ଓ ରେଙ୍ଗୁନ ଛାଡ଼ି ଚାଲିଗଲେ । ଆଜାଦ ହିନ୍ଦ ଫୌଜର ସୈନ୍ୟମାନେ ସେଠାର ଲୋକଙ୍କ ତତ୍ତ୍ୱ ନେବାପାଇଁ ନିଜର ଜୀବନକୁ ପଣ କରି ସେଠାରେ ରହିବା ପାଇଁ ଜିଦ୍ ଧରିଲେ । ସେମାନଙ୍କୁ ବହୁତ ବୁଝାଶୁଝା କଲା ପରେ ଜେନେରାଲ ଲୋକନାଥନ୍‌ଙ୍କ ଅଧିନାୟକତ୍ୱରେ ଛଅ ହଜାର ଆଜାଦ ହିନ୍ଦ ସେନା ସେଠାରେ ରଖି ସେପର ସହକାରୀ ସଚିବପତି ଜେ. ଏନ. ଭାଦୁରୀଙ୍କ ଉପରେ ସେଠାର ସମସ୍ତ ଦାୟିତ୍ୱଦେଇ ୧୯୪୫ ଏପ୍ରିଲ ୨୪ ତାରିଖ ଦିନ ନେତାଜୀ ସୁଭାଷ ତାଙ୍କର ଅସ୍ଥାୟୀ ସରକାର ଓ ଅନ୍ୟମାନଙ୍କୁ ଧରି ବର୍ମା ଛାଡ଼ିଲେ ।

ନେତାଜୀ ବର୍ମା ଛାଡ଼ିବାବେଳେ ହିନ୍ଦ୍ ଫୌଜର ଅଫିସର ଓ ସୈନ୍ୟଙ୍କ ପ୍ରତି ତାଙ୍କର ଶେଷ ବାର୍ତ୍ତା ଦେଇଗଲେ — "୧୯୪୪ ଫେବୃୟାରୀଠାରୁ ଏହି ବ୍ରହ୍ମଦେଶରେ ଆପଣମାନେ ବୀରୋଚିତ ସଂଗ୍ରାମ ଚଳାଇ ଆସିଛନ୍ତି, ଏବେବି ଚଳାଉଛନ୍ତି । ସେହି ବ୍ରହ୍ମଦେଶ ଆଜି ମୁଁ ଛାଡ଼ି ଯାଉଛି । ପ୍ରାଣର କି ବେଦନାରେ ମୁଁ ଏ ସ୍ଥାନ ଛାଡ଼ି ଯାଉଛି ତାହା କହିହେବ ନାହିଁ ।

ଇମ୍ଫାଲ ଓ ବ୍ରହ୍ମଦେଶରେ ଆମର ସ୍ୱାଧୀନତା ସଂଗ୍ରାମର ପ୍ରଥମ ଚେଷ୍ଟା ବ୍ୟର୍ଥ ହୋଇଛି; କିନ୍ତୁ ଏହା ପ୍ରଥମ ଚେଷ୍ଟା ମାତ୍ର । ଏହାପରେ ବାରମ୍ବାର ବହୁ ଚେଷ୍ଟା କରିବାକୁ ହେବ । ମୁଁ ନିତ୍ୟ ଆଶାବାଦୀ, କୌଣସି ଅବସ୍ଥାରେ ମୁଁ ପରାଜୟକୁ ମାନିନେବି ନାହିଁ । ଇମ୍ଫାଲର ସମର ଭୂଇଁରେ, ଆରାକାନର ଅରଣ୍ୟରେ ଓ ବ୍ରହ୍ମଦେଶର ତେଲ ଖଣି ଓ ଅନ୍ୟାନ୍ୟ

ଅଞ୍ଚଳରେ ଶତ୍ରୁ ବିରୁଦ୍ଧରେ ଆମ ସେନାବାହିନୀର ବୀରତ୍ୱ ଆମର ଇତିହାସରେ ଚିରକାଳ ଲେଖା ରହିବ ।

ଇନକିଲାବ ଜିନ୍ଦାବାଦ୍

ଜୟହିନ୍ଦ୍

ଖାଦ୍ୟପେୟର ଅଭାବ, ଦୁରୁହ ପଦଯାତ୍ରା ଓ ନିଦ୍ରାଭାର ଧକ୍କାରେ ନବକୁମାର ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଥିଲେ । ଇମ୍ଫାଲରୁ ଫେରିଲାବେଳେ ବାଟରେ ଇଂରେଜସେନା ଉପରୁ ଉଡ଼ାଜାହାଜରେ ବେଳେ ବେଳେ ବୋମା ବର୍ଷଣ କରୁଥିଲେ । ଗୋଟିଏ ବିସ୍ତୀର୍ଣ୍ଣ ପ୍ରାନ୍ତର ଅତିକ୍ରମ କରୁଥିବାବେଳେ ବୋମା ବର୍ଷଣ ହେଲା । ଦଉଡ଼ି ପଳାଇ ଯାଇ କୌଣସି ନିରାପଦ ସ୍ଥାନରେ ଆଶ୍ରୟ ନେବାକୁ ତାଙ୍କ ପାଦରେ ଆଉ ବଳ ନଥିଲା । ସେ ସେଇଠାରେ ଉଚ୍ଚ ଘାସବଣ ଭିତରେ ଯୋଡ଼ମାଇ ପଡ଼ିଲେ । ବୋମାର କେତେକାଂଶ ତାଙ୍କ ଡାହାଣ ହାତ ଓ ଡାହାଣ ଚକ୍ଷୁରେ ବାଜିଲା । ସେ ସେଠାରେ କିଛି ସମୟ ନିର୍ଜୀବ ହୋଇ ପଡ଼ିରହିଲା ପରେ ବହୁ କଷ୍ଟରେ ରକ୍ତାକ୍ତ ଶରୀରରେ ଉଠି ଠିଆହେଲେ । ତାଙ୍କର ଜଣେ ଦୁଇଜଣ ସଙ୍ଗୀ (ସୈନ୍ୟ) ପଛରୁ ଆସି ତାଙ୍କ କ୍ଷତରେ କନା ବାନ୍ଧି ତାଙ୍କୁ ଧରାଧରି କରି ସଙ୍ଗରେ ଆଣି ବର୍ମା ଉପକଣ୍ଠର ଆଜାଦହିନ୍ଦ୍ ସେନା ଛାଉଣୀରେ ବହୁକଷ୍ଟରେ ପହଞ୍ଚାଇ ଦେଲେ ।

ସେଠାରୁ ରେଙ୍ଗୁନସ୍ଥିତ ହିନ୍ଦ ଫୌଜ ହସପିଟାଲକୁ ନିଆଯାଇ ତାଙ୍କର ଚିକିତ୍ସା ହେବାରେ ସେ ସୁସ୍ଥ ଅନୁଭବ କଲେ; କିନ୍ତୁ ତାଙ୍କର ଡାହାଣ ହାତର ହାଡ଼ଟି ଭାଙ୍ଗି ଚୂନା ହୋଇଯାଇଥିବାରୁ ସେଇଟି ପ୍ରାୟ ପଙ୍ଗୁ ହୋଇଯାଇଥିଲା ଓ ଡାହାଣ ଚକ୍ଷୁଟି ପୂରା ନଷ୍ଟ-ହୋଇଯାଇଥିଲା ।

ଜାପାନର ପଛଘୁଞ୍ଚା ଓ ବ୍ରିଟିଶ କର୍ତ୍ତୃକ ବର୍ମାର ପୁନର୍ଦଖଲର ଦୀର୍ଘ ସମୟ ତକ ତାଙ୍କୁ ରେଙ୍ଗୁନରେ ଲୋକନାଥନଙ୍କ ସେନାବାହିନୀରେ ରହି ରେଙ୍ଗୁନ ସହରକୁ ଅରାଜକତାରୁ ରକ୍ଷାକରିବାକୁ ପଡ଼ିଥିଲା ।

ଛତିଶ ନମ୍ବର ବ୍ରିଟିଶ ଭାରତୀୟ ପଦାତିକ ବାହିନୀର ବ୍ରିଗାଡ଼ିୟର ମିଷ୍ଟର ଲଫ୍ଟାଡ଼ାର ରେଙ୍ଗୁନ ଦଖଲ ପରେ ସେଠାର ଭାରପ୍ରାପ୍ତ ଅଫିସରରୂପେ ନିଯୁକ୍ତ ହୋଇ ଆଜାଦ ହିନ୍ଦ୍ ସଂଘ ସରକାରୀ ସଭାପତି ଭାଦୁରିଙ୍କ ସଙ୍ଗେ ଦେଖାକରି, ସଂଘ ରେଙ୍ଗୁନରେ ଥିବା ଜନହିତକର ଅନୁଷ୍ଠାନଗୁଡ଼ିକ ଚଳାଇବାରେ ତାଙ୍କର ଆପତ୍ତି ନାହିଁ ବୋଲି ଜଣାଇଲେ; କିନ୍ତୁ ମେ ୨୮ ତାରିଖରେ ବ୍ରିଟିଶ ସାମରିକ କର୍ତ୍ତୃପକ୍ଷ ହଠାତ୍ ଭାଦୁରିଙ୍କୁ ଗିରଫ କଲେ ।

ତା'ପରେ ଆଜାଦ ହିନ୍ଦ୍ ଫୌଜର ସୈନ୍ୟମାନଙ୍କୁ ଇଂରେଜ ସୈନ୍ୟ ଦଳ ଦଳ କରି ଧରି ସେମାନଙ୍କ ସାମରିକ ବିଚାର ପାଇଁ ଭାରତକୁ ପଠାଇବାରେ ଲାଗିଲେ । ସେଥିରେ ନବକୁମାର ପୁଣି ବନ୍ଦୀହୋଇ ଦିଲ୍ଲୀ ନିଆଗଲେ । ବିଜେତା ଭାବରେ ନଆସି ଆଜାଦ ହିନ୍ଦ୍ ସେନା ସେମାନଙ୍କ ପ୍ରିୟ ଦିଲ୍ଲୀକୁ ବିଜିତ ବନ୍ଦୀ ଭାବରେ ଆସି ଶେଷରେ ଲାଲକିଲା କାରାଗାରର

ସାମରିକ ଅଦାଲତରେ ରାଜଦ୍ରୋହ ବିଚାରର ସମ୍ମୁଖୀନ ହେଲେ । ରାଜଦ୍ରୋହ ନରହତ୍ୟା ଓ ମିତ୍ରସେନା ହତ୍ୟାରେ ସାହାଯ୍ୟକାରୀ ବୋଲି ଆଜାଦ ହିନ୍ଦ୍ ଫୌଜର ସୈନିକମାନଙ୍କର ୧୯୪୫ ନଭେମ୍ବର ପାଞ୍ଚ ତାରିଖରୁ ବ୍ରିଟିଶ ସାମରିକ ଅଦାଲତ ଦ୍ୱାରା ବିଚାର ଚାଲିଲା । ସେମାନଙ୍କର ମୁକ୍ତି ଦାବୀ କରି କଲିକତାର ଜନତା ଇଂରେଜ ସରକାରଙ୍କ ଚାଲି ଆଗରେ ଛାତି ଦେଖାଇଲେ । ଭାରତର ବିଭିନ୍ନ ପୁରପଲ୍ଲୀର ଜନତା ତା'ର ପ୍ରତିଧ୍ୱନି ଦେଲେ ।

ବନ୍ଦୀ ସୈନ୍ୟମାନଙ୍କ ଭିତରେ (ଆଜାଦ ହିନ୍ଦ୍ ଫୌଜରେ) ଇଂରେଜ ସରକାରଙ୍କ ଭାରତୀୟ ସୈନ୍ୟମାନଙ୍କର ବହୁ ଭାଇ ବନ୍ଧୁ ରହିଥିଲେ । ହିନ୍ଦ୍ ଫୌଜ ସୈନ୍ୟଙ୍କ ବିଚାର ହେବାରେ ସରକାରୀ ସୈନ୍ୟମାନେ ଅସ୍ଥିର ହୋଇ ଉଠିଲେ । ନିଜ ସୈନ୍ୟମାନଙ୍କ ଭିତରେ ବିଦ୍ରୋହ ଆଶଙ୍କା କରି ବିଚାରର ମିଥ୍ୟା କୋହଲ କରି ବନ୍ଦୀମାନଙ୍କୁ ବିଚାରବେଳେ ଓକିଲ ଦେଇ ଲଢ଼ିବାର ସୁବିଧା ଦେଲେ ।

ବହୁ ବଡ଼ ବଡ଼ ଆଇନଜୀବୀ ସ୍ୱେଚ୍ଛାପ୍ରଣୋଦିତ ହୋଇ ହିନ୍ଦ୍ ଫୌଜ ପକ୍ଷରୁ ଓକିଲ ହୋଇ ଲଢ଼ିବାକୁ ବାହାରି ପଡ଼ିଲେ । ଏପରିକି ବହୁବର୍ଷ ଓକିଲାତି ଛାଡ଼ିବାପରେ ପଣ୍ଡିତ ଜହରଲାଲ ନେହେରୁ ପୁଣି ବାରିଷ୍ଟରୀ କଳା ପୋଷାକ ପିନ୍ଧି ହିନ୍ଦ୍ ଫୌଜଙ୍କ ପାର୍ଶ୍ୱ ଓକିଲ ଭାବେ ଲଢ଼ିବାକୁ ଠିଆହେଲେ ।

ଭାରତର ଗଗନପବନ ତୁଳସ୍ଥୂଳ ହେଲା । ଇଂରେଜ ସରକାର ସେ ସୈନ୍ୟମାନଙ୍କୁ ଦଣ୍ଡଦେବାକୁ ସାହସ କରିପାରିଲେ ନାହିଁ, ଲୋକଙ୍କ ରାୟ ମାନିନେବାକୁ ବାଧହେଲେ । ସୁଭାଷ ସେନା ନିର୍ଦ୍ଦୋଷରେ ମୁକ୍ତିଲାଭ କଲେ । ସେମାନଙ୍କ ସମ୍ବର୍ଦ୍ଧନା ଓ ଗୁଣଗାନରେ ଦେଶ ପଡ଼ିଲା ଉଠିଲା ।

ନବକୁମାର ସୁଭାଷସେନା ଭାବରେ ମୁକ୍ତିର ଆଦେଶ ପାଇଲେ ମଧ୍ୟ ଜଣେ ପଳାତକ ବନ୍ଦୀ ଭାବରେ ତାଙ୍କର ପୁନର୍ବିଚାର ହୋଇ ତାଙ୍କୁ ପୁଣି ଆଣ୍ଡାମାନ ଜେଲକୁ ପଠାଇ ଦିଆଗଲା । ନବକୁମାର ଗରିବ ବନ୍ଧୁହୀନ ଓଡ଼ିଆ ନ ହୋଇ ଅନ୍ୟ ପ୍ରଦେଶର ପ୍ରଭାବଶାଳୀ ବ୍ୟକ୍ତିଙ୍କ ନିଜ ଲୋକ ହୋଇଥିଲେ ହୁଏତ ତାଙ୍କ ସମ୍ବନ୍ଧରେ ବିଚାର ଅନ୍ୟ ପ୍ରକାର ହୋଇଥାଆନ୍ତା । ତାଙ୍କର ସେ ଦଣ୍ଡରେ ଉଁ କି ଚୁଁ କହିବାକୁ କେହି ନଥିଲେ । ସେ ନୀରବରେ ସେ ଦଣ୍ଡ ସହିବାକୁ ବାଧହେଲେ ।

## ଷୋହଳ

ଭିଖାରୀ ବାବୁଙ୍କ ଆଶ୍ରମ ବେଶ୍ ବଢ଼ି ଚାଲିଥିଲା । ସୂତାକଟା, ଲୁଗାବୁଣା ପ୍ରଭୃତି ସଙ୍ଗେ ପ୍ରସୂତି ବିଭାଗ, ପ୍ରୌଢ଼ ସ୍କୁଲ ଓ ପିଲାଙ୍କ ସ୍କୁଲ ମଧ୍ୟ ଚାଲିଥିଲା । ଭିଖାରୀ ବାବୁଙ୍କ ବାର୍ଦ୍ଧକ୍ୟ

ଯୋଗୁ ସେ ଶରଧା ଦେବୀ ଓ ଅନ୍ୟ ସହକର୍ମୀଙ୍କ ଉପରେ ଆଶ୍ରମ କାର୍ଯରେ ନିର୍ଭର କରୁଥିଲେ । ଶରଧା ଦେବୀ ଶକୁନ୍ତଳା ଓ ଶିକ୍ଷାର ଭାର ନେଇ ସେସବୁ ସୁଚାରୁ ରୂପେ ଚଳାଉଥିଲେ । ପିଲାଙ୍କ ଡାହାଣୀ ଡର ଛାଡ଼ିଯାଇଥିଲା । ଗାଁଗଣ୍ଡାର ସ୍ତ୍ରୀ ଲୋକମାନେ ମଧ୍ୟ ପ୍ରସୂତି ବିଦ୍ୟାରେ ତାଙ୍କ ଦକ୍ଷତା ପାଇଁ ତାଙ୍କର ଦ୍ୱାରସ୍ଥ ହୋଇ ତାଙ୍କ ମଧୁର ବ୍ୟବହାରରେ ମୁଗ୍ଧ ହେଉଥିଲେ । ତାଙ୍କ ନାମରେ କୁସ୍ତାପୁରର ଆପେ ଆପେ ଉଭାଇଯାଇ ଗୃହଅଡ଼େ ସୁନାମ ପ୍ରଚଳିତ ହୋଇଥିଲା । ସେ ବାଟରେ ଗଲାଗଲାବେଳେ 'ଶରଧାମା' କହି ପିଲାମାନେ ତାଙ୍କ ପାଖକୁ ଦଉଡ଼ିଆସି ଗୃହଅଡ଼େ ବେଢ଼ିଯାଉଥିଲେ । ବଡ଼ବଡ଼ମାନେ ତାଙ୍କୁ ମୁଣ୍ଡ ଲୁଆଁଇ ନମସ୍କାର କରୁଥିଲେ ।

ଯୁଦ୍ଧ ସମୟରେ ଦେଶୀ ରାଜନୀତିର ଅବସ୍ଥା ପୂରା ବଦଳିଗଲା । ଦ୍ୱିତୀୟ ମହାସମର ଠିକ୍ ପୂର୍ବରୁ ଓ ଆରମ୍ଭରେ କଂଗ୍ରେସ ଦଳ ସ୍ୱାଧୀନତା ପ୍ରଶ୍ନ ଉଠାଇ, ପ୍ରତ୍ୟକ୍ଷ ବିରୋଧ ନକଲେ ମଧ୍ୟ ଛୁଟିଲା ଭଳି ପ୍ରାଦେଶିକ ସରକାରମାନଙ୍କର ମନ୍ତ୍ରୀମଣ୍ଡଳମାନଙ୍କରୁ ଓହରି ଆସିଥିଲେ; କିନ୍ତୁ କଂଗ୍ରେସ ସଭାପତି ସୁଭାଷଙ୍କ କଥାରେ ଇଂରେଜଙ୍କ ବିରୁଦ୍ଧରେ ସମ୍ପୂର୍ଣ୍ଣ ସଂଗ୍ରାମ ଚଳାଇବାକୁ ରାଜି ନହୋଇ ତାଙ୍କୁ ସଭାପତି ପଦରୁ ଓହରାଇଦେଲେ ।

ସୁଭାଷ କଂଗ୍ରେସ ଛାଡ଼ି ଅଗ୍ରଗାମୀ ଦଳ ବା ଫରଓ୍ୱାର୍ଡ଼ ବ୍ଲକ ଗଢ଼ି ସଂଗ୍ରାମ ପାଇଁ ପ୍ରସ୍ତୁତ ହେବାକୁ ଦେଶକୁ ଆହ୍ୱାନ ଦେଲେ । ସରକାରରୁ ଓହରି ନଯାଇ କ୍ଷମତା ହାତରେ ରଖି ଇଂରେଜ ଶତ୍ରୁଙ୍କ ଭାରତର ଆକ୍ରମଣବେଳେ ଇଂରେଜଙ୍କଠାରୁ କ୍ଷମତା ପୂରା ଛଡ଼ାଇ ନେବାପାଇଁ ଝାଙ୍କିବସିବାକୁ ଯୋଜନା କଲେ । ବିଶେଷତଃ ଓଡ଼ିଶା, ବଙ୍ଗଳା ଓ ଆସାମ ସରକାରକୁ ଜାତୀୟତାବାଦୀମାନେ କଳେବଳେ କୌଶଳେ ହାତରେ ରଖିବାକୁ ପରାମର୍ଶ ଦେଲେ ।

ଇଂରେଜ ସରକାର ଦେଶରେ ହିନ୍ଦୁ ମୁସଲମାନ ଭେଦଭାବ ବଢ଼ାଉଥିବାରୁ କଂଗ୍ରେସ ଓ ମୁସଲିମ ଲିଗର ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ିବାପାଇଁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ମୁସଲମାନ ନବାବ ସିରାଜଦୌଲାଙ୍କ ନାମକୁ କଳଙ୍କିତ କରି କଲିକତାରେ ଇଂରେଜମାନେ ଗଢ଼ିଥିବା ଇଂରେଜ ହତ୍ୟାର ସ୍ମାରକ ସ୍ୱରୂପ 'ହଲଓ୍ୱେଲ ସ୍ତୁପ' ସ୍ତମ୍ଭକୁ ଭାଙ୍ଗିବାପାଇଁ ହିନ୍ଦୁ ଓ ମୁସଲମାନଙ୍କୁ ଏକାଠି କରି ଆନ୍ଦୋଳନ କରି କାରାବରଣ କଲେ ।

ଭାରତର ତୁଙ୍ଗ ନେତାମାନଙ୍କର ନିଷ୍କ୍ରିୟତାରେ ବ୍ୟଥିତ ହୋଇ ବନ୍ଧୁ ସାହାଯ୍ୟ ଆଶାରେ ଦେହ ଖରାପ ପାଇଁ ଜେଲରୁ ଖଲାସ ହୋଇ ନିଜ ଘରେ କଡ଼ାପହରାରେ ଅନ୍ତରୀଣ ବନ୍ଦୀଥିବା ଅବସ୍ଥାରେ ବ୍ରିଟିଶ ସରକାରଙ୍କ ଆଖିରେ ଧୂଳି ପକାଇ ଦେଶଛାଡ଼ି ବାହାରିଗଲେ ।

ଯୁଦ୍ଧ ସମୟରେ ମହାତ୍ମାଗାନ୍ଧି ତାଙ୍କର ଗଠନମୂଳକ କର୍ମୀଙ୍କୁ ବାଛି ବାଛି ପ୍ରତିବାଦ ସ୍ୱରୂପ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କଲେ । ସେଥିରେ ଯୋଗଦେଇ ଉତ୍କଳ ବାବୁଙ୍କ ପରି ନେତୃସ୍ଥାନୀୟ କର୍ମୀମାନେ କାରାଗାରରୁ ଫେରିଲେ । ଦେଶର ଯୁବଜନତା ଢ଼ଙ୍ଗକୁ

ହିନ ସ୍ୱାଧୀନତା ପ୍ରାପ୍ତି ପାଇଁ ଆନ୍ଦୋଳନ କରିବାକୁ ଅସମ୍ଭାଳ ହୋଇଉଠିଲେ । ଯୁଦ୍ଧରେ ଇଂରେଜ ପକ୍ଷର ପରାଜୟ ଓ ପଛଘୁଞ୍ଚା, ଜର୍ମାନ ରେଡ଼ିଓରୁ ସୁଭାଷଙ୍କ ବିପ୍ଳବ ବାର୍ତ୍ତା ଯୁବଗୋଷ୍ଠୀଙ୍କୁ ନଚାଇବାକୁ ଲାଗିଲା ।

୧୯୪୨ ଅଗଷ୍ଟ ମାସରେ କଂଗ୍ରେସର ତୁଙ୍ଗନେତାମାନେ ମିଳିତ ହୋଇ ଦେଶର ପରିସ୍ଥିତି ଓ କଂଗ୍ରେସର କର୍ତ୍ତବ୍ୟ ବିଷୟରେ ଆଲୋଚନା ଆରମ୍ଭ କଲେ । ସୁଭାଷ ଅଜ୍ଞାତ-ବାସରୁ ରେଡ଼ିଓଯୋଗେ ମହାତ୍ମାଗାନ୍ଧିଙ୍କୁ ଦେଶର ପିତା ଭାବରେ ସମ୍ବୋଧନ କରି ସଂଗ୍ରାମ ଆରମ୍ଭ କରିବା ପାଇଁ ବିକଳ ପ୍ରାର୍ଥନା କଲେ ଓ ଅନ୍ୟାନ୍ୟ ନେତାମାନଙ୍କୁ ମଧ୍ୟ ପ୍ରାଣସ୍ପର୍ଶୀ ନିବେଦନ କଲେ । କଂଗ୍ରେସ ନେତାମାନେ ଆଉ ନିଶ୍ଚିନ୍ତ ହୋଇ ବସିରହିବା ସମ୍ଭବ ନୁହେଁ ଜାଣି ସ୍ୱାଧୀନତା ଆନ୍ଦୋଳନ କରିବା ପାଇଁ 'ଭାରତ ଛାଡ଼' ପ୍ରସ୍ତାବ ପାଶ୍‌କଲେ । ପ୍ରସ୍ତାବ ପାଶ୍‌ହେବା ସଙ୍ଗେ ସଙ୍ଗେ ଇଂରେଜ ସରକାର ଗାନ୍ଧି ଓ ଅନ୍ୟ ତୁଙ୍ଗନେତାମାନଙ୍କୁ ବନ୍ଦୀକରି କାରାଗାରରେ ନିକ୍ଷେପ କଲେ । ଇଂରେଜ ସରକାରଙ୍କ ଦମନନୀତିରେ ଲୋକେ ଦବିଗଲେ ନାହିଁ । ଦେଶର ଚାରିଆଡ଼େ ବିଦ୍ରୋହ ନିଆଁ ଜଳି ଉଠିଲା ।

ଆନ୍ଦୋଳନ ଅହିଂସା ବାଟରୁ ଓହ୍ଲାଇ ସୁଭାଷଙ୍କ କଳ୍ପିତ ସଂତ୍ରାସବାଦୀ ଆନ୍ଦୋଳନରେ ପରିଣତ ହେଲା । ଦେଶରେ ଜାଳାପୋଡ଼ା ଭଙ୍ଗାରୁଜା ସରକାରୀ କଳକୁ ସମ୍ପୂର୍ଣ୍ଣ ଅଚଳ କରିବାକୁ ବସିଲା ।

ଦେଶ ଭିତରେ ଆନ୍ଦୋଳନ ସାଙ୍ଗକୁ ଛନ୍ଦିହିନ ପରେ ମାଳୟ ଓ ବର୍ମାରେ ସୁଭାଷ ବାହିନୀର ଜୟଯାତ୍ରା ବ୍ରିଟିଶ ପାର୍ଲିଆମେଣ୍ଟକୁ ଚହଲାଇ ଦେଲା । ଇଂରେଜ ଶାସକ ଓ ରାଜନୀତିଜ୍ଞମାନଙ୍କର ଭାରତକୁ ଆଉ ପରାଧୀନ କରି ରଖି ହେବନାହିଁ ବୋଲି ଦୃଢ଼ ଧାରଣା ହେଲା । ଦେଶକୁ ଶାନ୍ତ କରିବାକୁ ଇଂରେଜ ସରକାର ଶେଷରେ କଂଗ୍ରେସର ନେତୃବର୍ଗ ଓ ଆନ୍ଦୋଳନକାରୀମାନଙ୍କୁ କାରାମୁକ୍ତ କରି ସ୍ୱାଧୀନତା ଦେବାର ପ୍ରତିଶ୍ରୁତି ଦେଇ ନେତାମାନଙ୍କ ସହିତ କଥାବାର୍ତ୍ତା ଚଳାଇଲେ ।

ବ୍ରିଟିଶ ସରକାର ବିଲାତରୁ ପ୍ରତିନିଧି ଦଳ ପଠାଇ ଭାରତର ସବୁ ଦଳର ନେତା-ମାନଙ୍କ ସଙ୍ଗେ ଆଲୋଚନା ଆରମ୍ଭ କଲେ । ଦେଶରେ ପୁଣି ନିର୍ବାଚନ ହୋଇ ପ୍ରଦେଶ-ମାନଙ୍କରେ ପୁଣି ଦେଶୀ ସରକାର ସବୁ ଗଢ଼ାଗଲା । କେନ୍ଦ୍ରରେ କଂଗ୍ରେସ ଓ ମୁସଲମ ଲିଗକୁ ନେଇ ମିଳିତ ସରକାର ଗଢ଼ି ଦେଶର ଶାସନ ଦାୟିତ୍ୱ ହସ୍ତାନ୍ତର ପାଇଁ ଆଲୋଚନା କରାଗଲା ।

ସ୍ୱାଧୀନତା ଆସନ୍ନ ଦେଖି ସୁବିଧାବାଦୀମାନେ କଂଗ୍ରେସରେ ପଶିବାକୁ ଆରମ୍ଭ କଲେ । ସଦନ ବାବୁ ତାଙ୍କ ରାୟସାହେବ ଉପାଧିକୁ ପ୍ରତ୍ୟାଖ୍ୟାନ କରି ତାଙ୍କର ସେ ତ୍ୟାଗପାଇଁ ଅଭ୍ୟର୍ଥନା ସଭାର ଆୟୋଜନ କରାଇ ସଦଳବଳେ କଂଗ୍ରେସରେ ପଶି ସ୍ଥାନୀୟ କଂଗ୍ରେସର ସଭାପତି ଭାବରେ ନିର୍ବାଚିତ ହେଲେ । ଜମିଦାରଙ୍କ ପୁଅ କଂଗ୍ରେସରେ ମିଶି ନିର୍ବାଚନରେ କଂଗ୍ରେସ ଟିକଟ ପାଇଁ ଦରଖାସ୍ତ କଲେ । ତାଙ୍କର ପଇସା ଓ ପ୍ରତିପତ୍ତି ଯୋଗୁ ନିର୍ବାଚନରେ

ନିର୍ମଳଭର ବେଶି ଆଶାଥିବାରୁ ଜଣେ ପୁରୁଣା ଦେଶପ୍ରେମୀଙ୍କୁ ଟିକଟ ନମିଳି ତାଙ୍କୁ ବଗ୍ରଗଲା । ଅବଶ୍ୟ ଏପରି ବଗ୍ରବଚ୍ଛ ଦେଶସାରା ବହୁତ ସ୍ଥାନରେ ହୋଇଥିଲା । ବହୁ ରଜା ଜମିଦାର କଂଗ୍ରେସରେ ମିଶି କଂଗ୍ରେସ ପକ୍ଷରୁ ନିର୍ବାଚନ ଲଢୁଥିଲେ । ଦଶପଲ୍ଲା ମେଳୀର ପୂଜ୍ୟ ବପ୍ଳବୀ ନେତା ଗୋବନ୍ଦ ମିଶ୍ର ଯେ କି ସାବରମତୀ ଆଶ୍ରମରେ ରହି ଓଡ଼ିଶାର ନେତାଙ୍କୁ ଗାନ୍ଧିଙ୍କୁ ଚହ୍ନାଇ ଓଡ଼ିଶାରେ କଂଗ୍ରେସର ଭିତ୍ତିସ୍ଥାପନ କରିଥିଲେ, ତାଙ୍କୁ ନିର୍ବାଚନରେ କଂଗ୍ରେସ ଟିକଟ ନମିଳି ଦଶପଲ୍ଲା ରଜାଙ୍କୁ ମିଳିଥିବାରୁ ସେ ତାଙ୍କ ପୁସ୍ତକରେ କ୍ଷୋଭ ପ୍ରକାଶ କରିଥିଲେ ।

ଜମିଦାରଙ୍କ ପୁଅ ସେ ନିର୍ବାଚନରେ ବହୁ ଭୋଟ ଅଧିକ ପାଇ ନିର୍ବାଚିତ ହୋଇ ମନ୍ତ୍ରୀ ଆସନ ଅଳଂକୃତ କଲେ ।

ଭିଖାରି ବାବୁ ମାନସିକ ଚନ୍ତା ଓ ବାର୍ଦ୍ଧକ୍ୟର ଶାରୀରିକ ଦୁର୍ବଳତାରେ ଅବଶ ହୋଇପଡ଼ିଥିଲେ । ନବକୁମାର ଜୀବିତ ଅଛନ୍ତି ଓ ସୁଭାଷବାହିନୀରେ ଯୋଗଦେଇ ବୀର ଭାବରେ ଯୁଦ୍ଧକରି ଦିଲ୍ଲୀରେ ତାଙ୍କ ବଗ୍ରୁହ ଚାଲିଥିବା ସମ୍ବାଦ ପାଇ ଆନନ୍ଦର ଆଧିକ୍ୟ ଯୋଗୁ ହଠାତ୍ ତାଙ୍କ ହୃତ୍‌ପିଣ୍ଡର ସ୍ପନ୍ଦନ ବନ୍ଦ ହୋଇ ସେ ସ୍ୱର୍ଗାରୋହଣ କଲେ ।

ଆଶ୍ରମବାସୀ ତାଙ୍କର ଶବକୁ ଖଣ୍ଡିଏ ଖଦଡ଼ ଲୁଗାରେ ଘୋଡ଼ାଇ ଶୋଭାଯାତ୍ରାରେ ଚାଲିଲାବେଳେ ଶତ ଶତ ହରିଜନ ଓ ଦରିଦ୍ର ଜନତା ସେଥିରେ ଯୋଗଦେଇ ଆଖିର ଲୋତକ ଅର୍ଘ୍ୟ ସମର୍ପଣ କରିଥିଲେ । ଶ୍ମଶାନରେ ତାଙ୍କ ଶବସଂସ୍କାର ହେବାପରେ ତାଙ୍କ ଜୁଇଗାତ ଉପରେ ତାଙ୍କର ଗୁଣଗ୍ରାହୀ ଲୋକେ ଛୋଟିଆ ସ୍ମୃତି ମଣ୍ଡପଟିଏ ନିଜ ହାତରେ ଗଢ଼ି ସେଥିରେ ସବୁବେଳେ ଜଳିରହି ସେ ଖଣ୍ଡମଣ୍ଡଳକୁ ସାହସ ଓ ସାନ୍ତ୍ୱନାର ଆଲୋକ ବକାରଣ କରିବା ପାଇଁ ଦୀପଟିଏ ଜାଳି ରଖିଥିଲେ ।

ଭିଖାରି ବାବୁଙ୍କ ତିରୋଧାନ ପରେ ଆଶ୍ରମର ସମସ୍ତ ଭାର ଶରଧା ଦେବୀଙ୍କ ଉପରେ ପଡ଼ିଲା । ଆଶ୍ରମ କାର୍ଯ୍ୟ ପ୍ରତି ଚଞ୍ଚଳଚିତ୍ତ ଯୁବକମାନେ ଆକୃଷ୍ଟ ହେଉନଥିଲେ । ବୃଦ୍ଧ ବୃଦ୍ଧା କର୍ମୀମାନେ ଅକ୍ଷମ ହୋଇ ଆସ୍ତେ ଆସ୍ତେ ଆଶ୍ରମ ଛାଡ଼ୁଥିଲେ । ଅନେକ କାର୍ଯ୍ୟକ୍ରମ ପ୍ରାୟ ବନ୍ଦ ହୋଇଯାଇଥିଲା । ଶରଧା ଦେବୀ ଧୀର ଚିତ୍ତରେ ତାଙ୍କ ସେବା ଓ ଶିକ୍ଷା କାର୍ଯ୍ୟକ୍ରମକୁ ନିଜେ ଅକ୍ଲାନ୍ତ ପରିଶ୍ରମ କରି କୌଣସିମତେ ଚଳାଇଲେ ।

ଆଶ୍ରମଟି ଜମିଦାରଙ୍କ ଜମି ଉପରେ ଥିଲା । ସ୍ଥାନୀୟ ମନ୍ତ୍ରୀମହୋଦୟ ସଦନବାବୁଙ୍କ ପରାମର୍ଶରେ ସେ ସ୍ଥାନଟି ସରକାରଙ୍କୁ ବକ୍ରି କରି ସେଠାରେ ଗୋଟିଏ ନୂତନ ଧରଣର ଶିଳ୍ପକେନ୍ଦ୍ର ପ୍ରତିଷ୍ଠା କରିବାର ବ୍ୟବସ୍ଥା କରାଇନେଲେ । ସେଥିପାଇଁ ବାଧା ଦେବାକୁ କେହି ନଥିଲେ । ଆଶ୍ରମଟି ଉଠିଗଲା ।

ଶରଧା ଦେବୀ ଶ୍ୱଶୁରଙ୍କ ଘରଡିହ ଉପରେ ଛୋଟିଆ କୁଡ଼ିଆ ଖଣ୍ଡିଏ ବାନ୍ଧି ସେଠାରେ ବଦ୍ୟାଦାନ ଓ ପ୍ରସୂତି ଚକିତ୍ସା ପ୍ରଭୃତି ପୂର୍ବପରି ଚଳାଇଲେ । ରୋଗୀସେବା ପାଇଁ ତାଙ୍କ ଦ୍ୱାର ସବୁବେଳେ ଉନ୍ମୁକ୍ତ । ରାତି ହେଉ ଦିନ ହେଉ ଯିଏ ଯେତେବେଳେ

ଖବର ଦେଲା, ଯେ ସବୁ କାମ ଛାଡ଼ି ରୋଗୀସେବା ପାଇଁ ବାହାରି ପଡ଼ନ୍ତି। ଖରା ବର୍ଷା ଝଡ଼କୁ ତାଙ୍କର ଖାତିର ନଥାଏ। ଦୂରବାଟକୁ ସାଇକେଲ ପଛରେ ବା ଟୋକେଇରେ ବସିଯିବାକୁ ମଧ୍ୟ ଆପତ୍ତି କରନ୍ତିନାହିଁ। ପ୍ରସୂତି ପାଇଁ ଅପେକ୍ଷା କରିହେବନାହିଁ। ତେଣୁ ସେ ଜ୍ୱରରେ ବା ଅନ୍ୟ ବେମାରରେ ପଡ଼ିଥିଲେ ମଧ୍ୟ ନଯାଇ ରହିପାରନ୍ତି ନାହିଁ। ତାଙ୍କୁ ଦେଖିବା କ୍ଷଣି ରୋଗୀ ମନରେ ଆଶା ଓ ସାହସ ପୂରିଯାଏ। ଗରିବ ମା' ଓ ଶିଶୁଙ୍କ ସେବାରେ ଦିନରାତି ନିଜକୁ ବୁଡ଼ାଇ ରଖି ସେ ନିଜର ସମସ୍ତ ଦୁଃଖ ଭୁଲିଯାଆନ୍ତି। ସବୁବେଳେ ପରଦୁଃଖରେ ଦୁଃଖିତ ହୋଇ ଦୁଃଖୀମାନଙ୍କୁ ସାନ୍ତ୍ୱନା ଦିଅନ୍ତି; କିନ୍ତୁ କାହା ଆଗରେ ନିଜ ଦୁଃଖ ପ୍ରକାଶ କରନ୍ତି ନାହିଁ। ବାପ ମା' କେହି ନଥିଲେ। ଭାଇ ଯାଇଥିଲେ, ଶ୍ୱଶୁର ଗଲେ। ସ୍ୱାମୀ ଥିଲେ ନଥିଲା ସମାନ। ସେ ସୀରତ୍ୱର ଟୀକା ଚିହ୍ନ ମଧ୍ୟ ମୁକ୍ତି ପାଇଲେ ନାହିଁ। ଆତ୍ମେ ଗଲା, ତଥାପି ସେ ଧୈର୍ଯ୍ୟଚ୍ୟୁତ ନହୋଇ, ସ୍ୱାମୀ ଓ ଶ୍ୱଶୁରଙ୍କ ସେବାରୁ ବଞ୍ଚିତ ହୋଇ, ଦରିଦ୍ରନାରାୟଣ ସେବାକୁ ବ୍ରତକରି ସେଇଥିରେ ଆନନ୍ଦଲାଭ କରନ୍ତି।

ସେ ନିଃସନ୍ତାନା; କିନ୍ତୁ ସେଥିପାଇଁ ତାଙ୍କର ଚିନ୍ତାନାହିଁ। ସେ ଶତ ଶତ ଶିଶୁଙ୍କୁ ନିଜ ହାତରେ ଜଗତକୁ ଆଣିଛନ୍ତି, ସେମାନଙ୍କର ପ୍ରଥମ କୁଆଁ ଶବ୍ଦ ଶୁଣିଛନ୍ତି। ବହୁ ବାଳକ ବାଳିକାଙ୍କୁ ଅଜାଣତରେ ଶିକ୍ଷା ଓ ସ୍ନେହ ଦାନକରି ବହୁ ସନ୍ତାନର ମାଆ ହୋଇପାରିଛନ୍ତି।

ଭିଖାରି ବାବୁ ଆରମ୍ଭ କରିଥିବା ହାଇସ୍କୁଲଟି ଗୋଟିଏ ବଡ଼ ସରକାରୀ ସ୍କୁଲରେ ପରିଣତ ହୋଇଛି; କିନ୍ତୁ ପୁରୁଣା ସ୍କୁଲର ଦେଶପ୍ରାଣ ଶିକ୍ଷକ ଆଉ ସେଠାରେ ନାହାନ୍ତି। ସେ ସ୍କୁଲରେ ଶିକ୍ଷାର ମହତ୍ତ୍ୱ ଆଉ ନାହିଁ, ଶୃଙ୍ଖଳା ବି ନାହିଁ। ଗତାନୁଗତିକ ଭାବେ ସିଏ ଚାଲିଛି।

ଗୋଟିଏ ସ୍କୁଲ ଚପରାଶୀ ପଦନ ବାବୁଙ୍କ ଦୁଆରେ ଡାକିଲା। ବୃଦ୍ଧ ପଦନ ବାବୁ ଖାଇଦେଲେ ବିଶ୍ରାମ ନେଉଥିଲେ। ବଡ଼ ବିରକ୍ତିର ସହିତ ଦୁଆର ଫିଟାଇଲେ। ଚପରାଶିଟି ନୂଆ ହେଡ଼ମାଷ୍ଟରଙ୍କ ଚିଠି ଖଣ୍ଡି ବଢ଼ାଇ ଦେଇ ଶୀଘ୍ର ଆସନ୍ତୁ ବୋଲି କହି ହାତଯୋଡ଼ି ଠିଆହେଲା।

ହେଡ଼ମାଷ୍ଟ୍ରେ ଲେଖିଛନ୍ତି ପିଲାମାନେ ତାଙ୍କୁ ଘେରାଉ କରି ରଖିଛନ୍ତି। ସାମିଆନା ଗେଟ୍ ପ୍ରଭୃତିର ଖଣ୍ଡସବୁ ଉପୁଡ଼ାଉପୁଡ଼ି କରୁଛନ୍ତି। ବିଶେଷତଃ କମ୍ୟୁନିଷ୍ଟ ଛାତ୍ର ଫେଡ଼େରେସନର ପିଲାମାନେ ଅନ୍ୟପିଲାଙ୍କୁ ମତାଇ ସ୍କୁଲର ଆସବାବ ପତ୍ରସବୁ ଭାଙ୍ଗାଫୋପଡ଼ା କରି ସ୍କୁଲକୁ ହୁଲସ୍ଥୂଳ କଲେଣି। ଅବସ୍ଥା ଅସମ୍ଭାଳ ହେବାରୁ ହେଡ଼ମାଷ୍ଟ୍ରେ ତାଙ୍କୁ ଶୀଘ୍ର ଆସି ସେ ପରିସ୍ଥିତିର ଦାୟିତ୍ୱ ଗ୍ରହଣ କରିବାପାଇଁ ଅନୁରୋଧ କରିଛନ୍ତି।

ଚପରାଶୀକୁ ଚାହିଁ ମୁରୁକି ମୁରୁକି ହସି ପଦନବାବୁ କହିଲେ "ମୁଁ ନାହିଁ କରୁଥିଲି, ମନ୍ତ୍ରୀ ସେ ଅପଦାର୍ଥଟାକୁ ଅନ୍ୟଠାରୁ ବଦଳି କରାଇ ଏଠାକୁ ହେଡ଼ମାଷ୍ଟ୍ରେ କରି ଆଣିଲେ। ସେ କେଉଁଠି ଭଲ ପାଠ ଜାଣେ! ହଇଓ, ଏତିକି ଛେରୁଆଟେ, କମ୍ୟୁନିଷ୍ଟ ବୋଲି ପିଲାଗୁଡ଼ାଙ୍କୁ

ଡରୁଛ, ପୁଣି ଅବସ୍ଥା ସମ୍ଭାଳିବାକୁ ମନ୍ତ୍ରୀ ଡକାଇ ପଠାଇଛ । ହଇଓ କମ୍ୟୁନିଷ୍ଟ ଗୋଟାଏ କଅଣ ? ପାଠ ପଢ଼ି ବାହାହେବା ପର୍ଯ୍ୟନ୍ତ ତ ସମସ୍ତେ କମ୍ୟୁନିଷ୍ଟ । ବାହାହୋଇପଡ଼ି ଚାକିରି, ବ୍ୟବସାୟ କି ନେତାଗିରି କଲେ ତ ସମସ୍ତେ କଂଗ୍ରେସବାଲା । କମ୍ୟୁନିଷ୍ଟ କଅଣ ଗଛରେ ଫଳନ୍ତି ? ହେଡ଼ମାଷ୍ଟରଟାର କିଛି ଅକଲ ନାହିଁ । ସେ ଅସିଲବନ୍ତ ପିଲାଙ୍କ ମୁହଁ ବଢ଼ିଯାଉଛି । ସବୁବେଳେ ଗଣ୍ଡଗୋଳ ଓ ସବୁକଥାରେ କାର୍ଯ୍ୟକାରୀ କମିଟି ସଭାପତିଙ୍କୁ ଡ଼ାକି, ମଣିଷକୁ ବସାଇ ଶୁଆଇଦେବେ ନାହିଁ ।”

ପଦନବାବୁ ବହୁ କଷ୍ଟରେ ଖଦଡ଼ ଲୁଗା ଖଣ୍ଡିଏ ପିନ୍ଧି, ଫଟେଇ ଖଣ୍ଡେ ଦେହରେ ଗଳାଇପକାଇ ବାଡ଼ି ଖଣ୍ଡିକ ଧରି ସ୍କୁଲ ଆଡ଼କୁ ଚାଲିଲେ । ପରଦିନ ମନ୍ତ୍ରୀ ଆସିବେ । ସ୍କୁଲ ପଡ଼ିଆରେ ବିରାଟ ସଭା ହୋଇ ମନ୍ତ୍ରୀଙ୍କ ପିତାଙ୍କ ନାମରେ ନାମିତ ବ୍ରଜରାଜ କଲେଜର ଶୁଭ ହୋଇଯିବ । କଲେଜ ନାମ ଲେଖାହୋଇ ମାର୍ବଲ ପଥର ଆସି ଥୁଆହୋଇଛି । ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ଆଉ ଜଣେ ବଡ଼ ନେତାଙ୍କୁ ସାଙ୍ଗରେ ଘେନି ଆସିବେ । ବଡ଼ନେତା ସଭାରେ ସଭାପତିତ୍ୱ କରିବେ ଓ ମୁଖ୍ୟମନ୍ତ୍ରୀ ପ୍ରସ୍ତାବିତ କଲେଜ କୋଠାର ଶିଳାନ୍ୟାସ କରିବେ ।

ସେ ଉତ୍ସବଟି ଆଡ଼ମ୍ବର ସହିତ କରିବାକୁ ସ୍ଥାନୀୟ ମନ୍ତ୍ରୀ ନିଜ ହାତପାଣ୍ଠିରୁ ମୋଟା ଟଙ୍କା ପଦନବାବୁଙ୍କ ହାତରେ ଦେଇଯାଇଛନ୍ତି । ସେ ବି ହାତମୁଠା କୋହଳ କରି ସେଥିରୁ ଗୁଡ଼ାଏ ଟଙ୍କା ହେଡ଼ମାଷ୍ଟରଙ୍କ ତତ୍ତ୍ୱାବଧାନରେ ଖର୍ଚ୍ଚ କରିସାରିଲେଣି ।

ପଦନ ବାବୁ ମନେ ମନେ ଭାବିଲେ—ଏ ଚଗଲା ପିଲାଗୁଡ଼ାଙ୍କର ଏ କି ଢଙ୍ଗ ? ପିଲାଙ୍କୁ ଭଲକରି ଶୋଧନଟାଏ ଦେବେ ବୋଲି ସ୍ଥିର କରି ସ୍କୁଲ ପାଖରେ ପହଞ୍ଚୁ ପହଞ୍ଚୁ ପିଲାଏ ତାଙ୍କ ଚାରିପଟେ ଘେରିଯାଇ ପାଟିତୁଣ୍ଡ କରିବା ଆରମ୍ଭ କରିଦେଲେ । ପଦନବାବୁ ବଡ଼ପାଟି କରି କହିବା ଆରମ୍ଭ କଲେ, “ପିଲାଏ, ଏଠି ଗୋଟାଏ କଲେଜ ହେବ । ଏହା ଏ ସ୍ଥାନ ପାଇଁ ଓ ଆମ ସମସ୍ତଙ୍କପାଇଁ ବଡ଼ ଗୌରବର ବିଷୟ । ତୁମେ ସବୁ ଘରେ ପଖାଳ ଖାଇ ଏ କଲେଜରେ ପାଠ ପଢ଼ିପାରିବ । ତୁମର ସବୁ ମୁଣ୍ଡ ଖରାପ ହେଲାଣି ନା କଅଣ ? କାହା କଥାରେ ପଡ଼ି ଛତରଙ୍କ ପରି ଗୋଳମାଳ କାହିଁକି କରୁଛ ?”

ଛତରା ଶବ୍ଦ ପାଟିରୁ ବାହାରିପଡ଼ିବାକ୍ଷଣି ପଛରୁ ଜୋର୍‌ରେ ଧକ୍କାଏ ଖାଇ ସେ ସେଇଠାରେ ମୁହଁମାଡ଼ି ହାମୁଡ଼େଇ ପଡ଼ିଲେ । ମାଷ୍ଟରମାନେ ତାଙ୍କୁ ଧରାଧରି କରି ଉଠେଇ ଝାଡ଼ାଝୁଡ଼ି କଲେ ।

ଟିକିଏ ଦୂରରେ ଠିଆହୋଇଥିବା ଜଣେ ଛାତ୍ରନେତା ବଡ଼ପାଟିରେ କହିଲେ, “ସ୍କୁଲ ପାଇଁ ତ ମାଷ୍ଟର ନାହାଁନ୍ତି, ପାଠ ନାହିଁ, ସରକାରରୁ ବୋଡ଼ିଂ ଘର ପାଇଁ ଓ ଅନ୍ୟ ବାବଦରେ ଆସୁଥିବା ସବୁ ଟଙ୍କାତ ମାରି ଖାଇଲ, ଆଉ ‘ବ୍ରଜରାଜ କଲେଜ’ ନାଁରେ ଟଙ୍କା ଆଣି ସରଳବଣି ଖାଇବ । ଆମେ ହେଲୁ ଛତରା ତମେ ଛତ୍ରପତି ! ସବୁଦିନ ଛତାପୋଥି ଏଠାରେ ବସି ଲୁଟି କରୁଥିବ ! ଏକଥା ଆଉ ଚାଲିବ ନାହିଁ ।” ସଙ୍ଗେ ସଙ୍ଗେ ସବୁପିଲା ଏକ ସ୍ୱରରେ ପାଟି କରି ଉଠିଲେ ‘ଚାଲିବ ନାହିଁ, ଚାଲିବ ନାହିଁ’ ।

ତା'ପରେ ଇଂରେଜ ଦଲାଲ, ଜୁଆଁଗ୍ରେର ପଦନବାବୁ ମୁର୍ଦ୍ଦାବାଦ, ଶିଖିମନାଇ, ଜମିଦାର ଓ ପଦନ ବାବୁଙ୍କ ଚନ୍ଦ୍ରି ରଖ, ଇନକିଲାବ—ଜିନ୍ଦାବାଦ, ପ୍ରଭୃତି ଧ୍ୱନିରେ ସେ ସ୍ଥାନ କମ୍ପି ଉଠିଲା । ପିଲାମାନେ ପଦନବାବୁଙ୍କୁ ଘୋଷାରି ଘୋଷାରି ନେଇ ହେଡ୍‌ମାଷ୍ଟ୍ରେ ଥିବା କୋଠରୀରେ ଜବରଦସ୍ତି ପୂରାଇ ବାହାରୁ ଦୁଆର ବନ୍ଦକରି ସେମାନଙ୍କୁ ଘେରାଉ କରି ରଖିଲେ । ସ୍କୁଲ ଜମା ଖର୍ଚ୍ଚ ହିସାବ ଓ କଲେଜ ପାଇଁ ଆଦାୟ ହୋଇଥିବା ପାଣ୍ଠିର ହିସାବ ଦାଖଲ ନକଲେ ଛାଡ଼ିବୁ ନାହିଁ ବୋଲି ଜିଦ୍ ଧରିଲେ ।

ଗୋଟିଏ ଗାଆଁରୁ ସେବାକାର୍ଯ୍ୟ ସାରି ଶରଧା ଦେବୀ ସ୍କୁଲପାଖବାଟେ ଫେରୁଥିଲେ । ତାଙ୍କୁ ଦୂରରୁ ଦେଖି କେତେକ ମାଷ୍ଟ୍ର ତାଙ୍କୁ ସ୍କୁଲକୁ ଆସି ପିଲାଙ୍କୁ ବୁଝାଇ ଗଣ୍ଡଗୋଳ ବନ୍ଦ କରିବାକୁ ଅନୁରୋଧ କଲେ । ସେ ଢୁଲ ଢୁଲ ହୋଇ ସେ ସ୍ଥାନକୁ ଗଲେ ।

ପିଲାମାନେ ବଡ଼ ପାଟିରେ ପଦନ ବାବୁ ଆଶ୍ରମ ଭାଙ୍ଗିବା, ଦୋକାନ ବ୍ୟବସାୟ ଭାଙ୍ଗିବା, ଲାଞ୍ଚନେବା, ମାଲିମକଦ୍ଦମା ସୃଷ୍ଟି କରାଇବା, ଗୋଇନ୍ଦାଗିରି କରିବା, ସର୍ବସାଧାରଣଙ୍କ ଧନ ଆତ୍ମସାତ୍ କରିବା ପ୍ରଭୃତି ଯେଉଁ ଯେଉଁ କାର୍ଯ୍ୟ ସେ ଜୀବନରେ କରିଯାଇଥିଲେ, ସେ ସବୁ ବଖାଣ କରି ଝରକାବାଟେ ତାଙ୍କୁ ଅଶ୍ଳୀଳ ଭାଷାରେ ଗାଳିଗୁଲଜ କରିବାରେ ଲାଗିଥାଆନ୍ତି ।

ଶରଧା ଦେବୀ ଘର ଭିତରକୁ ଚାହିଁ ଦେଖିଲେ ହେଡ୍‌ମାଷ୍ଟ୍ରେ ଠିଆହୋଇ ଗୋଟାପଣେ ବରଡ଼ାପତ୍ର ପରି ଥରୁଛନ୍ତି । ପଦନବାବୁ ଚଉକିରେ ବସି ମୁହଁ ଅନ୍ଧାରି ଲଉଛନ୍ତି । ସେମାନଙ୍କ ପାଟିରୁ କଥା ବାହାରୁନାହିଁ । ପଦନବାବୁଙ୍କ ଫତେଇ ଖଣ୍ଡ ତାଙ୍କ ଦେହରେ ସୋରସୋର ହୋଇ ପତାକା ପରି ଉଡୁଛି ।

ଶରଧା ଦେବୀ ପିଲାଙ୍କ ପଛରେ ଠିଆହୋଇ କିଛିକ୍ଷଣ ସେ ସବୁ ଶୁଣିସାରିଲା ପରେ, ହଠାତ୍ ପିଲାଙ୍କ ଭିତରେ ପଶି ଆଗକୁ ଚାଲିଆସି ପିଲାଙ୍କୁ ହାତଦେଖାଇ ଗମ୍ଭୀର ଭାବେ କହିଲେ, 'ମୋ ପିଲାଏ, ଏଇଆ କରୁଛ !' ପିଲାମାନଙ୍କ ପାଟିତୁଣ୍ଡ ସାଙ୍ଗେ ସାଙ୍ଗେ ବନ୍ଦ ହୋଇଗଲା । ସେ ପୁଣି କହିଲେ, "ଯେତେହେଲେ ସେମାନେ ଗୁରୁଜନ । ଗୁରୁଜନଙ୍କୁ କଅଣ ଏହିପରି ବ୍ୟବହାର ଦେଖାନ୍ତି ? ତାଙ୍କୁ ଛାଡ଼ିଦିଅ, ଘରକୁ ଯାଅ । ଯିଏ ଯାହା କରିଥିବ ସେ ତା' ପାଇବ । ଭଗବାନ ସେକଥା ବୁଝିବେ । ତୁମେ ତୁମ କର୍ତ୍ତବ୍ୟ କର ।"

ପିଲାଏ ମନ୍ତ୍ରମୁଗ୍ଧ ପରି ହେଡ୍‌ମାଷ୍ଟ୍ର ଓ ପଦନ ବାବୁଙ୍କୁ ଛାଡ଼ି ଯେଝା ଘରକୁ ମୁହାଁପରି ଚାଲିଗଲେ । ତଥାପି ମନ୍ତ୍ରୀ ଆଉ ଆସିଲେ ନାହିଁ କି 'ବ୍ରଜରାଜ କଲେଜ'ର ଶିଳାନ୍ୟାସ ଆଉ ହୋଇପାରିଲା ନାହିଁ ।

# ସତର

ନବକୁମାର ଦ୍ୱିତୀୟ ଥର ଆଣ୍ଡାମାନ କାରାଗାରରେ ପଶି ଏକାବେଳକେ ଭାଙ୍ଗି-ପଡ଼ିଲେ । ସ୍ୱାଧୀନତା ପାଇଁ ଉତ୍ସାହ ଉଦ୍ଦୀପନା ଓ ପ୍ରାଣବଳୀର ଆଉ ପ୍ରୟୋଜନ ନଥିଲା । ନିକଟ ଭବିଷ୍ୟତରେ ଭାରତରୁ ଇଂରେଜ ବିଦାୟ ନେବା ଜଳ ଜଳ ଦିଶୁଥିଲା । ସ୍ୱାଧୀନତା ପକ୍ଷରେ ତିଳ ତିଳ କରି ସେ ଜୀବନକୁ ଆହୁତି ଦେଇଛନ୍ତି, କିନ୍ତୁ ସ୍ୱାଧୀନତାର ସ୍ୱାଦୁ ଚାଖିବାର ସାମର୍ଥ୍ୟ ତାଙ୍କର ନାହିଁ ।

ସୁଭାଷ କୁଆଡ଼େ ଗଲେ ? ଦେଶର ଅବସ୍ଥା କଅଣ ହେବ ? କଂଗ୍ରେସ କଅଣ ବ୍ରିଟିଶ ରାଜନୀତିଜ୍ଞମାନଙ୍କ ଚକ୍ରାନ୍ତ ଭେଦକରି ଦେଶର ଅଖଣ୍ଡ ସ୍ୱାଧୀନତା ଆଦାୟ କରିପାରିବ ? ଏପରି ନାନା ଚିନ୍ତା ତାଙ୍କ ମନକୁ ଘାରିଲା । ତାଙ୍କର ମାନସିକ ଅଶାନ୍ତି ସାଙ୍ଗକୁ ଶାରୀରିକ ଦୁର୍ବଳତା ବଳପଡ଼ିଲା । ସେ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୋଇ କଳାପାଣିର ରୁଦ୍ଧ ଅନ୍ଧକାର କାରାଗାର ଭିତରେ ସଢ଼ିବାକୁ ଲାଗିଲେ । ସେ ଦେଖିଲେ କାଶି କାଶି ତାଙ୍କ ପାଟିରୁ ମେଞ୍ଚା ମେଞ୍ଚା ରକ୍ତ ବାହାରି ପଡ଼ୁଛି । କିନ୍ତୁ ସେ ବୀର ଶରୀରରେ ଶତ୍ରୁର ଗୁଳି ବାଜି ବହୁଯାଉଥିବା ତାଜା ରକ୍ତ ନୁହେଁ । ସେ ରକ୍ତ ମନରେ ଉଦ୍ଦୀପନା ଆଣେ; କିନ୍ତୁ ଏ ରକ୍ତ ମନକୁ ବିଷାଦ ଓ ଯନ୍ତ୍ରଣାରେ ଭରିଦିଏ ।

୧୯୪୭ ଅଗଷ୍ଟ ପନ୍ଦର । ଚାରିଆଡ଼େ କୋଳାହଳ ଆନନ୍ଦ ଉତ୍ସବ । ଜେଲ ଉପରୁ ପୁଣି ବ୍ରିଟିଶ ପତାକା ଖସି ତା' ସ୍ଥାନରେ ତାଙ୍କର ପ୍ରିୟ ତ୍ରିରଙ୍ଗା ପତାକା ଫରଫର ହୋଇ ଉଡ଼ିଲା । ଇଂରେଜମାନେ ଚାଲିଗଲେ; କିନ୍ତୁ ସେଇ ଇଂରେଜଙ୍କ ଭୃତ୍ୟ ଜେଲ କର୍ମଚାରୀମାନେ ସ୍ୱାଧୀନ ଭାରତର ଜେଲ କର୍ମଚାରୀ ରୂପେ ଆନନ୍ଦ ଉତ୍ସବରେ ମାତିଲେ ।

ଭାରତ ସ୍ୱାଧୀନ ହେଲା; କିନ୍ତୁ ସମସ୍ତଙ୍କ ପାଇଁ ନୁହେଁ । ଭାରତ ଦୁଇ ଭାଗ ହୋଇଛି । ଶରଣାର୍ଥୀଙ୍କ ବ୍ୟାକୁଳ କ୍ରନ୍ଦନରେ ଆକାଶ ଫାଟି ଯାଉଛି । ଶରଣାର୍ଥୀମାନେ ଆଣ୍ଡାମାନକୁ ଭୁହାହୋଇ ଆସିବା ଆରମ୍ଭ ହେଲାଣି । ସେମାନେ ବନ୍ଦୀ ଭାବରେ ନଆସି ନୂଆଘର କରିବାକୁ ବାସ୍ତୁହରା ହୋଇ ସେଠାକୁ ବାସିନ୍ଦା ଭାବରେ ଆସୁଛନ୍ତି । ତାଙ୍କର ଜନ୍ମସ୍ଥାନ ଏବେ ପାକିସ୍ଥାନ ବୋଲି ଅନ୍ୟ ଏକ ଦେଶରେ, ସେ ସ୍ଥାନରେ ଆଉ ତାଙ୍କ ପାଇଁ ସ୍ଥାନ ନାହିଁ ।

ସମସ୍ତ ରାଜବନ୍ଦୀ ମୁକ୍ତହୋଇ ଦେଶକୁ ଫେରିବାକୁ ଅପେକ୍ଷା କରୁଛନ୍ତି । ସେ ମଧ୍ୟ କାରାଗାରରୁ ମୁକ୍ତ ପାଇଛନ୍ତି । କିନ୍ତୁ ସେ କି ମୁକ୍ତ ? ଜର୍ଜରିତ ଚୂର୍ଣ୍ଣ ଓ କ୍ଷୀଣ ଶରୀରରୁ ତାଙ୍କର ଆତ୍ମା ମୁକ୍ତିଲାଭ କରିବାକୁ ଆଉ ବେଶିଦିନ ବାକି ନାହିଁ ।

ଆଣ୍ଡାମାନରୁ ଜାହାଜ ଯୋଗେ ମୁକ୍ତ ବନ୍ଦୀମାନଙ୍କୁ କଲିକତା ନିଆଗଲା । ସେଠାରେ ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଇବାକୁ ହଜାର ହଜାର ଲୋକ ଆସି ଜମା ହୋଇଥିଲେ ।

ଜୟଧ୍ୱନି ଭିତରେ ଅନ୍ୟ ବନ୍ଦୀମାନେ ଟ୍ରେନ୍‌ରୁ ଓହ୍ଲାଇ ନିଜ ଘରବନ୍ଧୁଙ୍କ ଗହଣରେ ଯେ ଯୁଆଡ଼େ ଗଲେ ।

ସମସ୍ତେ ଯିବାପରେ ଆମ୍ବୁଲାନ୍‌ସରେ ନବକୁମାରଙ୍କୁ ନେଇ କଲିକତା ମେଡ଼ିକାଲ କଲେଜ ଡାକ୍ତରଖାନାରେ ଭର୍ତ୍ତି କରି ଦିଆଗଲା । ସେ ମୁକ୍ତ, କିନ୍ତୁ ମୁକ୍ତି ପାଇଲେ ମଧ୍ୟ ସ୍ୱାଧୀନ ଭାବରେ ମନଇଚ୍ଛା କେଉଁଆଡ଼େ ଯିବାପାଇଁ ତାଙ୍କର ଶକ୍ତି ନଥିଲା । ସେ ନିର୍ଜୀବ ଭାବରେ ଡାକ୍ତରଖାନା ଖଟିଆରେ ବସିରହିଲେ ।

ତାଙ୍କ ବିଷୟ ଖବରକାଗଜରେ ବାହାରିବା ପରେ ସେଠା ଗାନ୍ଧି ଆଶ୍ରମର ଲୋକେ ଓ ଅନ୍ୟ କର୍ମୀମାନେ ତାଙ୍କୁ ଦେଖିବାକୁ ଆସିଲେ । କେହି କେହି ନେତୃସ୍ଥାନୀୟ ବ୍ୟକ୍ତି ଓ ମନ୍ତ୍ରୀ ଆସି ତାଙ୍କ ଖଟିଆ ପାଖରେ ଠିଆହୋଇ ଫଟୋ ଉଠାଇଲେ । ସେ ଫଟୋସବୁ ମଧ୍ୟ ଖବରକାଗଜରେ ବାହାରିଲା । ତାଙ୍କ ସମ୍ବନ୍ଧରେ ପ୍ରବନ୍ଧ ସବୁ ମଧ୍ୟ ପ୍ରକାଶିତ ହେଲା । ତାଙ୍କର ଚିକିତ୍ସା ପାଇଁ ସାହାଯ୍ୟ କରିବାକୁ ପାଣ୍ଠିସବୁ ଗଢ଼ାଯାଇ ଖବରକାଗଜମାନଙ୍କରେ ନିବେଦନ ବିଜ୍ଞାପନ ସବୁ ପ୍ରକାଶିତ ହେଲା ।

ତାଙ୍କ ମୁକ୍ତିର ସମ୍ବାଦ ପାଇ ଶରଧା ପୁଣି ନୂତନ ଆଶା ବୁକୁରେ ଧରି ତାଙ୍କୁ ସ୍ୱାଗତ କରିବାକୁ ଚାହିଁରହିଥିଲେ । ନବକୁମାରଙ୍କ ଦୀର୍ଘ ବପୁ, ହସ ହସ ମୁହଁ, ଉଜ୍ଜ୍ୱଳ କାନ୍ତି ତାଙ୍କ ଆଖି ଆଗରେ ଭାସିଯାଇ ମନରେ ଅଶ୍ରୁତିରେ ଆନନ୍ଦ ଖେଳାଇ ଦେଉଥିଲା । ସେ ଭାବୁଥିଲେ—କଅଣ ସତରେ ବିଧାତାଙ୍କ କରୁଣା ମିଳିବ, ମୁଁ ପୁଣି ସେ ବୀରପୁରୁଷଙ୍କୁ ଫେରିପାଇ ତାଙ୍କର ପଦସେବା କରିପାରିବି ? ତାଙ୍କର ପଦ ତଳେ ଏ ଜୀବନବୃନ୍ତ ଲୋଟାଇବାକୁ ମୋତେ କଅଣ ପ୍ରଭୁ ସୁଯୋଗ ଦେବେ ?

ସେ ଏପରି ଭାବୁଥିଲାବେଳେ ଡାକପିଅନ ଆସି ଖଣ୍ଡିଏ ଟେଲିଗ୍ରାମ ଦେଇଗଲା । ସେ ଟେଲିଗ୍ରାମ ଖାମ୍ ଭିତରେ ଭଲ କି ମନ୍ଦ କଅଣ ଅଛି ଭାବିନପାରି ସେଇଟି ଫିଟାଇବାକୁ ତାଙ୍କ ହାତ ଥରିଲା । ସେ ଘର ଭିତରକୁ ଯାଇ ଭିତରୁ ଦୁଆର କିଳି ଏକାନ୍ତରେ ବସିରହି ବହୁ କଷ୍ଟରେ ଟେଲିଗ୍ରାମଟି ଫିଟାଇଲେ । ପଢ଼ୁ ପଢ଼ୁ ସେ ଖଣ୍ଡି ତାଙ୍କ ହାତରୁ ଖସିପଡ଼ିଲା । ସେଥିରେ ଲେଖାଥିଲା—ନବକୁମାରଙ୍କ ଅବସ୍ଥା ସଙ୍କଟାପନ୍ନ । ସେ ତୁମକୁ ଦେଖିବାକୁ ବ୍ୟାକୁଳ ହେଉଛନ୍ତି—କଲିକତା ମେଡ଼ିକାଲ କଲେଜ ହସ୍‌ପିଟାଲକୁ ଶୀଘ୍ର ଆସି ଦେଖାକର ।

ଶରଧା ଦେବୀ କଲିକତା ଯିବାପାଇଁ ଯୋଗାଡ଼ କଲେ । ଶରଧାଦେବୀ ନବକୁମାରଙ୍କୁ ଦେଖିବାକୁ ଯାଉଥିବା ସମ୍ବାଦ ଚାରିଆଡ଼େ ବିଜୁଳିପରି ଖେଳିଗଲା । ତାଙ୍କୁ ବିଦାୟ ଦେବାପାଇଁ ବହୁଲୋକ ଆସି ରୁଣ୍ଡହେଲେ । କେତେକ ଯୁବକ ଆଖି ଛଳଛଳ କରି କହିଲେ, ମା, ତାଙ୍କ ଦେହ ଖରାପବୋଲି ସେଠାରେ ଛାଡ଼ି ଆସିବ ନାହିଁ । ସାଙ୍ଗରେ ଘେନି ଆସିବ । ଆମେ ତାଙ୍କର ସମସ୍ତ ସେବାକରି ତାଙ୍କୁ ଭଲକରିଦେବୁ । ଶରଧା ସେମାନଙ୍କ ଦିଗିରେ ହାତ ଥାପୁଡ଼ାଇ ବିଦାୟନେଲେ ।

ତାଙ୍କର ବନ୍ଧୁ ଭାବନା ଓ ଆଶଙ୍କାରେ ଛଟପଟ ମନ, ରେଲଗାଡ଼ିର ଗତି ସଙ୍ଗେ ତାଳଦେଇ କଲିକତା ଆଡ଼କୁ ଗତିକଲା । ସେ ବିନିଦ୍ର ରଜନୀ କଟାଇବା ପରେ ସକାଳକୁ ହାବଡ଼ା ଷ୍ଟେସନରେ ଗାଡ଼ି ପହଞ୍ଚିଲା । ସେ ଟାକ୍‌ସି ଧରି ସିଧା ହସ୍‌ପିଟାଲକୁ ଯାଇ ନବକୁମାରଙ୍କ ଖବର ନେଲେ । ସେଠାର ଜଣେ ପରିଚାରିକା ତାଙ୍କୁ ସଙ୍ଗରେ ନେଇ ନବକୁମାରଙ୍କ ଖଟିଆ ପାଖରେ ଠିଆକରାଇଦେଲେ । ସେ ଖଟିଆର ରୋଗୀଟିକୁ ଦେଖି ସେ କିଛି ଠଉରାଇ ପାରିଲେ ନାହିଁ । ସେ ଭାବିଲେ, ପରିଚାରିକାଟି ତାଙ୍କୁ ଆଉ କେଉଁ ରୋଗୀ ପାଖରେ ଭୁଲରେ ଛାଡ଼ିଗଲା । ସେ ଏପରି ବିଚାରୁଛନ୍ତି ହଠାତ୍ ସେ ରୋଗୀର ପାଟିରୁ ଅସ୍ପଷ୍ଟ ସ୍ୱରରେ, ତାଙ୍କ ଉଦ୍ଦେଶ୍ୟରେ କହିଲା ପରି ଶୁଭିଲା 'ଶରଧା ଆସିଲ ?' । ସେ ନିଜ ନାମ ଶୁଣି ଚମକିପଡ଼ିଲେ ।

ସେ ଭାବିଲେ—ଇଏ କଅଣ ନବକୁମାର । ଗୋଟାଏ କଙ୍କାଳ ଉପରେ ମେଞ୍ଚାଏ ଲୋକିଲା ଚର୍ମ । ମୁଣ୍ଡରେ ଝୋଟପରି ଗୁଡ଼ାଏ ଧଳାକଳା ମିଶା ଅଲୁରା ବାଲୁରା କେଶ । ଆଖି କୋରଡ଼ରେ ପଶିଛି । ଗାଲ ହାଡ଼ ବାହାରକୁ ବାହାରିଛି । ମୁହଁରେ ପୁଳାଏ ଅଯତ୍ନ-ପାଳିତ ଦାଢ଼ି ।

ସେ ନବକୁମାରଙ୍କ ମୁହଁକୁ ନିରେଖିକରି ଚାହିଁ ଦେଖିଲେ ଗୋଟିଏ ଆଖିର କୋଟର ଖାଲି, ଅନ୍ୟ ଆଖିରୁ ଧାରେ ଲୁହ ତଳକୁ ଗଡ଼ିପଡ଼ୁଛି । ନବକୁମାର ପୁଣି ଅସ୍ପଷ୍ଟ ଭାଷାରେ କହିଲେ, "ଭାରତ ସ୍ୱାଧୀନ ହେଲା । ବାପା କାହାନ୍ତି ? ମୋତେ ବାପାଙ୍କ ପାଖକୁ ଘେନଯାଅ । ମୁଁ ଘରକୁ ଯିବି ।"

ଶରଧା ନିଜର କୋହକୁ ଅଟକାଇ ରଖି କହିଲେ, "ହଁ, ମୁଁ ତୁମକୁ ନେବାକୁ ଆସିଛି ।" ଡାକ୍ତରଖାନା କର୍ତ୍ତୃପକ୍ଷଙ୍କ ବାରଣ ସତ୍ତ୍ୱେ ନବକୁମାରଙ୍କୁ ଟାକ୍‌ସିରେ ଧରି ସେ ହାବଡ଼ା ଷ୍ଟେସନକୁ ଫେରିଲେ । ଷ୍ଟେସନରୁ ଗ୍ରାମକୁ ଟେଲିଗ୍ରାମ କଲେ । ଷ୍ଟ୍ରେଚରରେ ନବକୁମାରଙ୍କୁ ଫାଷ୍ଟକ୍ଲାସକୁ ନେଲାବେଳକୁ ସେ ଥାର୍ଡ଼କ୍ଲାସରେ ଯିବାକୁ ଜିଦ୍ ଧରିଲେ ।

ଗାଡ଼ି ଛାଡ଼ିଲା । ନବକୁମାର ଖୁଁ ଖୁଁ କାଶୁଥାଆନ୍ତି । କାଶରେ ରକ୍ତମିଶା କଫ ଆସୁଥାଏ । ଶରଧା ତାକୁ ନେଇ ବାହାରେ ଫିଙ୍ଗୁଥାଆନ୍ତି । ନବକୁମାରଙ୍କ ମୁଣ୍ଡଟି କୋଳରେ ରଖି ମୁଣ୍ଡକୁ ଧୀରେ ଧୀରେ ଆଉଁସୁଥାଆନ୍ତି ।

ଖୋର୍ଦ୍ଧାରୋଡ଼ ଜଟଣୀ ଷ୍ଟେସନ ଲୋକାରଣ୍ୟ । 'ନେତାଜୀ କି ଜୟ', 'ନବକୁମାର କି ଜୟ', 'ବିପ୍ଳବ ଅମର ରହେ' ଧ୍ୱନିରେ ଷ୍ଟେସନ ଭାଙ୍ଗିପଡ଼ୁଥାଏ । ଲୋକେ ଫୁଲମାଳରେ ନବକୁମାରଙ୍କୁ ପୋତି ପକାଇଲେ । ଶରଧାଦେବୀଙ୍କ ନିର୍ଦ୍ଦେଶରେ ସ୍ୱେଚ୍ଛାସେବକମାନେ ଲୋକଙ୍କୁ ଆଡ଼େଇ ଷ୍ଟ୍ରେଚରରେ ନବକୁମାରଙ୍କୁ ଆଣି ଟାକ୍‌ସିରେ ବସାଇଲେ । ନବକୁମାରଙ୍କ ଗାଡ଼ି ଶେଷ ଯାତ୍ରାରେ ଗ୍ରାମାଭିମୁଖେ ଚାଲିଲା ।

ଶରଧା ଦେବୀ ନବକୁମାରଙ୍କୁ ଆଣିବାପାଇଁ କଲିକତା ଯାଇଥିବା ସମ୍ବାଦ ଚାରିଆଡ଼େ ଝେଲିଯିବାପରେ, ନବକୁମାରଙ୍କ ବୀରତ୍ୱ କାହାଣୀର ଭୂୟସି ପ୍ରଶଂସା ବାଟରେ ଘାଟରେ

ଗୁଣଆଡ଼େ ଲୋକମୁଖରେ ପ୍ରଚାରିତ ହୋଇଥିଲା । ଅଳ୍ପ କେତେକ ସ୍ୱାର୍ଥାନ୍ୱେଷୀ ଲୋକ କୁଆଡ଼ ପାଣି କୁଆଡ଼େ ବହିଯାଉଛି ଦେଖିବା ପାଇଁ ନୀରବ ହୋଇ ରହିଲେ । ଜମିଦାର ଓ ପଦନ ବାବୁଙ୍କ ଲୋକେ ମନେ ମନେ ବିପଦ ଗଣିଲେ । ତାଙ୍କ ଭିତରେ କେତେ ଭବିଷ୍ୟତର କଳ୍ପନା ଜଳ୍ପନା ଚାଲିଲା । ଆଉ ଭୋଟବେଳକୁ ଯଦି ନବକୁମାର ପ୍ରାର୍ଥୀରୂପେ ଠିଆହୁଅନ୍ତି ତେବେ ନୂଆ ଜମିଦାର (ମନ୍ତ୍ରୀ)ଙ୍କ ଆସନ ଟଳମଳ ହୋଇପାରେ ବୋଲି ଆଶଙ୍କା କଲେ ।

ଅଧିକାଂଶ ଲୋକ ନବକୁମାରଙ୍କ ମୁକ୍ତିରେ ଆନନ୍ଦ ବିଭୋର ହୋଇ ତାଙ୍କର ଆଶୁ ଆରୋଗ୍ୟ ପାଇଁ ଭଗବାନଙ୍କଠାରେ ପ୍ରାର୍ଥନା କରୁଥିଲେ । ତାଙ୍କ ଆରୋଗ୍ୟଲାଭ ପାଇଁ କେତେକ ସ୍ଥାନରେ ଯଜ୍ଞ ଆରମ୍ଭ ହୋଇଥିଲା । ପାଖ ମୁସଲମାନ ଗାଁ ମସ୍‌ଜିଦରେ ମଧ୍ୟ ପ୍ରାର୍ଥନା ହେଲା ।

ଶରଧା ଦେବୀଙ୍କ ମାତୃମଙ୍ଗଳ କେନ୍ଦ୍ର ଦ୍ୱାରା ଉପକୃତ ବୋହୂ ଭୁଆସୁଣୀମାନେ ମନ୍ଦିରକୁ ଗଲାବେଳେ ଶରଧାଦେବୀଙ୍କ ହାତକାଚ ବଜାୟ ହେଉ ବୋଲି ଦେବଦେବୀଙ୍କ ଆଗରେ ମୁଣ୍ଡିଆ ମାରୁଥିଲେ । ବୁଢ଼ାବୁଢ଼ୀମାନେ ଦିଅଁଙ୍କ ଆଗରେ ଦୀପ ବସାଉଥିଲେ । କିଏ କେତେ ଦିଅଁ ଦେବତାଙ୍କ ନିକଟରେ ମାନସିକ କରି ଭୋଗ ଯାଚୁଥିଲେ ।

ବାଉଁଶ ସାହିରେ ମଙ୍ଗଳାଙ୍କ ପାଖେ ମାଜଣା ହେଲା । ସମସ୍ତେ ଶରଧା ଦେବୀ ଓ ନବକୁମାରଙ୍କ ଫେରନ୍ତା ବାଟକୁ ଚାତକପରି ଚାହିଁରହିଥିଲେ ।

ସେ ଆସୁଥିବା ଟେଲିଗ୍ରାମ ମିଳିବା ପରେ ତାଙ୍କ ଅଭ୍ୟର୍ଥନା ପାଇଁ ସମସ୍ତେ ଲାଗିପଡ଼ିଲେ । କେତେକ ସ୍ୱେଚ୍ଛାସେବକ ତାଙ୍କୁ ପାଛୋଟି ଆଣିବାକୁ ଖୋର୍ଦ୍ଧାରୋଡ଼ ଷ୍ଟେସନକୁ ଯାଇଥିଲେ ।

ପଞ୍ଝା ପଞ୍ଝା ହୋଇ ସଂକୀର୍ତ୍ତନ ଦଳମାନ ତାଙ୍କ ସମ୍ବର୍ଦ୍ଧନା ପାଇଁ ପ୍ରସ୍ତୁତ ହୋଇ ରହିଲେ । ସ୍କୁଲ ପିଲାମାନେ ଖାକି ପ୍ୟାଣ୍ଟ, ଖାକି ସାର୍ଟ ପିନ୍ଧି ସୁଭାଷସେନାର ଯୁଦ୍ଧଯାତ୍ରାର ପଟୁଆର ସଙ୍ଗୀତ ଅଭ୍ୟାସ କରି ଗାଇଲେ— ।

କଦମ୍ କଦମ୍ ବଢ଼ାଏ ଯାଓ
ଖୁସି ସେ ଗୀତ ଗାଏ ଯାଓ
ଏ ଜିନ୍ଦଗୀ ହେ କୌମ୍ କୀ,
ତୋ କୌମ ପେ ଲୁଟାଏ ଯାଓ
ତୁ ଶେର ହିନ୍ଦ ଆଗେ ବଢ଼
ମରନେ ସେ ଭି ତୁ ନ ଡର୍
ଆସମାନତକ ଉଠାକେ ଶିର
ଜୋସ୍‌ସେ ବତନ ବଢ଼ାଏ ଯାଓ
ତେରେ ହିମତ ବଢ଼ତି ରହେ
ଖୁଦା ତେରୀ ଶୁନତା ରହେ

ଯୋ ସାମନେ ତେରେ ଚଢ଼ି
ତୋ ଖାକ୍‌କେ ମିଲ୍‌ଯା ଯାୟ୍
ଚଲେ ସଲ୍ଲୀ ପୁକାର୍ କେ
କୌଶି ନଗାନ ସମାଲ୍ କେ
ଲାଲ୍ ଝଣ୍ଡେ କେ ଗାଡ୍ କେ
ଲହରାୟ ଯାୟ ଲହରାୟ ଯାୟ ।

ଗାଁ ପାଖ ବିଲମାନଙ୍କରେ କାମ କରୁଥିବା କୃଷୀ ମୂଲିଆମାନଙ୍କର ନବକୁମାରଙ୍କ ଦର୍ଶନ ଉତ୍କଣ୍ଠାରେ କାମ କରିବାକୁ ମନ ଲାଗୁନଥିଲା । ମୁଣ୍ଡିଆ ତଳେ ଗାଈଜଗା ପିଲାମାନେ ବି ନିଜ ନିଜ ଭିତରେ ସ୍ୱାଧୀନତା ଯୁଦ୍ଧ ଖେଳ ଖେଳି ନବକୁମାର ଯୁଦ୍ଧରେ କିପରି ଗୋରା ସୈନ୍ୟଙ୍କୁ ହଟାଇ ଦେଇଥିଲେ ତା'ର ଅଭିନୟ କରୁଥିଲେ ।

ଗୋଟିଏ ଗାଈଜଗା ପିଲା ମୁଣ୍ଡିଆ ଉପରେ ଠିଆହୋଇ ବହୁଦୂରରେ ଗାଁଆଡ଼କୁ ଆସୁଥିବା ମଟର ଗାଡ଼ିଟିଏ ଦେଖି 'ହେଇ ଅସିଲେ' ବୋଲି ପାଟି କରିବାରୁ ସମସ୍ତେ ପାଟି କରି କରି ଗାଆଁ ଆଡ଼କୁ ଧାଇଁଲେ । ତାଙ୍କୁ ଦେଖି କୃଷୀମାନେ ବି କାମ ଛାଡ଼ି ଧାଇଁଲେ । ସେମାନେ ଯେଉଁ ବାଟରେ ଗଲେ ଆଖପାଖରେ ଥିବା ଲୋକମାନେ ମଧ୍ଯ ସେମାନଙ୍କ ପଛେ ପଛେ ଧାଇଁଲେ ।

ସଂକୀର୍ତ୍ତନ ଦଳ, ସ୍ୱେଚ୍ଛାସେବକ ଦଳ ସବୁ ସ୍କୁଲ ପାଖରେ ଧାଡ଼ିବାନ୍ଧି ଫୁଲମାଳ ଧରି ଠିଆହୋଇରହିଲେ ।

ପଥର ମୁଣ୍ଡିଆଗୁଡ଼ିକ ଗାଁ ଠାରୁ ଦୂରଛଡ଼ା ହୋଇ ନୀରବଦ୍ରଷ୍ଟା ପରି ଛିଡ଼ାହୋଇ ରହିଥିଲେ । ଦାନ୍ତୁଲି ହସୁଛନ୍ତି କି କାନ୍ଦୁଛନ୍ତି ଜଣା ନପଡ଼ିଲା ପରି ସେମାନଙ୍କର ଭାବ ସବୁ ସେପରି ଜଣା ପଡ଼ୁନଥିଲା । ସେମାନେ କେତେ ବିଜୟଯାତ୍ରା ଦେଖି ଦେଖି ପଥର ପାଲଟିଛନ୍ତି । କେତେ ରାଜପୁତ୍ର ସେଇବାଟ ଦେଇ ଯୁଦ୍ଧଯାତ୍ରାରେ ଯାଇ ଗଡ଼ମାନ ଜୟକରି ବିଜୟ ଉଲ୍ଲାସରେ ଫେରିଛନ୍ତି । ଶତ୍ରୁର ବିଜୟରେ କେତେ ହୁଏତ ପଛଦୁଆ ଦେଇ ଯୁଦ୍ଧକ୍ଷେତ୍ରରୁ ସେଇବାଟେ ପଳାଇ ଆସିଛନ୍ତି । ବହୁଯୁଗ ଧରି ସେଇମାନେ ଓଡ଼ିଶାର ଜୟ ପରାଜୟର ମୂକସାକ୍ଷୀ ପରି ରହିଛନ୍ତି । ସେଇ ମୁଣ୍ଡିଆଗୁଡ଼ିକ କେତେବେଳେ ଆଲୁରୁ ବାଲୁରୁ ଶୁକ୍ଳକେଶ ପରି ଧଳାମେଘଗୁଡ଼ିଏ ମୁଣ୍ଡାଇ ଠିଆହୋଇ ଥାଆନ୍ତି ତ କେତେବେଳେ ତାଙ୍କ ମୁଣ୍ଡ ଉପରେ କଳାମେଘ ଗୁଡ଼ିକ କୁଞ୍ଚିତ କୃଷ୍ଣକେଶ ପରି ଶୋଭା ପାଉଥାଏ । ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ପୂର୍ବରୁ ଅରୁଣ ସେମାନଙ୍କ ମସ୍ତକରେ ରକ୍ତବର୍ଣ୍ଣ ପଟୁକାର ପାଗ ବିନ୍ଧାଇ ଚାଲିଯାଏ ।

ଗୁହୁଁ ଗୁହୁଁ ସେଇ ପାହାଡ଼ମାନଙ୍କ ଉପରୁ କଳାମେଘ ସବୁ ମାଡ଼ି ଅସିଲା । ମାନବର ବୃଥା ବିଜୟୋଲ୍ଲାସ ପଶ୍ଚାତରେ ବଧିର ଶୋଣିତ ଲୁଚିକା ଦେଖିପାରି ସେମାନେ ଯେପରି ତାଙ୍କର

ଲୁଣ୍ଠିତକେଶ ସବୁ ଛିଣ୍ଡାଇ ଗ୍ରାମ ଦିଗକୁ ନିକ୍ଷେପ କଲେ । କଳାମେଘ କ୍ଷଣେ ଅଧେ ଜମାଟ ବାନ୍ଧି ଘୋଟି ଅସରାଟିଏ ବର୍ଷିବା ଆରମ୍ଭ କରିଦେଲା । ଲୋକେ ଅବିଚଳିତ ଭାବରେ ଠିଆହୋଇ ରହିଲେ । ଦୁଃସମ୍ବାଦବାହୀ ଉଷ୍ଣ ଲୋତକ ପରି ଲୋକଙ୍କ କପାଳରୁ ଦୁଇ ଚାରିଟୋପା ଜଳ ତଳେ ଖସି ପଡ଼ିଲା । ମେଘ ପଛେ ପଛେ ସେହି ପାହାଡ଼ଆଡ଼ୁ ଦୀର୍ଘ ନିଶ୍ୱାସ ପରି ସାଇଁ ସାଇଁ ହୋଇ ହାସ୍ତ ହାସ୍ତ ଶବ୍ଦରେ ଉଡ଼ା ପବନଟାଏ ମେଘକୁ ପେଲି କୁଆଡ଼େ ଚାଲିଗଲା ।

ନବକୁମାରଙ୍କ ଟାକ୍‌ସି ସ୍କୁଲ ନିକଟରେ ପହଞ୍ଚିଲା । ବାଳକ ବାଳିକା ଯୁବକ ଯୁବତୀ ଓ ବୟସ୍କ ବୟସ୍କାମାନଙ୍କର ଜନସମୁଦ୍ର ଟାକ୍‌ସିଆଡ଼କୁ ମାଡ଼ିଆସୁଥାଏ । ସ୍ୱେଚ୍ଛାସେବକମାନେ ସୁଶୃଙ୍ଖଳ ଭାବରେ ସେମାନଙ୍କୁ ରାସ୍ତାର ଦୁଇପଟେ ଧାଡ଼ି ଧାଡ଼ି କରି ଠିଆ କରାଇଦେଲେ ।

'ଜୟହିନ୍ଦ୍', 'ନେତାଜୀଙ୍କ ଜୟ', 'ମହାତ୍ମା ଗାନ୍ଧିଙ୍କ ଜୟ', 'ଯୋଗଜନ୍ମା ଭିଖାରୀବାବୁଙ୍କ ଜୟ', 'ନବକୁମାରଙ୍କ ଜୟ', 'ଶରଧା ମାଆଙ୍କର ଜୟ' ପ୍ରଭୃତି ଜୟଧ୍ୱନିରେ ଗାଆଁ ଦାଣ୍ଡ ଉଚ୍ଛୁଳି ପଡ଼ିଲା । ସ୍ତ୍ରୀଲୋକମାନେ ହୁଳହୁଳି ପକାଇଲେ । ଲୋକେ ପୁଷ୍ପବୃଷ୍ଟି କଲେ । ସ୍କୁଲ ଛାତ୍ରମାନେ ପଟୁଆର ସଙ୍ଗୀତ ବୋଲି ପାଦ ପକାଇ ପକାଇ ଦୁଇଧାଡ଼ିରେ ଠିଆହୋଇଥିବା ଲୋକଙ୍କ ଭିତରେ ମାର୍ଚ୍ଚ କରି ନବକୁମାରଙ୍କୁ ପାଛୋଟି ଆଣିବାକୁ ଆଗେଇଲେ । ସେମାନଙ୍କ ପଛେ ପଛେ ସଂକୀର୍ତ୍ତନ ଦଳ ମଧ୍ୟ ଚାଲିଲେ । ଚଲାଇ କରି ପଟୁଆରରେ ଆଣିବା ଉଦ୍ଦେଶ୍ୟରେ ଟାକ୍‌ସି ନିକଟରେ ପହଞ୍ଚି ଆଉଜା କରି ବସିରହିଥିବା ନବକୁମାରଙ୍କ ବେକରେ ଫୁଲମାଳ ପକାଇଦେଲେ ।

ଲୋକଙ୍କର ଉତ୍ସାହ ଓ ଅଭ୍ୟର୍ଥନା ଦେଖି ଶରଧାଦେବୀଙ୍କ ଆଖିରୁ ଲୁହ ଝରିପଡ଼ିଲା । ନବକୁମାର ବହୁକଷ୍ଟରେ ଡାହାଣ ପଟର ପଙ୍ଗୁ ବାହା ଓ ବାମ ହାତଟି ଉଠାଇ ଜନତାକୁ ନମସ୍କାର କରିବାକୁ ଚେଷ୍ଟାକଲେ; କିନ୍ତୁ ତାଙ୍କ ହାତ ତଳକୁ ଖସିପଡ଼ିଲା; ତାଙ୍କ ମୁଣ୍ଡ ଶରଧାଙ୍କ କୋଳରେ ଭାଙ୍ଗିପଡ଼ିଲା ।

ନବକୁମାରଙ୍କର ସେ ଅବସ୍ଥା ଦେଖି ସ୍ୱେଚ୍ଛାସେବକ ପିଲାମାନେ ଭୋ ଭୋ କାନ୍ଦି-ଉଠିଲେ । ଜନତା ସ୍ତବ୍ଧ ହୋଇଗଲା । ନବକୁମାରଙ୍କ କଣ୍ଠରୁ ଅସ୍ପଷ୍ଟ ସ୍ୱରରେ ବାହାରିଲା— 'ବାପା··· ବାପା···ବାପାଙ୍କ ପାଖକୁ ଯିବି' ।

ଶରଧାଦେବୀଙ୍କ ଇଙ୍ଗିତରେ ନୀରବ ପଟୁଆରକୁ ପଛରେ ଧରି ଗାଡ଼ି ଶ୍ମଶାନ ଆଡ଼କୁ ଚାଲିଲା । ସ୍ୱେଚ୍ଛାସେବକମାନେ ଜନତାକୁ ଦୂରରେ ଠିଆକରାଇ ଅତି ସାବଧାନରେ ନବକୁମାରଙ୍କୁ ଧରାଧରି କରି ଶରଧାଦେବୀଙ୍କ ସଙ୍ଗେ ସଙ୍ଗେ ଯାଇ ଭିଖାରୀବାବୁଙ୍କ ସମାଧି ନିକଟରେ ପହଞ୍ଚିଲେ । ସମାଧି ସାମନାରେ ବହୁ କଷ୍ଟରେ ନବକୁମାରଙ୍କୁ ବସାଇ ଦିଆଗଲା । ସେ ମୁଣ୍ଡ ନୁଆଁଇ ପ୍ରଣାମ କରୁ କରୁ ଅଲଙ୍ଘ୍ୟ ଦୀପ ନିକଟରେ ଚିରଦିନ ପାଇଁ ଆଖିମୁଦି ଢଳିପଡ଼ିଲେ ।

□□□